# ସୋପାଂଗାଡ଼ା ଓ
# ଅନ୍ୟାନ୍ୟ ଗଳ୍ପ

ଗୋପୀନାଥ ମହାନ୍ତି

ବିଦ୍ୟାପୁରୀ

# SOPANGADA O ANYANYA GALPA

by Gopinath Mohanty

Published by
Vidyapuri, Balubazar Cuttack 753 002



ISBN 978-81-7411-602-4

ପ୍ରଥମ ପ୍ରକାଶ
୧୮ ଏପ୍ରିଲ ୨୦୦୭

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପି ସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ମୁଦ୍ରଣ
ସଂଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ ଟ ୭୦.୦୦

# ସୂଚୀ

# ଭୂମିକା ନୁହେଁ

ଦୁଇବର୍ଷ ତଳେ ଗୋପୀନାଥ ମହାନ୍ତିଙ୍କ ଗଳ୍ପ-ସଂକଳନ 'ବାଟବନ୍ଧ ଓ ଅନ୍ୟାନ୍ୟ ଗଳ୍ପ' ତାଙ୍କ ଜନ୍ମଜୟନ୍ତୀ ଦିନ ଲୋକାର୍ପିତ ହୋଇଥିଲା । ସେଥିରେ ସ୍ଥାନିତ ହୋଇଥିଲା ତାଙ୍କ ହାତଲେଖା ଓ ପତ୍ରିକାରେ ପ୍ରକାଶିତ ଗଳ୍ପଗୁଛଟିଏ । ଏବେ ତାଙ୍କ ଆଲମାରିରୁ କୋଡ଼ିଏଟି ଅସଂକଳିତ ଗଳ୍ପ (ବେଶୀ ଭାଗ ହାତଲେଖା) ଖୋଜି ବାହାର କରିଛନ୍ତି ତାଙ୍କ ସୁଯୋଗ୍ୟ ପୁତ୍ର ଡ. ଓଁକାରନାଥ ମହାନ୍ତି, ଯାହା ଏଇ ସଂକଳନରେ ସ୍ଥାନିତ ।

ଏଗୁଡ଼ିକୁ ଏକତ୍ର କରି ପ୍ରକାଶ କରିବାରେ କିଛି ସମସ୍ୟା ସାମ୍ନାକୁ ଆସିଲା । ଅତି କୁନିକୁନି ଅକ୍ଷରରେ ତାଙ୍କ ହାତରେ ଲେଖାଯାଇଥିବା ଗଳ୍ପଗୁଡ଼ିକୁ ପଢ଼ିବା ଯେତିକି ଆନନ୍ଦ ଦେଲା, ତାଠୁଁ ବେଶୀ ସାବଧାନତା ଅବଲମ୍ବନ କରିବାକୁ ପଡ଼ିଲା । ପୁରୁଣା କୀଟଦଷ୍ଟ ମାଟିଆ କାଗଜର ପୃଷ୍ଠାମାନେ ସେମାନଙ୍କର ସାମର୍ଥ୍ୟ ହରାଇ ବସିଥିଲେ । ସର୍ବୋପରି କେତେକ ଗଳ୍ପ ବହୁଦିନ ତଳୁ କାଗଜରେ ଲିପିବଦ୍ଧ ହୋଇଥିଲା । ଉଦାହରଣସ୍ୱରୂପ 'ମହାଶ୍ମଶାନ', 'ଦଉଡ଼' ଓ 'ଅନାବନା' ଗଳ୍ପ ତିନୋଟି ଯଥାକ୍ରମେ ୨୬.୮.୬୮, ୧୨.୯.୬୮ ଓ ୯.୮.୬୮ରେ ଲିଖିତ, ଅର୍ଥାତ୍ ୪୦ ବର୍ଷ ତଳର । କୋଡ଼ିଏଟି ଗଳ୍ପରୁ ଗୋଟିଏ ଥିଲା ଶୀର୍ଷକହୀନ । ପ୍ରଥମେ ବିଚାରିଥିଲି ସେମିତି ଶୀର୍ଷକହୀନ ହୋଇ ତା' ରହୁ, ପଢ଼ିଲା ପରେ ଆପେ ଆପେ ଶୀର୍ଷକଟିଏ ମୋ ମନରେ ଉଙ୍କି ମାରିଲା । ଦ୍ୱିଧାର ସହିତ ଶୀର୍ଷକଟି ଦେଇଛି 'ବନ୍ଦ ଝରକା' ।

ଆଦିବାସୀ ମାଟି, ପାଣି, ପବନ ସହିତ ଗୋପୀନାଥଙ୍କର ଥିଲା ନିବିଡ଼ ସମ୍ପର୍କ । ବିସ୍ତୀର୍ଣ୍ଣ ଟାଙ୍ଗରା ଭୂଇଁ, ପ୍ରଶସ୍ତ ଆକାଶର ନୀଳିମା, କାନନକାନ୍ତାରର ମାଧୁରିମା, କନ୍ଧମାଳ୍‌ର ଅନ୍ଧାରି ଅଭ୍ୟନ୍ତର, ସୋପାଙ୍ଗାଡ଼ା ପଥର ତଳି ଗାତବାଟେ ଧର୍‌ତନୀ ପେଟରୁ ମଣିଷ ଜାତି ଏ ସଂସାରକୁ ଆସିବା ଓ ସୃଷ୍ଟିର ଜନ୍ମଗାଥା ଏ ସବୁକୁ ନେଇ ସୋପାଙ୍ଗାଡ଼ା ଗଳ୍ପ ରଚିତ । ଗୋପୀନାଥଙ୍କ ଭାଷାରେ ଏକ ପ୍ରକାର ଯାଦୁ ଥାଏ ଯାହା ପାଠକକୁ ତା' ଅଜାଣତରେ ଆପଣେଇ ନିଏ । ଗଳ୍ପ କଥନ ଭଙ୍ଗୀ ଓ କାହାଣୀ ଦୃଷ୍ଟିରୁ 'ମାଧବ' ଓ 'ଦଉଡ଼' ଗଳ୍ପ ଦୁଇଟି ବେଶ୍ ହୃଦୟସ୍ପର୍ଶୀ । ଗଛରୁ ପଡ଼ି ମାଧବର ଅପମୃତ୍ୟୁ ପରେ ତା'ର ଓ ରାସ୍ତା ମୁଣ୍ଡରେ ତା' ରିକ୍ସାର ଅନୁପସ୍ଥିତି ଭଦ୍ରବ୍ୟକ୍ତିଙ୍କୁ ଘାରିଛି । ''ତଥାପି ସଡ଼କରେ କେବେ କେବେ ଆଖି ଆଗରେ ଠିଆ ହୁଏ ତା'ର ସ୍ମୃତିରୂପ, ସେହି ହସ, ସେହି ମଧୁର ଆହ୍ୱାନ କୁଆଡ଼େ ଯିବକି ବାବୁ ? ଆସ ବସ ।'' 'ଦଉଡ଼' ଗଳ୍ପଟି ଗୋଟିଏ ଛୋଟ ଗଳ୍ପ । ସମୁଦ୍ର ବାଲିପନ୍ତାରେ ଗୁଡ଼କଙ୍କମାନେ ପୌରାଣିକ କାବ୍ୟର ନାୟକ ପରି ଏ ଗଳ୍ପର ମୁଖ୍ୟ ନାୟକ । ନିଛାଟିଆ ଖରାବେଳ, ଚାରିଆଡ଼େ ଶୂନ୍‌ଶାନ୍ ବାଲି, ଉପରେ ଆକାଶ ଓ ସାମ୍ନାରେ ଶାଗୁଆ ସମୁଦ୍ରକୁ ଚମକାଇ ଦେଇ ସାତଟି ଗୁଡ଼କଙ୍କ ଦଉଡ଼ିବା

ଆରମ୍ଭ କରନ୍ତି । ଆମ ସହରୀ ରାସ୍ତାର ଗାଡ଼ି ଦୌଡ଼, ପ୍ରତିଯୋଗୀ ପରିପାର୍ଶ୍ୱରେ ମଣିଷ ମୂଷାଙ୍କ ଦୌଡ଼ ସହିତ ସମାନ୍ତରାଳ ଆଉ ଏକ ଦୌଡ଼ ବାଲିପନ୍ତାରେ । ସେମାନେ କେଉଁଠି ଲୁଚିଥିଲେ କେଜାଣି ପରସ୍ପର ମଧ୍ୟରେ ବନ୍ଧୁତ୍ୱ, ସ୍ନେହମମତା ଡୋରରେ ବନ୍ଧା ହୋଇ ସୁନେଲି ସୂର୍ଯ୍ୟକିରଣ ସହିତ ସେଇ ମୁହୂର୍ତ୍ତଟିକୁ ମଧୁମୟ କରି ଦୌଡ଼ିବା ଆରମ୍ଭ କରନ୍ତି ପବନରେ । ତା'ପରେ ହଠାତ୍ ଆସିଲା ବିଚ୍ଛେଦ । ସମୁଦ୍ର ଲହଡ଼ିରେ ଗୁଡ଼କଙ୍କମାନେ କୁଆଡ଼େ ଉଭାନ୍ ହୋଇଗଲେ ।

ଆବେଗହୀନତା ଓ ଅତ୍ୟଧିକ ଯୁକ୍ତି- ସର୍ବସ୍ୱ ମନ ସାମ୍ପ୍ରତିକ ମଣିଷର ଏକ ଦୁର୍ଦ୍ଦଶା । ଯେଉଁ ଆବେଗକୁ ନେଇ ମଣିଷ ବଞ୍ଚେ, ଫୁଲଟି ଗଛ ଡାଳରେ କଢ଼ ଧରେ, ଝରଣାଟିଏ ପାହାଡ଼ରୁ ଝରିଆସେ । ଜୀବନର ସମାନ୍ତରାଳ ଆବେଗମାନଙ୍କ କଥା କହେ ଗୋପୀନାଥଙ୍କ କାହାଣୀ । ବେଶ୍ ଛୋଟ ଗଳ୍ପ 'ହସ' ପଛରେ କେତେବେଳେ ରହେ ଆତ୍ମନିରୀକ୍ଷା, ଆଉ କେବେ ବିଦ୍ରୂପର ଇଙ୍ଗିତ । 'ମୁଁ ସତ୍ୟଗୋପାଳ ନାୟକ', 'ଅନାବନା' ଓ 'ତତ୍ତ୍ୱ' ଗଳ୍ପଗୁଡ଼ିକରେ ମଣିଷ ମନର ପ୍ରସାରଣଶୀଳତା ଲକ୍ଷଣୀୟ । ସଂକଳନରେ ସବୁଠୁଁ ଛୋଟ ଗଳ୍ପ 'ଏକକ', ମାତ୍ର ୪ ଧାଡ଼ି । ସଂସାର ଓ ବ୍ୟକ୍ତିସତ୍ତାର ପାରସ୍ପରିକ ବିରୋଧାଭାସ ଏହାର ବକ୍ତବ୍ୟ । ମନେହୁଏ ଗୋପୀନାଥ ପ୍ରାଥମିକତା ଦେଇଛନ୍ତି ସତ୍ତାକୁ । ମୁଁ ଅଛି, ଏକା ସେ ନାହିଁ; ଅର୍ଥାତ୍ ସଂସାର ନାହିଁ ।

ଭାରତୀୟ ଗଣତନ୍ତ୍ରରେ ନିର୍ବାଚନ ପ୍ରଚାର ଏଭଳି ଏକ ପ୍ରକ୍ରିୟା ଯେଉଁଠି ଲୋକପ୍ରତିନିଧିମାନେ ମଞ୍ଚ ଉପରେ ଠିଆ ହୋଇ କେବଳ ଲମ୍ବା ଲମ୍ବା ପ୍ରତିଶ୍ରୁତିମାନ ଦେଇଥାନ୍ତି । ଲୋକମାନଙ୍କ ଦୁଃଖମୋଚନ କଥା ପ୍ରାୟ ଚିନ୍ତା କରନ୍ତି ନାହିଁ । 'ଯାତଭାଡ଼ି' ସେଇ ଭାଡ଼ି ଯାହା ଉପରେ ରାମଲୀଳାଠୁଁ ନିର୍ବାଚନୀ ସଭା, ପିଲାମାନଙ୍କ ଖେଳକୁଦଠୁଁ ଛେଳିମାନଙ୍କର ମନଖୁସିରେ ନାଚିବା ସବୁ ଏକୀଭୂତ । ନିଜ ସହିତ ମଣିଷ ସବୁବେଳେ 'ଲୁଚୁକାଳି' ଖେଳେ, ସେ ଖେଳ ଭିତରେ ସେ ସ୍ମରଣ କରେ ତା'ର ବିଭିନ୍ନ ସ୍ୱରୂପକୁ । ''ବେଳେବେଳେ ମୁଁ ନିଜକୁ ଭୁଲିଯାଏ, ଅର୍ଥାତ୍ - ଚିହ୍ନା ମୁହଁ ଦେଖି ମଣିଷ ଯେମିତି ଭୁଲିଯାଏ ତା' ନାଁ କ'ଣ ? ତାକୁ କେଉଁଠି ଦେଖିଥିଲି, ସେମିତି । ମୁଁ ସେ ନୁହେଁ, ଯେ ବିଛଣାରେ ମୂତୁଥିଲା, ମୁଁ ସେ ନୁହେଁ, ଯେ ମାଡ଼ ଖାଉଥିଲା, ମୁଁ ସେ ନୁହେଁ - ଯେ । ସେମାନେ ଆଉ କିଏ କିଏ ବୋଧହୁଏ ।''

ଗଳ୍ପ ସଂକଳନଟି ପ୍ରକାଶ କରିବାରେ ବିଦ୍ୟାପୁରୀର ପ୍ରକାଶକ ଶ୍ରୀ ପୀତାମ୍ବର ମିଶ୍ରଙ୍କ ତତ୍ପରତା ସ୍ମରଣୀୟ । ପ୍ରୁଫ୍-ସଂଶୋଧନ ଓ ପ୍ରକାଶନର ଆନୁଷଙ୍ଗିକ କାର୍ଯ୍ୟରେ ଶ୍ରୀ ସୁରେନ୍ଦ୍ର ବେହେରାଙ୍କ ସାହଚର୍ଯ୍ୟ ମଧ୍ୟ ସ୍ମରଣୀୟ । ଗୋପୀନାଥଙ୍କ ବିୟୋଗର ୧୬ ବର୍ଷ ପରେ ତାଙ୍କ ଜୟନ୍ତୀ ଉପଲକ୍ଷେ ଏଇ ଗଳ୍ପଗୁଡ଼ିକ ପାଠକଙ୍କ ପାଖରେ ପହଞ୍ଚିବ ଏହା ଆନନ୍ଦର ବିଷୟ ।

୧୦.୪.୨୦୦୭
ଭୁବନେଶ୍ୱର

# ଲୁଚକାଳି

ବେଳେ ବେଳେ ମୁଁ ନିଜକୁ ଭୁଲିଯାଏ, ଅର୍ଥାତ୍ - ଚିହ୍ନା ମୁହଁ ଦେଖି ମଣିଷ ଯେମିତି ଭୁଲିଯାଏ ତା' ନାଁ କ'ଣ, ତାକୁ କେଉଁଠି ଦେଖିଥିଲା, ସେମିତି । ମୁଁ ସେ ନୁହେଁ, ଯେ ବିଛଣାରେ ମୁତୁଥିଲା, ମୁଁ ସେ ନୁହେଁ, ଯେ ମାଡ଼ ଖାଉଥିଲା, ମୁଁ ସେ ନୁହେଁ ଯେ - । ସେମାନେ ଆଉ କିଏ କିଏ ବୋଧହୁଏ । କଲେଜ ଦିନର କଥା କହେଁ ! ଥିଲା ଗୋଟିଏ ପିଲା ଯେ ଗୋଟାଏ କଂସେଇଖାନା ପାଖେ ରହୁଥିଲା, ସେଉଠୁ କଲେଜ ଯାଉଥିଲା । ଥିଲା ଗୋଟାଏ ପିଲା ଯେ ଠିକ୍ କଲେଜ ସାମ୍ନା ଧୋବାବସ୍ତିରେ ରହୁଥିଲା, ଯେଠି ବହୁତ ଗଧ ଥିଲେ । ଗୋଟାଏ ପୋଖରୀ ଥିଲା ଯେଉଁଠି ଡଉଲଡାଉଲ ଝିଅଟିଏ ସକାଳେ ଏକ ଧ୍ୟାନରେ ଲୁଗା କାଚୁଥାଏ । ଟୋକାଟି ଏକ ଧ୍ୟାନରେ ତାକୁ ଅନେଇଥାଏ, ମୁହଁ ତଳେ ଖୋଲା ବହିଟିଏ କେବେ କେବେ ବୋଧହୁଏ ଚଣ୍ଡୀ ଦାସ ପଦାବଳୀରୁ ପଦେ ପଦେ ଗାଏ, 'ଶୁନ ରଜକିନୀ ରାମା' - ।

ଥିଲା ଗୋଟିଏ ପିଲା, ସ୍ୱପ୍ନ ଦେଖୁଥିଲା ଯେ ସେ ହୋଇଛି ଦେଶର ସବୁଠୁ ବଡ଼ ଶିଳ୍ପପତି । କେତେଠିଁ କେତେ ପ୍ରକାଣ୍ଡ ପ୍ରକାଣ୍ଡ କାରଖାନା ତା'ର, ହଜାର ହଜାର ପରିବାରକୁ ସେ ଅର୍ଜନ କରିବାକୁ ସୁବିଧା ଖଞ୍ଜିଛି, ତାଙ୍କ ପାଇଁ ନାନା ସୁଖ ସୁବିଧା ଥୋଇଦେଇଛି, ସେମାନେ କୃତଜ୍ଞ, ସେ ଖୁସି, ବାଛି ବାଛି ଏଭଳି ଲୋକଙ୍କୁ ମଣିଷ କରି ଦେଇଛି ଯାହାଙ୍କର କୌଣସି ଥଇତା ନ ଥିଲା ।

ଥିଲା ଗୋଟିଏ ପିଲା ସହରର ଗୋଟିଏ ବଦନାମ୍ ଗଳିର ବାଟ ମୁହଁ ପାଖେ ଗୋଟିଏ ବସାରେ । ତା' ଟିଉସନ୍ ଚାଲି ଯାଇଥିଲା, ଜଣେ ପେନ୍‌ସନ୍ ନେଇଥିବା ନାଁ ଡାକ ଶିକ୍ଷକ ତାଙ୍କ ବସାରେ ଚାହାଳି ଖୋଲିଦେଇ ଅନେକ ଟିଉସନ୍ ଛଡ଼ାଇ ନେଇଥିଲେ । ସେ ପିଲାଟି ଦେଖୁଥିଲା ସହରର କେତେ ବଡ଼ ବଡ଼ ଲୋକଙ୍କ ଗାଡ଼ି, ସେ ଗଳି ମୁଣ୍ଡରେ ସଞ୍ଜବୁଡ଼େ ଆସି ଠିଆ ହୁଏ, କିଏ ବାହାରନ୍ତି କି କିଏ ଗାଡ଼ିରେ ପଶନ୍ତି । ଗାଡ଼ି ଚାଲିଯାଏ ।

ସେ ପିଲାଟି ଖୋଜି ଖୋଜି ପଢୁଥିଲା ବିପ୍ଳବର ଦର୍ଶନ ଓ ଅଭ୍ୟାସ ବିଷୟରେ ନାନା ବହି, କେବେ ଗରିବ ବସ୍ତିରେ ବୁଲୁଥିଲା, କେବେ ଦିନବେଳେ ସେହି ବଦନାମୀ ଗଳିରେ ବି ଭାବପ୍ରବଣ ହୋଇ ଭାବୁଥିଲା, ବିପ୍ଳବ ଯେ ପ୍ରୟୋଜନ, ଅପରିହାର୍ଯ୍ୟ, ଏଇ ତା ପ୍ରମାଣ । ଧନ୍ଦି ହେଉଥିଲା କେଉଁଠୁ ସେ ପାଇବ ବିପ୍ଳବୀ ଗୁରୁ, ବିପ୍ଳବୀ ସଂସ୍ଥା

ଭିତରେ ପଶିବାକୁ ଚୋରା ବାଟ, ଦାନ୍ତ ରଗଡ଼ି ରଗଡ଼ି ଖର ନିଃଶ୍ୱାସ ପକାଇ ଭାଡ଼ି ଉପରେ ଯାତ୍ରାର କଂସ ପରି ପାଇଖାନା ଛାତ ଉପରେ ସଞ୍ଜ ପହରେ ଟହଲୁଥିଲା । ଅଛ ବଙ୍କା ହୋଇ, ପିଠିଆଡ଼େ ହାତ ଛନ୍ଦି, କୋଠାମାଳ ଆଉ ଆଲୁଅ ମାଳମାଳ ଆଡ଼କୁ ଚାହିଁ ରହେ । ତା' ଆଖି ଆଗରେ ଖାଲି ବିସ୍ଫୋରଣ ଦିଶୁଛି ଏଠିସେଠି, ସବୁ ଜଳିଯାଉଛି, ଛତର ଛାଉଳ ହୋଇଯାଉଛି ।

ଏ ପିଲାମାନେ, ଏ ମଣିଷମାନେ କ'ଣ ଏକା ଲୋକ ?

ମୋ ଅତୀତକୁ ମୁଁ ଆଜି ଚାହିଁଲେ ନିଜଠି ଯେଉଁ ବୟସରେ ଯେଉଁ ଭାବ ଆସିଥିଲା, ନିଜ ଆଖି ଆଗରେ ଯେଉଁ ମୂଲ୍ୟବୋଧ ଅନୁଯାୟୀ ଯେଉଁ ଚିତ୍ରଗୁଡ଼ିକ ଦିଶିଯାଉଛି, ସବୁ ସେମିତି ଏକା ଗାରର ବିଭିନ୍ନ ଅଂଶ, ଏକା ରାଗିଣୀର ବିଭିନ୍ନ କ୍ରମପର୍ଯ୍ୟାୟ । ସେହି ସେହି ବର୍ଷରେ ମୁଁ କ'ଣ ସେଇଆ ଭାବୁଥିଲି, ଦେଖୁଥିଲି, କଳୁଥିଲି ?

ବିଶ୍ୱାସ ହୁଏ ନାହିଁ ।

କେମିତି ହେବ ? ମୁଁ ତ ଅନୁଭବ କରୁଛି କାଲି ମୋ ମନର ଯେଉଁ ରୂପ ଥିଲା, ଠିକ୍ ଏତିକିବେଳେ, ଆଜି ତା' ନାହିଁ । ଭିନେ ମନ ଭିନେ ରୁଚି, ମୋ ମନର ଭିନେ ଫର୍ମାସି, କାଲି ଯେଉଁଥିପାଇଁ ମୁଁ ଝୁରୁଥିଲି ଆଜି ସେ ମାଗଣାରେ ମିଳିଲେ ବି ମୁଁ ନିଅନ୍ତି ନାହିଁ । କେତେ ଲୋକ ଲାଗୁଥିଲେ ଅତି ଆପଣାର ବୋଲି, ଦିନେ ନ ଦେଖିଲେ ବଣା, ଆଜି ମୁଁ ସେମାନଙ୍କୁ ଚିହ୍ନେ ନାହିଁ । କାହାର ଆପଣାର ହୋଇଥିଲେ ସେମାନେ ?

ଅଥଚ ମୋରି ପୂର୍ବ ଜନ୍ମର ସ୍ମୃତି ପରି ସେସବୁ ବି ଲାଗେ ମୋରି ଛବି, ମୋରି ପ୍ରତିମା, ମୋରି ସ୍ୱରୂପ ପରି, କିଏ ଯେପରି ମନ ଭିତରେ ଥାଇ ମୋ କାନ ଭିତରେ କହିଦିଏ, ବେଳେବେଳେ ଅନ୍ୟମାନେ ବି କହନ୍ତି, ''ତୁମେ ପରା ସେତେବେଳେ -'' ଭୁରୁଡ଼ାଇ ଦିଏଁ, ଲୋକ ଦେଖି, ''ଧେତ୍, ତୁମେ ଭୁଲ୍ କହୁଛ -''

ପ୍ରମାଣ କ'ଣ ? ପ୍ରମାଣ କାହିଁ ? ଏଁ ! ମୁଁ ମହାରାଜା ଦୁଷ୍ମନ୍ତ ତୁମକୁ ଦେଖିଥିଲି କଣ୍ୱମୁନିଙ୍କ ଆଶ୍ରମରେ । ତୁମ ନାଁ କ'ଣ ? ଶ କୁନ୍-ତ ଳା ? ଅସମ୍ଭବ, ମୁଁ ତୁମକୁ ଚିହ୍ନି ନାହିଁ ।

ଖାଲି ଚିହ୍ନି ନାହିଁ କହି ମନ ଶାନ୍ତି ପାଏ ନାହିଁ, ମୋ ନିଜର ସେହି ସମ୍ଭାବିତ ପୂର୍ବ ପରିଚୟର ଛବିକୁ ମୁଁ ଆକ୍ରମଣ କରେ, ମନରେ ରାଗ, ହିଂସା, କେତେବେଳେ ଈର୍ଷା । ତା'ର ଦୋଷ ବାଛିବି, ସେଇଟା ମୋଠୁଁ କେତେ ଗୁଣରେ ସାନ ଆଉ ହୀନ ସେଇଆ ପ୍ରମାଣ କରିବି । ତେବେ ସିନା ମୋ ମନ ଦମ୍ଭ ହେବ, ନିଜ ଉପରେ ବିଶ୍ୱାସ ରହିବ, ଆଉ ମୋ ରକ୍ତରେ ସବୁବେଳେ ତେଜ ଦେବା ପାଇଁ ସବୁବେଳେ ମୋ ଭିତରେ ଜଳୁଥିବ ଆଶା । ନ ହେଲେ, ଅତୀତର ସେଇଟା ଯଦି ପ୍ରକୃତରେ ମୋରି ଅତୀତ, ଯଦି ସେ ବର୍ତ୍ତମାନର 'ମୁଁ'ଠୁଁ ବେଶି ଦାମୀ, ବେଶି ବଳୁଆ କି ବେଶି ଭଲ ବୋଲି ମୁଁ ଗ୍ରହଣ କରିନେବି କେତେବେଳେ,

ତେବେ ଆଉ ମୋର ବଞ୍ଚି ରହିବାକୁ କାରଣ ବି କ'ଣ ରହିବ ? ମୋର ତ ହା' ପଶିଯିବ, ଭାବୁଥିବି ଯେ ମୁଁ କ୍ଷୟ ହୋଇଗଲି, ତଳକୁ ତଳକୁ ଚାଲିଛି, କ୍ଷୀଣରୁ କ୍ଷୀଣତର ହୋଇ ହୋଇ... ।

ଅତୀତକୁ ପ୍ରତ୍ୟାଖ୍ୟାନ କରିବାକୁ ମୋର ଅସୁବିଧା ହୋଇଥାନ୍ତା ଯଦି ମୋ ମନର ଫଟୋ ରହି ଯାଇଥାନ୍ତା । ଯେମିତି ରହେ ଚିତ୍ରକରମାନଙ୍କର, ଲେଖକମାନଙ୍କର । ବିଚରାଟିମାନେ ଆପଣା ମନର ଟେକ ଅତୁଟ ରଖିବା ସକାଶେ ନିଜର ଅତୀତର ଲିପିବଦ୍ଧ ସ୍ୱରୂପଗୁଡ଼ାକ ସଙ୍ଗରେ କୁସ୍ତି ଲଢୁଥାନ୍ତି । ''ସେତେବେଳେ ଏ ବହିଟା ଲେଖିଥିଲି, ଭଲ ହୋଇଥିଲା ବୋଲି ନାଗରା ବାଜୁଥିଲା । କିନ୍ତୁ ବର୍ତ୍ତମାନ ଯାହା ମୋର ବାହାରିଛି ନା - ତା' ଅପେକ୍ଷା ସହସ୍ରେ ଗୁଣେ ଭଲ । ମୋର ଆଗର ଲେଖା ବହିଗୁଡ଼ାକରେ ଖାଲି ପିଲାଳିଆ ଉତ୍ସାହ ଥିଲା, କିନ୍ତୁ ଜ୍ଞାନ, ଦର୍ଶନ, ଜୀବନର ମୂଲ୍ୟାଙ୍କନ ନ ଥିଲା ଏତେ ପରିମାଣରେ । ମୋ ନୂଆ ବହିକୁ ଲୋକେ ଆଦର କରୁ ନାହାନ୍ତି । ସେଥିରେ ଆଶ୍ଚର୍ଯ୍ୟ ହେବି କାହିଁକି ? ଏତେ ଶିକ୍ଷିତ ସେମାନେ କେବେ ହେଲେ ? ଏ କ'ଣ ଶସ୍ତା ବହି ହୋଇଛି ? ତଥାପି, ବୁଝୁଥିବେ ଯେ କେହି କେହି । ଯେଉଁମାନେ ଜୀବନଟାକୁ ପ୍ରାୟ ପାରି ହୋଇ ଆସିଲେଣି, କେତେ ତୋଫାନ, କେତେ ବଢ଼ି ଅଙ୍ଗେ ନିଭେଇ ସାରିଛନ୍ତି, ନିଜ ବାହାରୁ ଆଖି ଓଟାରି ନେଇ ନିଜ ଭିତରକୁ ଦେଖିବାକୁ ଆରମ୍ଭ କଲେଣି, ସେହିମାନେ ବୁଝିବେ ଯା ତତ୍ତ୍ୱ । ଆଉ, - ସାଧାରଣ ଲୋକ ? ଶହେବର୍ଷ ପରେ ଯେଉଁମାନେ ଆସିବେ ସେମାନେ ବୁଝିବେ ।''

ଆପଣା କଥାରେ ମନ ଭୁଲିଯାଏ, ସମ୍ପୂର୍ଣ୍ଣ ବିଶ୍ୱାସ ନ ଆସୁ ପଛେ । ଆଗରେ ଜଳୁଥିବା ଆଶାର ମଶାଲ ନିଭେ ନାହିଁ ।

କିନ୍ତୁ ବେଳେବେଳେ, ମନ ଯେତେବେଳେ ଅଝଟ ହୋଇ ରା' ଧରେ, ଅତୀତରେ ଲେଖିଥିବା କୃତିମାନେ ଖତେଇ ଚିଗୁଲେଇ ହୁଅନ୍ତି, ସେତେବେଳେ ?

ପିଠିର ବଥ ରଟ ରଟ ହୁଏ, ମନ ବୋଧ ମାନେ ନାହିଁ ଛାଇ ହେଲା ଭାବି ।

ଜନରଞ୍ଜନ ଡାକୁଆଳର ସେଇଆ ହୋଇଛି, କେତେଥର ମୋ ଆଗରେ ମୁହଁ ଫଟେଇଲେଣି । ଓଲଟି ମୁଁ ତାକୁ ବଳ ଦିଏ । ସେତେବେଳେ ଲେଖୁଥିଲି ଟୋକାଳିଆ ଧୃଷ୍ଟତାର କାହାଣୀ, ଏବେ ଲେଖୁଛ ବୁଦ୍ଧ, ଖ୍ରୀଷ୍ଟ, କନଫୁସିଅସ୍‌ଙ୍କ ଦର୍ଶନକୁ ବୁଝେଇ ବୁଝେଇ ଉପନ୍ୟାସ । ସେତେବେଳେ ଲେଖୁଥିଲ ମାଇଚିଆ ଗାଉଁଲି ବୋଲିରେ, ଏବେ ଲେଖୁଛ ଶୁଦ୍ଧ ଭାଷାରେ ସଂସ୍କୃତ ଶବ୍ଦ ଯୋଡ଼ି ଯୋଡ଼ି । କମ୍ ସାଧନା ବଳରେ ଏ ଅଗ୍ରଗତି ସମ୍ଭବ ହୋଇଛି ତୁମର ? ତୁମେ ପଛେଇଛ ଭାବି ମନଦୁଃଖ କରୁଛ ।

ଉଠ ଜନରଞ୍ଜନ ଡାକୁଆ, କ୍ଷୁଦ୍ରଂ ହୃଦୟ ଦୌର୍ବଲ୍ୟଂ ତ୍ୟକ୍ତ୍ୱୋତିଷ୍ଠ ପରନ୍ତପ !

ଏମିତି କହିଲେ ତାଙ୍କ ମୁହଁରେ କେଡ଼େ ମନଖୋଲା ପିଲାଳିଆ ହସ ଫୁଟିଉଠେ ! ତାଙ୍କ ସ୍ତ୍ରୀ ରଜନୀ ମତେ କୃତଜ୍ଞ ହୋଇ ଅନାଏଁ । ରଜନୀର ମୁହଁ ଉପରେ ବି ବୟସର

ଅଳିନ୍ଧୁପୁଟ ଝଡ଼ିପଡ଼େ । ମୋ ବେଁଶିରା ହାଡ଼ ଭିତର ଶିର୍‌ଶିର୍ ହୋଇ ବେକ ପଛଆଡ଼ କାନ ପଛଆଡ଼ ଉଷୁମ ହୋଇଯାଏ ।

ଅତୀତର ରଜନୀ ମନେପଡ଼େ । ବିଚକ୍ଷଣ ଔପନ୍ୟାସିକ, ସେଭଳି ପ୍ରେମିକ କବିଙ୍କୁ ଚିହ୍ନି ନ ପାରି ଯେଉଁ ଝିଅଟି ଭୁଲ୍‌ରେ କେବେ ଚମ୍ପା ଫୁଲଟିଏ ବଢ଼ାଇ ଦେଇଥିଲା ସେ ବହିର ନାୟିକା ହୋଇ ସେ ମାର୍କାମରା ହୋଇଯାଇଥିଲା, ସେ ବାଟରେ ଗଲେ ଲୋକେ ଆଙ୍ଗୁଠି ଦେଖାନ୍ତି 'ଯେ ସେହି' ।

''ବିପଜ୍ଜନକ । ଲେଖକ ଜାତି କାହାକୁ ବିଶ୍ୱାସ ରଖନ୍ତି ନାହିଁ ।''

''ତାଙ୍କର ସେ ପୁଞ୍ଜି ବି ସତେ କେତେକର ? ମଣିଷଙ୍କ ସାମୟିକ ମୋହ ଉତ୍ତେଜନାର କାହାଣୀ । ସେହି ପୁରୁଣା କଥା । ଭୋକର ଦାଉ । ଅନ୍ଧାର ଘରେ ହାଣ୍ଡି ଧୁଡୁଧୁଡୁ । କୁକୁର ବିଲେଇ । କିଏ ଏଡ଼େ ତରକା, ଗୋଟିଏ କେହି ଚେଇଁଥିଲେ ପଶିବେ ନାହିଁ । କିଏ ପାଟି ଶୁଣିଲେ ପଳାଇବେ । କାହା ପିଠିରେ ପାହାର ନ ପଡ଼ିଲେ ସେ ଯାଏ ନାହିଁ । ନାନା ଜନ୍ତୁଙ୍କର ନାନା ସ୍ୱଭାବ ।

''ସେମିତି କାହା ପେଟରେ ଅଗ୍ନି ମାନ୍ଦା, କାହାର ଅଗ୍ନି ଅବା ହୁତ୍‌ହୁତିଆ, ବହୁତ ଭୋକ । କିଏ ଭୋକ ସମ୍ଭାଳିପାରେ, ଦୁର୍ବଳ ଲାଗୁଥାଉ କିନ୍ତୁ କେହି ଜାଣିପାରିବେ ନାହିଁ ଯେ ସେ ଉପାସ ଅଛି, କିଏ ଟିକିଏ ଭୋକରେ ବାୟା ହୁଏ । ଖାଇଲାବେଳେ ଖାଇବା ବାଗ ବି ଭିନେ ଭିନେ, କିଏ ଆଖିବୁଜି ଗିଳି ପକାଏ, କିଏ ଚାଖି ଚାଖି ଖାଏ, ଓଠ ଚାଟେ ।

ମୁଁ ଯେତେବେଳେ ଲେଖକ ହେବି ବୋଲି ଦିନାକେତେ ଝୁଙ୍କ ଲାଗିଥିଲା - ସେହି ଜନରଞ୍ଜନ ଡାକୁଆ ସଙ୍ଗରେ ଘଡ଼ି, ସେତେବେଳେ ନମୁନା ପଢ଼ି ପଢ଼ି ନିଜକୁ ତାଲିମ୍ କରୁଥିଲି - ଅଥବା ନିଜର ନିଶା ଛଡ଼ାଇଥିଲି - ଆଉ ସେତେବେଳେ ଏଇସବୁ ଚିନ୍ତା ମୋ ମନରେ ତର୍କବିତର୍କ କରୁଥାନ୍ତି - ଯେ ଏଗୁଡ଼ାକ ମୋର ବିଷୟବସ୍ତୁ ହେବ ନାହିଁକି ? ଜୀବନରେ କେତେଥର ଖାଇଛି, କେତେଥର କେଉଁ ନିତ୍ୟକର୍ମ କରିଛି, ଯେମିତି ମୁଁ ସେମିତି ଅନ୍ୟମାନେ । ସେଇ ଘସରା ଜୀବୀଧର୍ମର ନିତିଦିନିଆ ଗପରେ କ'ଣ ଏପରି ଅଛି ଯୋଉଥିଲାଗି ମଣିଷ ତାକୁ ପୁଣି ଲେଖୁଥିବ - ନାନା ଛଇଛଟକ ଫୁଟାଇ - କଥା କହିବାର ଭଙ୍ଗୀରେ - ପୋଷାକ ପିନ୍ଧାଇବାର ନୂଆ ନୂଆ କାଇଦାରେ - ?

ଏ ଶରୀରରେ ଲୁଚାଛପା ବୋଲି କିଛି ନାହିଁ, କିନ୍ତୁ ପଢ଼ିଥିବା ନମୁନାମାନଙ୍କରେ ଦେଖିଛି, ସେଥିପାଇଁ କି ବିଚିତ୍ର କୁତୂହଳ !

ଡାକୁଆ ମୋ ସଙ୍ଗେ ଏକମତ ହୁଏ, ହସେ, କାରଣ ମୁଁ ଯେଉଁ ନମୁନା ପଢ଼ି ନିଜକୁ ତାଲିମ୍ କରେ ସେଥିରେ ପ୍ରଧାନ ନମୁନାମାନଙ୍କ ଭିତରୁ ସେ ଜଣେ । କିନ୍ତୁ ସେ କହେ ।

''ଲୋକେ ଖୋଜନ୍ତି କିଏ ତାଙ୍କୁ ତାଙ୍କ ନିଜ ଶରୀର ବିଷୟରେ, ନିଜ ଭୋକ ବିଷୟରେ ସଚେତ କରାଇଦେଉ, ଆଉ କହୁ ଯେ ସେମାନଙ୍କୁ ହିଁ ସେହି ଯେଉଁ ଦିଓଟି ଜିନିଷ ଅଛି ତାହା ଅତି ଚମତ୍କାର, ଅତି ସ୍ୱତନ୍ତ୍ର, ଅତି ଆନନ୍ଦକର । କହୁ ଯେ ସେମାନେ ସେହି ଯେଉଁ ନିତ୍ୟକର୍ମ ନିତି କରନ୍ତି, ଜନ୍ତୁର ନିତ୍ୟକର୍ମ, ଜୀବନରେ ସତ ସେତିକି, ଆକାଂକ୍ଷିତ ସେତିକି । ଏ ସଂସାରରେ ତାଙ୍କ ଅବସ୍ଥିତିର ପ୍ରତୀକ ବି ସେଇଆ । ଘରର ଝାଟୁଆ, ଅଳିଆ କୁଣ୍ଡରେ ପଡ଼ିଥିବା ପ୍ରତ୍ୟେକ ପଦାର୍ଥ - ପରିବା ଚୋପା, ଡିମ୍ବ ଖୋଳ, ରକ୍ତ ଲାଗିଥିବା କନା, ପୂଯ ଲାଗିଥିବା ବ୍ୟାଣ୍ଡେଜ୍, ଅଇଁଠାପତ୍ର, ସିଗାରେଟ୍ ଖୋଳ -''

''ଓଃ ! ଥାଉ ଥାଉ !''

''ନାହିଁ ନାହିଁ, ତାତ୍ପର୍ଯ୍ୟ ବୁଝ, - ଖଣ୍ଡିଆ ବିଡ଼ି, ଖଣ୍ଡିଆ ଜୋତା, ଭଙ୍ଗା ଚା' କପ୍, ଫୁଲଦାନିରୁ ବାସି ଫୁଲ, ସଢ଼ା ପଚା, ମଲା ବିଲେଇ - ଲୋକଙ୍କୁ ଏ ସବୁ ପଦାର୍ଥ ତାଙ୍କ ନିଜ ଜୀବନକୁ ହିଁ ମନେ ପକେଇ ଦିଏ । ପଦାର ବସ୍ତୁ ମନ ଭିତରେ ଖାଲି ରୂପକ ନୁହେଁ, ଜୀବନର ସ୍ମୃତିର ଅରାଏ ଲେଖାଁ ସେ, ସମୟ ବ୍ୟାପ୍ତି ଓ ଚେତନା ଏକାଠି ।

''ତେଣୁ ଲୋକଙ୍କୁ ତା' ଭଲ ଲାଗେ, ସେମାନେ ଆଗ୍ରହରେ ପଢ଼ନ୍ତି, ତାଙ୍କୁ ଖୋରାକ ବିକେଁ, ସେଇଥିରେ ଚଳେଁ, ମଝିରେ ଯେଉଁ ବେପାରୀମାନେ, ସେମାନେ ମତେ ପସନ୍ଦ କରନ୍ତି ।

''ମୁଁ ବୁଝେ ମୁଁ ଯାହାଙ୍କ ପାଇଁ ଲେଖୁଛି ସେମାନଙ୍କ ପଟରୁ ଚାହିଦା ମୋ ଲେଖାର ସାର୍ଥକତାର ପ୍ରମାଣ । ସେହି ଚାହିଦା ମତେ ନୂଆ ଦିଗ ଦେଖାଏ, ନୂଆ ଧାରଣା ଦିଏ । ବେପାରୀମାନେ ଆହୁରି ପସନ୍ଦ କରନ୍ତି ।

''ମଝିରେ ଆହୁରି ଦଳେ ଅଛନ୍ତି, ସେମାନେ ଗ୍ରାହକ ନୁହନ୍ତି, ସେମାନେ ଚିହ୍ନରା । ଗ୍ରାହକମାନଙ୍କୁ ମଡେଇପାରିଲେ ସେମାନେ ତାଙ୍କ ମୁରବି ବୋଲାଇବେ ।

''କମ୍ ସମ୍ମାନ ନୁହେଁ । ତାଙ୍କ ଭିତରେ ଯେଉଁମାନେ ବୁଦ୍ଧିମାନ୍ ସେମାନେ ଗ୍ରାହକମାନଙ୍କ ଚାହିଦାକୁ ସମର୍ଥନ କରି ଚିହ୍ନରା ଶାସ୍ତ୍ର ଲେଖନ୍ତି, ମୋ ଲେଖାର କେତେ କେତେ ବହୁମୂଲ୍ୟ ଗୁଣ ମତେ ଅଜଣା ଥିଲା, ସେହିମାନେ ହିଁ ଆବିଷ୍କାର କଲେ ।

''ଯେ ହେଲା ଚଳନ୍ତି ସଂସାରର ରୀତି ।''

''କିନ୍ତୁ ଯା ନୁହେଁ ଯେ ତୁମେ ଯାହା କହୁଛ ମୁଁ ତା' ବୁଝୁ ନାହିଁ କି ମୋର ଧାରଣା ନାହିଁ ଯେ ସାହିତ୍ୟ କହିଲେ ମୁଁ ଯାହା ଲେଖୁଛି ଖାଲି ସେତିକି, ସେହି ପ୍ରକାର । ଜୀବନର ରହସ୍ୟ, ନାନା ଗୂଢ଼ ତତ୍ତ୍ୱ, ଜଣା ଅଜଣା ହୋଇ ନାନା ସ୍ୱରୂପ, ଜୀବନର ବ୍ୟାପକତା, ଚେତନାର ନାନା ଚିତ୍ର, ମୂଲ୍ୟ - ଅନୁସନ୍ଧାନ, କେତେ କ'ଣ ଅଛି, କଳାର ନାନା ବିଚିତ୍ରତା ଅଛି । ଚେଷ୍ଟା କରିବ ଯଦି କର, ଯଦି ତୁମର ମନ ଡାକୁଛି, ନିଜେ ଖୁସି ହେଉଥିବ, ଯେତେଦିନ ଏଇ ମନ ଥିବ । ସେ

ମାର୍ଗରେ ଅଭିଜ୍ଞତା ଥିଲେ କିଛି କରିପାରିବ । ଖାଲି ପଢ଼ିଥିବା, ଭାବିଥିବା ଜ୍ଞାନ ନୁହେଁ, ନିଜ ଜୀବନର ଅଭିଜ୍ଞତା । ମୋ ମନ ତାକୁ ନାହିଁ । କ'ଣ ପାଇବି ? କିଏ ପଇସା ଦେଇ ପଢ଼ିବ ନିଜ ମୁଣ୍ଡ ବଥାଉ ବୋଲି ? କିଏ ବାହାଦୁରି ଦେବ ?''

ଡାକୁଆ ହିସାବୀ ଲୋକ, କିନ୍ତୁ ମୋ ପ୍ରତି ସଦୟ ହୋଇ ସେ ମତେ ପରିଷ୍କାର କରି ନିଜ କଥା ବୁଝାଇ ଦେଲା । ମୋର ବିଶ୍ୱାସ ହେଲା ନାହିଁ । ତା'ର ବେଉସା ଭଲ ଚାଲୁଥିଲା । କିନ୍ତୁ ବେଉସା ମତେ ଆକୃଷ୍ଟ କଲା ନାହିଁ । ପଛେ କେତେ ବର୍ଷ ପରେ ସେ ଯେତେବେଳେ ନିଜ ଅଭ୍ୟାସ ଭୁଲିଗଲା ସେତେବେଳେ ତା'ର ବି ବିଶ୍ୱାସ ଦୋହଲିଗଲା । ମୁଁ ଏପରି ବି ଭାବିଛି ଯେ ମୋର ।

ମୁଁ କହେ, ''ତୁମେ ସାଧକ, ତୁମେ କୀର୍ତ୍ତିମାନ୍, ତୁମେ ଦେଶକୁ ଜାତିକୁ ଦେଇଯାଉଛ କେତେ କେତେ ଦାନ, ଆମେ ମଲେ ଗଲୁଁ, କେହି ମନେ ରଖିବେ ନାହିଁ । ତୁମେ ଅମର ।

ସତେ ସେ ଅମର ?

ମୁଁ ଜାଣେ ନାହିଁ । କିନ୍ତୁ ରଜନୀର ସେ ଚାହାଣି ମତେ ଭଲ ଲାଗେ । ଡବ ଡବ ଆଖି, କେତେ କ'ଣ କହୁଛି ।

ଦୁଃଖିତ ଗମ୍ଭୀର ବିବ୍ରତ ଜନରଞ୍ଜନ ହସିଲେ ମତେ ଭଲ ଲାଗେ । ମୁଁ ଭାବେଁ, କ'ଣ ହେବ ସେ ମରିଗଲେ ? ଛୁଟି ହେବ ? ଦେଶ ଶୋକ ପାଳିବ ? ନା । ସଭା ଗୋଟାଏ ଅଧେ ହେବ । ଖବରକାଗଜରେ କାହା କାହା ଶୋକ ପ୍ରସ୍ତାବ କି ଶୋକବାର୍ତ୍ତା ବି ବାହାରି ପାରେ, ବିଶେଷତଃ 'ପବିତ୍ରପୁର ସାହିତ୍ୟ ସମାଜ', 'ଚାଇଁସର ସାହିତ୍ୟ ସମାଜ' ପରି ଅନୁଷ୍ଠାନମାନେ ନିଶ୍ଚୟ ଶୋକ ପ୍ରସ୍ତାବ ପାସ୍ କରିବେ ।

ଆଗେ ଜନରଞ୍ଜନ ଡାକୁଆ ବହୁତ ଉପନ୍ୟାସ ଲେଖୁଥିଲା, ପ୍ରକାର ପ୍ରକାର ପ୍ରେମ କାହାଣୀ, ହତ୍ୟା, ଆତ୍ମହତ୍ୟା ଓ ଆକସ୍ମିକ ଦୁର୍ଘଟଣା କାହାଣୀ ବହୁତ ବିକ୍ରି ହୋଇଛି । ବୟସ ହେଲା, ଜନରଞ୍ଜନ ପାଣ୍ଡିତ୍ୟପୂର୍ଣ୍ଣ ଗମ୍ଭୀର ଲେଖା ଲେଖିବାକୁ ଚେଷ୍ଟା କଲା, ଯେ ହେଲା ନାହିଁ କି ସେ ହେଲା ନାହିଁ, ନିଜେ ଘାଉଡ଼ା ହେଲା ।

ମୁଁ ବି ତା' ପ୍ରଭାବରେ ପଡ଼ି ଦିନାକେତେ ଚେଷ୍ଟା କରୁଥିଲି ଉପନ୍ୟାସ ଲେଖିବି ବୋଲି । କିଛି ଲେଖିଥିଲି । ତା'ପରେ ଜାଣିଶୁଣି ନିରସ୍ତ ହେଲି ।

ସେତେବେଳେ ନିରସ୍ତ ହେବାର କାରଣ ଭିନ୍ନେ ଥିଲା । ଲେଖୁ ଲେଖୁ ଆବିଷ୍କାର କଲି ମୁଁ ମୋ ନିଜ କଥା ହିଁ ଲେଖି ଯାଉଛି । ଏ ଯେଉଁ ଦୁନିଆରେ ଚତୁର ଲୋକ ପର ଆଗରେ ନିଜ ନାଁ କହିବାକୁ ବି ଅନିଚ୍ଛୁକ ହୁଏ, ନିଜ ଘର କଥା ପଦାରେ ପଡ଼ିଲେ ଲଜ୍ଜା ଓ ଆତଙ୍କରେ ଅସ୍ଥିର ହୁଏ କାଳେ ସେଥିପାଇଁ ଆଉ କାହାର ଶିକାର ହେବାକୁ ପଡ଼ିବ

ଭାବି ଭାବିଲି, ମୁଁ କ'ଣ କରୁଛି ? ମୋ ମନ ଭିତରର ସବୁ ଗୁପ୍ତ କୋଠିର କବାଟ ଝରକା ଯେ ଠିଆ ମେଲା କରି ଦେଉଚି ଖାଲି ସେତିକି ନୁହେଁ, ମୋ ମନ ଗହନର ସବୁ ଛପିଲା କଥା ସତେଯେମିତି ଖବରକାଗଜରେ ଛାପି ଦେଉଛି । ଯାହା ଯାହା ମୁଁ କରିଛି ଖାଲି ସେତିକି ନୁହେଁ, ଯାହା ଯାହା ମୁଁ କରି ନାହିଁ, କରିବି ବୋଲି କେବେ ମନରେ ତୁନି ତୁନି କରି ଭାବିଥିଲି, ଯାହା ମୋ ଜାଣତା ମନଠୁଁ ବି ଶଙ୍କି ଶଙ୍କ ଅନ୍ଧାରରେ ଲୁଚି ଛପି ରହିଥିଲା, ତାକୁ ବି ମୁଁ ସର୍ବସାଧାରଣ କରି ଦେଉଛି ଯେ ! ତା'ହେଲେ ! - ପର ମଣିଷ ଝରକା ଫାଟ ବାଟେ ଖାଲି ଉଙ୍କି ମାରି ମୋ ଘର ଭିତର କଥା ଦେଖିବ ଖାଲି ସେତିକି ନୁହେଁ, ତା' ମନ ହେଲେ ଖୋଲାଖୋଲି ଭାବେ ସବୁ ଦେଖିବ, ହାତରେ ଧରି ଆଖି ପାଖକୁ ନେଇ ନିକୁଚି ନିକୁଚି ଦେଖିବ, ତଉଲିବ, ଯାହା ମନ ତାହା କରିବ । କ୍ଷତି ଛଡ଼ା ଲାଭ କ'ଣ ହେବ ମୋର ? ଏ ସଂସାରରେ ମଣିଷ ଏକା ଚଳେ ନାହିଁ, ଅନ୍ୟମାନଙ୍କୁ ଘେନି ଚଳେ, ତାଙ୍କରି ଭୁଲ୍‌ର ସୁବିଧା ନିଏ । ତାଙ୍କରି ଦୟା, ସାହାଯ୍ୟ ଉପରେ ନିର୍ଭର କରେ । ସେମାନେ ଯଦି ମଣିଷଟାକୁ ବହି ପଢ଼ିଲା ପରି ପଢ଼ିପାରିଲେ ତେବେ ତ ସରିଲା !! ଆହୁରି ମୁଁ ଦେଖିଲି, ଲେଖିଲେ ଖାଲି ନିଜେ ଚିହ୍ନା ପଡ଼ିଯାଉଛି ସେତିକି ନୁହେଁ, ଆଉ ଯେଉଁମାନଙ୍କ ବିଷୟରେ ମୁଁ ଯାହା ଯାହା ଜାଣେଁ ତାକୁ ବି ପଦାରେ ପକାଇ ଦେଉଛି ! ମୁଁ ସେମାନଙ୍କ ନାଁ ନ ଦେଇପାରେଁ, ଚେହେରାକୁ ବଦଳାଇ ଲେଖିପାରେଁ, କିନ୍ତୁ ନାଁ, ଠିକଣା, ପରିଚୟ, ଚେହେରା, ଏ ସବୁ କଥା ଉହାଡ଼ରେ ସେମାନେ ମଣିଷ ହିସାବରେ ଯାହା ଯାହା ବୋଲି ମୋ ଆଖିକି ଦିଶିଛନ୍ତି ସବୁ ତ ମୁଁ ଗାଇ ଯାଉଛି ! ଅବିକଳ ନିଜ କଥା ଗାଇଲା ପରି ! ସେମାନେ ନିଜେ ତ ଅନୁଭବ କରିପାରିବେ ମୁଁ ତାଙ୍କରି କଥା କହିଛି ! ଅନ୍ୟମାନେ ବି ସନ୍ଦେହ କରିବେ ! ମୋ ଲେଖାରୁ ଗୋଟିଏ ଅଧ୍ୟାୟ ଶୁଣୁ ଶୁଣୁ ଜନରଞ୍ଜନ ଡାକୁଆ ନିଜେ ତ କଟାଶ ପରି ମତେ ଅନାଇଁ ରହିଥିଲା । ମୋ ଜୀବନ ଅଭିଜ୍ଞତା ବିଷୟରେ କେତେ କଥା ପଚାରିଥିଲା । ତା' ସ୍ତ୍ରୀ ରଜନୀ ବି କାନେଇଥିଲା, ତା'ର ଡବ ଡବ ଆଖିରେ ଦେଖିଥିଲି ଛାନିଆର ଛାଇ ।

ଜନରଞ୍ଜନ ଡାକୁଆ ମୋତେ ତା' ପ୍ରତିଦ୍ୱନ୍ଦୀ ବୋଲି ଆଦୌ ଭାବିଲା ନାହିଁ । କହିଲା, ତୁମର ମୋର ଦିଗ ଭାଗ ଭିନ୍ନେ । ଏ ଉଭୟ ପ୍ରକାର ଲେଖା ପାଇଁ ପାଠକ ଅଛନ୍ତି, ତୁମେ ଚଳାଅ, ଖୁବ୍ ଭଲ ହେଉଛି ।''

ଆଉ ଏମିତି କେତେଥର ଖୋଲା ଖାତାରୁ ପରଙ୍କୁ ପଢ଼ି ଶୁଣାଇ ପ୍ରଶଂସା ପାଇଲା ପରେ ମୁଁ ଲେଖା ବନ୍ଦ କଲି, ମୋର ଜ୍ଞାନ ଆସିଗଲା । ମଉଜ ଯେ କରେ ସେ କରେ, ପଦାରେ କହି ବୁଲିଲେ ଗୁମର ଫିଟାଇ ଦେଲେ ମଉଜ ରହେ ନାହିଁ ।

ମୁଁ ଲେଖକ ହେବି ନାହିଁ, ମୋ ଘରେ ପଶିବାକୁ ବାଟ ବତେଇବି ନାହିଁ, ମୁଁ ହେବି ବୁଦ୍ଧିମାନ୍ ହିସାବୀ ସାଧାରଣ ଲୋକ, ଓଲୁ ହେବି ନାହିଁ । ଯଦି କେବେ ଲେଖିବି,

ପାରିଲେ ଲେଖିବି ପିଲାଙ୍କ ପାଠବହି, ଅଭିଧାନ, ବ୍ୟାକରଣ, ଓଷାବାର ବିଧି, ଟୁଟୁକା ଚିକିତ୍ସା ବିଷୟରେ, ପଶୁପକ୍ଷୀଙ୍କ ବିଷୟରେ ବି ଲେଖିପାରେ ।

ନିଜ ସଙ୍ଗେ ଯୁକ୍ତି କରି ନିଜ ମନକୁ କିଳି ମୁଁ ସେତେବେଳେ ଲେଖକ ହେବାଭଳି ବିପଜ୍ଜନକ ଭାବପ୍ରବଣତା ହାତରୁ ତ୍ରାହି ପାଇଥିଲି । ମୁଁ ଦେଖିଛି, ଜୀବନରେ ଯେତେ ଲୋକଙ୍କର ବହୁ ବିଚିତ୍ର ଅନୁଭୂତି ହୋଇସାରିଛି ସେମାନେ ସେ ବିଷୟରେ ନୀରବ । ପାଟି କରୁଥାନ୍ତି ଖାଲି ଲେଖକ ବିଚରାମାନେ । ଡରୁଆ ମପାଚୁପା ଜୀବନ, ସମାଜର କାଠଗଡ଼ା ଭିତରେ ସେ ଥାଏ, ଜନ୍ମରୁ ମରଣଯାକେ ଖାଲି ବନ୍ଧା ରୁଟିନ୍, କ'ଣ କ'ଣ କରିବାକୁ ପଡ଼ିବ, କ'ଣ କ'ଣ ନ କରିବାକୁ ପଡ଼ିବ, ତାହାରି ବିଷୟରେ । ସ୍ନାୟୁରେ ଯୌବନ ଚାଲୁ କଲାବେଳେ କେଉଁ ମୁହଁ ଗୋଟିକ କି ଯୋଡ଼ିକ ଉପରେ କାହାର ମାୟା ଲାଗି ଯାଇଥିଲା । ପଛେ ଆଉ କେଉଁଠି ଖସଡ଼ାରେ ଦି'ଥର ଥରେ ଆଖି ବୁଜି ପତନ ହୋଇଥିଲା, ଏତିକି ଅନୁଭୂତିକୁ ମାଛମଞ୍ଜି ବରା କଲା ପରି ଫେଣେଇ ଫେଣେଇ ଏଡ଼େ ବଡ଼ ବଡ଼ କରି ନାନା ରଙ୍ଗରେ ରଙ୍ଗାଇ ବାରମ୍ବାର ଲେଖକମାନେ ପରଷୁଥା'ନ୍ତି, ଏତେ ଅଳ୍ପ ପୁଞ୍ଜିରେ ସେମାନେ ବୋଲାନ୍ତି 'ପ୍ରେମିକ କବି', 'ଗଭୀର ମନସ୍ତତ୍ତ୍ୱ ଅଧ୍ୟୟନକାରୀ ଯୁକ୍ତି ତାକୁ ଟଳାଇଥିବ । କେଜାଣି ? ବୋଧହୁଏ ତା' ବି ସତ ନୁହେଁ ।

କିନ୍ତୁ ସେ ନୂଆ ଆଶାରେ ତା' ଲେଖାରେ ଯେଉଁ ନୂଆ ବାଗ ନୂଆ ବାଟ ଧରିଲା ତହିଁରେ ତା' ବେଉସା ହିଁ ବୁଡ଼ିଲା ସିନା ତା'ର କିଛି ଲାଭ ହେଲା ନାହିଁ ।

ଆଉ ଏତେ ଲେଖା ଲେଖି ମୁଁ ହୋଇପାରିଲି ନାହିଁ କେଉଁ କୁଳର ।

କିନ୍ତୁ ମୋ ଜୀବନ ମୁଁ ବଞ୍ଚିଛି ମହା ଉତ୍ସାହରେ ଏଇଟା ସତ, ମୁଁ କେତେବେଳେ ଭାବି ନାହିଁ ଯେ ମୁଁ - ସତୁ ଦଳେଇ - ମୋର ମରିଯିବା ଦରକାର ।

କିନ୍ତୁ ଉତ୍ସାହ ଅର୍ଥ ଆନନ୍ଦ ନୁହେଁ ।

ୟାର ତା'ର ଜୀବନକୁ ଖୋଜିଛି, ନିଜ ଜୀବନକୁ ତ ମହଜେ; କିନ୍ତୁ ଲେଖି ରଖିଟଲା ଭଳିଆ ନୂଆ କିଛି ମୁଁ ପାଇ ନାହିଁ । ନିତି ଦିନର ଅତି ସାଧାରଣ ଘଟଣା ମୁଁ ଲେଖିଛି, ଜନ୍ମ, ମୃତ୍ୟୁ, ରୋଗ, ଭୋଗ, ଆବଶ୍ୟକ ମେଣ୍ଟାଇବା ପାଇଁ କେତେଗୁଡ଼ିଏ ଉପାୟ, କ୍ୱଚିତ୍ କାହାର ଉଦାରତା, ଅନେକ ସମୟରେ ଅନୁଦାର ସ୍ୱାର୍ଥପରତା, ସ୍ନେହ, ମମତା, ହିଂସା, ଶତ୍ରୁତା । ଏମିତି କିଛି । ଛୋଟ ତାଲିକା । ତାଲିକା ଲେଖିବାକୁ ବି ବିରକ୍ତ ଲାଗେ, କେତେଥର ଖାଲି ସେହି କଥା ?

ସବୁ ଧରାବନ୍ଧା କଥା । ଯେଉଁ କାହାଣୀ ବିଭିନ୍ନ ସମୟର ଲକ୍ଷ ଲକ୍ଷ ଲୋକଙ୍କଠିଁ ଘଟି ଯାଇଛି ସେ କ'ଣ ପୁଣି ଲେଖିବା ଯୋଗ୍ୟ ଘଟଣା ? କାହାପାଇଁ ତା'ର ଗୁରୁତ୍ୱ ? କ'ଣ ନୂଆ ? ବଞ୍ଚିବା, ମରିବା, ସୁଖ ପାଇବା କି ଦୁଃଖ ପାଇବା ?

ପୁରୁଣା-ଘସରା-କ୍ଳାନ୍ତିକର-ବିରକ୍ତିକର ।

ଭୁଲିବାକୁ ଚାହେଁ । ବୋଧହୁଏ ସେଇଥିପାଇଁ ନଗି ବାବାଜି ହେଲା । କ'ଣ ପାଇଲା ମୁଁ ଜାଣେ ନାହିଁ ।

ହୁଏତ ଆନନ୍ଦର ସଂଜ୍ଞା ମୁଁ ଗଢ଼ିଛି ଏଇ ମୋର ସାଢ଼େ ପାଞ୍ଚଫୁଟ ଶରୀର ବାହାରେ, ଏତିକି ସୀମାରେ ଖଞ୍ଜା ହୋଇ ରହିଥିବା ଯନ୍ତ୍ରମାନଙ୍କ ଶକ୍ତିର ପହଞ୍ଚ ବାହାରେ । ତେବେ କେଉଁ ସ୍ଥାନରେ ସେ ? କେମିତି ମୁଁ ସେଠିକି ଯାଇପାରିଲି ? କିଏ ମୁଁ ? କାହିଁ ? କେଉଁଠି ଅଛି ?

ଶରୀରଟା ବି ମୋ ଅକ୍ତିଆରରେ ନାହିଁ । ଓଲଟି ମତେ ବାନ୍ଧେ, ପାଣିକି ଯେମିତି ଗିଲାସ । ସମ୍ପୂର୍ଣ୍ଣ ଭାବେ ବାନ୍ଧି ବନ୍ଦୀ କରି ରଖିପାରିଲେ ମୋର ଏ ଛଟପଟ ନ ଥା'ନ୍ତା ।

ଛଟପଟ୍ । ବାଃ । ଠିକ୍ ଶବ୍ଦଟିଏ । ମୋ ଶବ୍ଦକୋଷ ବି କେତେ ଊଣା, କେତେ ଅପୂର୍ଣ୍ଣ । ଜୀବନର ଏଣେତେଣେ ବାରଚାଉଳିଆ ନ ହୋଇ ମୁଁ ଯଦି ଖାଲି ମୋ ଆବଶ୍ୟକ ଅନୁସାରେ ଶବ୍ଦଗୁଡ଼ିଏ ତିଆରି କରିଥାନ୍ତି କେଡ଼େ ଭଲ ହୋଇଥାନ୍ତା ? ଭାବିଥାନ୍ତି କିଛି କଲି ।

ନା, ନ କରିଛି ଭଲ, ସତୁ ଦଳେଇ ତିଆରି କରିଥିବା ଶବ୍ଦ ଖତୁ ଦଳେଇର ବି କାମରେ ଲାଗିବ ନାହିଁ । ଖତୁ ମୋ ବଡ଼ପୁଅ ।

ଛଟପଟ । ଛଟପଟ । କ'ଣ ମୁଁ କହିବାକୁ ଚାହେଁ ମୁଁ ଜାଣେ ନାହିଁ । ବୋଧହୁଏ ସେଇଥିପାଇଁ ଲେଖିଯାଉଛି, ଲେଖିବି ନାହିଁ ବୋଲି ପଣ କରି କାନିରେ ଗଣ୍ଠି ପକାଇ ଏତେକାଳ ବିତାଇ ବିତାଇ ତଥାପି -

ଡରମାଡୁଛି ଲେଖୁ ଲେଖୁ କିଏ ଆସି ଖାତାଟା ଛଡ଼େଇ ନେବ । ପରୀକ୍ଷା ହଲରେ ସେ ଘଟଣାଟା କେତେଥର ମୋର ଦୁଃସ୍ୱପ୍ନ ହୋଇ ରାତିରେ ଆସି ମତେ ଡରେଇଛି ।

ହଉ, ଆଉ ଛଟପଟ୍ ନ ଥିବ ।

# ଯାତଭାଡ଼ି

ବଡ଼ ସହରର ବଡ଼ପଡ଼ିଆ ଦକ୍ଷିଣପୂର୍ବ କଣ ପାଖେ ସେ ଗୋଟିଏ ଦି'ପୁରୁଷ ଉଚ୍ଚ ପକା ପିଢ଼ି, ତା' ଉପରେ ସିମେଣ୍ଟ ଚଟାଣ, ସେଠି ଦରକାର ପଡ଼ିଲେ ଖୁଣ୍ଟ ପୋତିବାକୁ ଖୋପ ଅଛି, ଦି'ଆଡୁ ଚଢ଼ିବାକୁ ପାହାଚ ଅଛି। ପିଢ଼ିଟି ସେମିତି ଫୁଙ୍ଗା ପଡ଼ିଥାଏ, ଖରା ବରଷା ଶୀତ କାକର ଖାଏ, କେବେ କେବେ ଖେଳିଲା ପିଲାଏ ତା'ଉପରେ ଚଢ଼ି ଖେଳନ୍ତି, କେବେ କେବେ କେଉଁ କୁତୂହଳୀ ଛେଳି କି ଦୁଃସାହସୀ ଛେଳି ସେଠି ଚଢ଼ନ୍ତି, ପଡ଼ିଆ ଆଡ଼କୁ ଗର୍ବିତ ଠାଣିରେ ଅନାନ୍ତି, ଜଣାଇ ଦିଅନ୍ତି, ''ଦେଖ, ଆମେ ଆଜି ଏଠି।''

ପଡ଼ିଆର ଚାରିପଟେ ସଡ଼କ। ପୂର୍ବପଟର ଓ ଦକ୍ଷିଣପଟର ସଡ଼କ ସେ ପିଢ଼ିଠୁଁ ଅଳ୍ପ ଦୂରରେ କିନ୍ତୁ ସେବାଟେ ଯେଉଁ ଜନସ୍ରୋତ ଚାଲିଥାଏ ତହିଁରେ କେହି ସେ ଲଣ୍ଡା ପିଢ଼ି ଆଡ଼କୁ ଅନାଇଁ ଅଟକିବାର କାରଣ ନ ଥାଏ। ବଡ଼ ସହରର ମଣିଷର କିଛି ଉଦ୍ଦେଶ୍ୟ ଥିଲେ ସେ ରାସ୍ତାକୁ ଓହ୍ଲାଏ, ରାସ୍ତା ଧରିଲେ ତରତର ହୋଇ ଚାଲେ ବା କେଉଁ ଯାନରେ ଯାଏ। ଫୁଙ୍ଗା ପିଢ଼ିଟାକୁ ନିଘା ଦେବା ତ ଦୂର କଥା, ଏଡ଼େ ବଡ଼ ପଡ଼ିଆକୁ ଅନେଇଁ ତା' ଘାସକୁ ଦେଖିବା, କେତେବେଳେ ବହଳ ଛନଛନ ଶାଗୁଆ, କେତେବେଳେ ମହା ଶୁକୁଶୁକୁ, କେତେବେଳେ ଚନ୍ଦା ପଡ଼ିଆ କି ରାସ୍ତାକରର ଗଛମାନଙ୍କୁ ଅନେଇଁ ଠିଆ ହେବା, କେତେବେଳେ କଅଁଳିଆ ନାଲିଚା ପତ୍ର ମୁଣ୍ଡ ଟୁଙ୍ଗାରୁଛି, କେତେବେଳେ କେଉଁ ଗଛରେ କେଉଁ ରଙ୍ଗର ଫୁଲ, କେଉଁ ଫଳ, ଚଢ଼େଇ କି ଗୁଣ୍ଡୁଚିମୂଷାଙ୍କ ଖେଳ, ଅଟକି ରହି କିଛି କେହି ଦେଖୁଥିବାର ଦିଶେ ନାହିଁ। ସମସ୍ତେ ଚାଲିଯାଆନ୍ତି।

କିନ୍ତୁ ସେ ପିଢ଼ିର ପୂର୍ବପଟ ରାସ୍ତାରେ ଚାଲି ଚାଲି ମୁଁ ଯେତେବେଳେ ପରିବା କିଣିବାକୁ ଚାଲିଥାଏ କି ମୁଣି ଓହଳେଇ ସଉଦା ସାରି ଫେରୁଥାଏ, କେତେଥର ମୁଁ ଖଣ୍ଡେ ଦୂରରୁ ସେ ପିଢ଼ି ଆଡ଼କୁ ଅନାଇଁ ଅନାଇଁ ଚାଲିଥାଏଁ, ଆଉ କେତେଥର ବି ଅନୁଭବ କରିଛି ଯେ ମୁଁ ସେ ପିଢ଼ି ଆଡ଼କୁ ଅନାଇଁ ଠିଆ ହୋଇ ରହିଥିଲି ଓ ଫେରିଯାଇଥିଲି ପଚାଶ ବର୍ଷ ପଛକୁ ଡେଇଁ ମୋ ପିଲାଦିନକୁ। ସାତ ଆଠ ବର୍ଷର ପିଲା ଆଖିରେ ଯେଉଁଟା ଦିଶୁଥିଲା ସେଇଟା ନ ଥିଲା ଇଟା ସିମେଣ୍ଟରେ ତିଆରି ଉଚ୍ଚ ପିଢ଼ି, ସେଇଟା ଥିଲା ଆମ ଗାଁ ଭଗତ ମହାରଣା ଆଦି ବଢ଼େଇମାନଙ୍କ ହାତତିଆରି କାଠ ଭାଡ଼ିଟିଏ। ଦି'ପୁରୁଷ ଉଚ୍ଚ ଚାରୋଟି ଖୁଣ୍ଟ ଉପରେ ବସିଥିଲା, ସେଠିକି ଚଢ଼ିବାକୁ ଉଠିଯାଇଥିଲା କାଠର ଶିଡ଼ି।

ତାହାରି ନାଁ ଥିଲା 'ଯାତ-ଭାଡ଼ି', ଆମ ଗାଁ ରାମନବମୀ ଯାତ୍ରାବେଳେ ଯାତ୍ରା ପଡ଼ିଆରେ ସେଇଟା ହେଉଥିଲା ରାବଣର ମଞ୍ଚ । ଛ' ଫୁଟ ଛ' ଇଞ୍ଚ ତେଙ୍ଗା ଚେକା ମୁହାଁ ନିଶୁଆ ନେତ ସୋଇଁ ଦି'କାନ୍ଧର ଏମୁଣ୍ଡ ସେମୁଣ୍ଡ ନଅଟା ରାବଣ ମୁଖା ଖଞ୍ଜା ହୋଇଥିବା ପଟା ବାନ୍ଧି ହୋଇ, ଗୋଟାଏ ରାବଣ ମୁଖା ପିନ୍ଧି, ରାଜା ପୋଷାକ ପିନ୍ଧି, କେତେବେଳେ ସେହି ଯାତଭାଡ଼ି ଉପରେ ଟହଲୁଥିଲା, କେତେବେଳେ ରାଗରେ ଗର୍ଜି ଗର୍ଜି କ'ଣ ହୁକୁମ୍ ହାଙ୍କୁଥିଲା, କେତେବେଳେ ହତିଆର ହଲେଇ ଡିଆଁଡେଇଁ କରୁଥିଲା, ରଡ଼ି ଛାଡ଼ୁଥିଲା, ଲାଗୁଥିଲା ଅଇଛା ଡେଇଁ ପଡ଼ିବ, ଆମୁକୁ ଧରିବ । ଡର ମାଡ଼ୁଥିଲା । ଇଲୋ ବାପାଲୋ ! କେଡ଼େ ବିକଟାଳ ଚେହେରା ! କେଡ଼େକେଡ଼େ ଆଖି ! କେଡ଼େକେଡ଼େ ଦାନ୍ତ ! କେଡ଼େ ଦାଢ଼ି ! କେଡ଼େ ବଡ଼ ତା' ଆକାର ଦିଶୁଥାଏ ! କେତେ ବଳ କେତେ ପ୍ରତାପ ! କିନ୍ତୁ ସେ ଡରେଇ ପାରୁଥାଏ ବୋଲି ତ ଆମ ମନ ଆମ ନିଘା ତା' ଆଡ଼କୁ ଓଟାରି ହୋଇଯାଉଥାଏ, ତା' କଥା ଶୁଣିବାକୁ, ସେ କ'ଣ କରୁଛି ଦେଖିବାକୁ ଆମେ ଅନିଦ୍ରା ହୋଇ ତାହିଁ ବସିଥାଉଁ ବଡ଼ପଡ଼ିଆରେ, ଖୋଲା ଆକାଶ ତଳେ !

ରାମଲୀଳାର କାହାଣୀଟା ଅନ୍ୟ ଲୋକେ ଛାନ୍ଦରେ ଗାଉଥାନ୍ତି ତଳେ ବସି, ପଖୋଉଜ ବାଜୁଥାଏ, ଆଉ ଠାଏ ଅରାଏ ଖୋଲା ଜାଗା ଥାଏ, ସେଠି ନାଚି ଗୀତ ବୋଲି ରାମାୟଣର ପାତ୍ରପାତ୍ରୀମାନେ ଅଭିନୟ କରି ଯାଉଥା'ନ୍ତି, ଲଢ଼େଇଗୁଡ଼ାକ ସେହି ତଳେ ପଡ଼ିଆ ଉପରେ ହୋଇଥାଏ । ରାବଣର ପାଳି ପଡ଼ିଲେ ସେ ରେ ରେ କାର କରି ଶିଡ଼ି ବାଟେ ଓହ୍ଲେଇ ଆସେ । ବାପ୍‌ରେ ! କି ଲଢ଼େଇ ସେ କରେ ! ରାମ ଲକ୍ଷ୍ମଣ ପିଲା ଲୋକ ବୋଲି ଆମେ ଚାହୁଁ ସେମାନେ ଜିତନ୍ତୁ, ସତ, କିନ୍ତୁ ଆମେ ରାବଣକୁ ବି ଚାହୁଁ, ସେ ନ ଥିଲେ ରାମଲୀଳା ଦେଖିବାର କି ମଜା ?

ତଳେ ଦେଖିବା ଲୋକ ଥାଟପଟାଳି, ଆମ ଗାଁ ରାମନବମୀ ଯାତ ସେ ଖଣ୍ଡମଣ୍ଡଳରେ ନାଁ ଡାକ୍, ଆଉ ଯାତ ଭାଡ଼ି ଉପରେ ବସି, ଠିଆହୋଇ, ବୁଲି ବୁଲି, ରାବଣ ଦରବାର କରେ । ଆମେ ଯେତେ ଦେଖଣାହାରି ସମସ୍ତେ ଯେପରିକି ତା'ର ବାଧ ପ୍ରଜା । ସେ ତା'ର ଆଦେଶ ସେ ଜାଗାରୁ ଘୋଷଣା କରେ । ତା' ପାଖରେ ଠିଆ ହୋଇଥା'ନ୍ତି ପାଗ ଭିଡ଼ି ପୋଷାକ ପିନ୍ଧି ତା' ମନ୍ତ୍ରୀ ଚାରି ପାଞ୍ଚ ଜଣ । ସେ ପଦେ କ'ଣ କହିଦେଲେ ସେମାନେ ଜଣ ଜଣ କରି ବଡ଼ ପାଟିରେ ନିଜ ନିଜ କହିବା ଭଙ୍ଗୀରେ ନିଜ ମନରୁ ଫାନ୍ଦି ଲଗେଇ ଯୋଡ଼ି ଆଉ ଦଶପଦ ହୁକୁମ୍ ରଡ଼ିଦିଅନ୍ତି; ବେଳେବେଳେ ସେମାନଙ୍କର ତୁଣ୍ଡରୁ ବାହାରିଥିବା ସେହି ରାଜାଦେଶରେ ଇସ୍ତାହାରଗୁଡ଼ାକ ପରସ୍ପରଠୁଁ ଓଲଟା ଓଲଟା ଅର୍ଥ ବୁଝାଏ । ରାବଣ ସମସ୍ତିଙ୍କ କଥାରେ ହୋଇ ହୋଇ କରି ମୁଣ୍ଡ ହଲାଏ । ବେଳେବେଳେ ରାଗିଯାଏ, ମନ୍ତ୍ରୀଏ ଥରନ୍ତି । ଏ ବିଭ୍ରାଟ ଦେଖି ଲୋକେ ହସି

ହସି ଗଡ଼ନ୍ତି । ଆହୁରି ହସ ଉଠେ ଯେତେବେଳେ ତଳେ ପଡ଼ିଆରେ ଠିଆ ହୋଇ ହାତଯୋଡ଼ି ମଞ୍ଚା ଉପରକୁ ଅନାଇଁ ରାବଣର ଦୂତ ତାକୁ ସମ୍ବାଦ କହେ -

''ଭୋ ଦେବ ରାବଣେଶ୍ୱର ବୀରାଧିବୀରବର
ଶୁଣିବାକୁ ସାବଧାନ ହୋ ମଣିମା !''
ଯାତଭାଡ଼ିରୁ ଶୁଭେ, ''ହୈ ହୈ''
''ଲଖଣ ଇନ୍ଦ୍ରଜିତ୍‌କୁ ମାରି ପକାଇଲା !''

ଉପରେ ମନ୍ତ୍ରୀ ବୁଝାଇ ଦିଅନ୍ତି, ''ଇନ୍ଦ୍ରଜିତ୍ ଲଖଣକୁ ମାଇଲା'' ଆଉ ରାବଣ ଆନନ୍ଦରେ କୁଦାମାରେ, କହେ - ''ହୋ ନଗରବାସୀ, ଉତ୍ସବ କର, ଇନ୍ଦ୍ରଜିତ୍ ଲଖଣକୁ ମାଇଲା ।''

ଥରି ଥରି ଦୂତ ପୁଣି ନିବେଦନ କରେ, ''ଶୁଣିବାକୁ ଆଜ୍ଞା ହେଉ ହୋ ମଣିମା, ଲଖଣ ଇନ୍ଦ୍ରଜିତ୍‌କୁ'' ତଳେ ଉଠେ ହସ ।

କୁଆଡ଼େ ଗଲା ସେ ଯାତଭାଡ଼ି ଓ କୁଆଡ଼େ ଗଲା ସେ ରାବଣ ? ନା ସବୁ ଯେମିତି ବଦଳିଛି, ପଚାଶ ବର୍ଷ ତଳର ସେ ଗାଁର ଚେହେରା, ସେ ଦେଶ, ସେ ସମୟ, ସେମିତି ରାବଣର ଚେହେରାବି ବଦଳିଯାଇଛି ।

ସେବାଟେ ଗଲାବେଳେ ବଡ଼ପଡ଼ିଆରେ ସେ ପିଢ଼ିକୁ ଚାହିଁ ଚାହିଁ ମୋର ସେହି ପିଲାଦିନର ସ୍ମୃତି ମନେପଡ଼େ ଓ ତା'ପରେ ଯେଉଁ ପରିବର୍ତ୍ତନ, ସେହି କଥା ମନେପଡ଼େ । ଦିନୁଁଦିନ ଜିନିଷପତ୍ରର ଭାଉ କେଡ଼େ ମହଙ୍ଗା ହୋଇଗଲାଣି । ଯେ କିଣିଖିଆ, ଅଥଚ ଆୟ ଅଳ୍ପ ଓ ସୀମିତ, ଅସତ୍ ଉପାୟକୁ ମନ ଯାଏ ନାହିଁ କିମ୍ବା ଗଲେ ବି କରି ଆସେ ନାହିଁ, କେଡ଼େ କଷ୍ଟରେ ତା'ର ଜୀଉଣା ଚାଲେ ! କାହାର କିଛି ଥାଉ କି ନ ଥାଉ, କେଡ଼େ ଅଶାନ୍ତି, ଅସ୍ୱସ୍ତି, ଉଦ୍‌ବେଗ, ଆତଙ୍କ ! କେତେବେଳେ କେଉଁଠି କି ବିପଦ ପଡ଼ିଯିବ ଠିକଣା ନାହିଁ । ବଢ଼ିବଢ଼ି ଉଠୁଛି ମଣିଷ ପ୍ରତି ମଣିଷର ଅମଣିଷପଣ ।

କିନ୍ତୁ ସହର ବଢୁଛି, କୋଠାର ସଂଖ୍ୟା କୋଠାର ଆକାର ବଢୁଛି, ଦୋକାନ ବେପାର ବଢୁଛି । ସଡ଼କରେ ଗାଡ଼ିମଟର, ରିକ୍ସାର ସୁଅ ବଢ଼ିଲାଗିଛି, ଯେତେ ସଂଖ୍ୟାରେ ଲୋକେ ଯେତେ ଯେତେ ଦାମୀ ଜିନିଷ କିଣୁଛନ୍ତି, ଯେପରି ଖର୍ଚ୍ଚ କରୁଛନ୍ତି, ପୂର୍ବର ଅବସ୍ଥା ଭାବିଲେ ତାହା କଳ୍ପନା କରି ହେଉ ନାହିଁ । ସେମିତି ଆମର ପଚାଶ ବର୍ଷ ତଳର ଗାଁ'ଟି । ଗହୀର ବିଲ ହୁଡ଼ାଏ ହୁଡ଼ାଏ ଚଲାବାଟ, ନ ହେଲେ ପୁରୁଣା ନଈବନ୍ଧ, ତା' ଉପରଟା ସ୍ଥାନେ ସ୍ଥାନେ ଦନ୍ତଛଡ଼ା କଟୁରି ଦାଢ଼ ପରି, ନ ହେଲେ ଗାଡ଼ ଗାଡ଼ । ଇନ୍ଦ୍ର ପାଳିଲେ ବର୍ଷକେ ଗୋଟାଏ ଧାନ ଫସଲ ଉଠେ, ରବି ଫସଲ ଦିନେ ଅଳ୍ପ ଅଳ୍ପ କୋଳଥ, ବିରି, ମୁଗ । ମାଟିକାନ୍ଥ ନଡ଼ାଛପର ସାନସାନ ଘର କେତୋଟିରେ ଗୋଟିଏ ଗୋଟିଏ ସାହି, କେତେ ଘର ଫଟା, ଭଙ୍ଗା । ଛିଣ୍ଡା ମଇଳା ପିନ୍ଧା ସ୍ତ୍ରୀ ଓ ପୁରୁଷ, କାହାର

ଖଣ୍ଡେ ସଫା ଲୁଗା, କାମିଜ୍ କୁରୁତା ଥିବା କ୍ୱଚିତ୍ । ଏବେ ଗାଁ ତଳେ ତଳେ କେନାଲ ଗଲାଣି, ଜମିରେ ଆଗଠୁଁ ଛ'ଗୁଣ ଆଠଗୁଣ ଆମଦାନି, ତିନିତିନିଟା ଫସଲ, ବର୍ଷତମାମ୍ କାମ । ଏବେ ଅଧିକ ଉତ୍ପାଦନକ୍ଷମ ବିହନ ଲାଗେ, ଜାତିଜାତିକା ସାର ଦିଆଯାଏ, ଧାନ ଛଡ଼ା ଆଖୁ ହୁଏ, ଆଳୁ ହୁଏ, ଜାତି ଜାତି ରବି ଫସଲ ହୁଏ, ସବୁ ପ୍ରକାର ପନିପରିବା ହୁଏ, ସହରକୁ ଟ୍ରକ୍ ବୋଝେଇ ହୋଇ ଚାଲିଯାଏ । ଏବେ ଦିଶନ୍ତି ଭଲ ଲୁଗା କାମିଜ୍‌ପିନ୍ଧା ଲୋକ, ପ୍ୟାଣ୍ଟ୍ ହାୱାଇପିନ୍ଧା ଯୁବକମାନେ । ଶାଢ଼ି ବ୍ଲାଉଜ୍‌ପିନ୍ଧା ସ୍ତ୍ରୀଲୋକ, ସବୁ ସାହିର, ସବୁ ଜାତିର । କେତେ ସାହିରେ କୋଠାଘର ଠିଆ ହେଲାଣି, କେଉଁ ଘର ଛାତ ବି ପକ୍କା, କାହା ଛାତ ଟାଇଲର । ଗାଁକୁ ପଡ଼ିଛି ଦୁଇଦୁଇଟା ପକ୍କା ସଡ଼କ, ଗୋଟାଏ ନଇବନ୍ଧ ଉପରେ, ଗୋଟାଏ ନାଳବନ୍ଧ ଉପରେ, ବଡ଼ ସହରକୁ ଯାଇଥିବା ବଡ଼ ସଡ଼କରେ ମିଶିଛି । ସେଥିରେ ଚାଲେ ଟ୍ରକ୍, ଟ୍ରେକର୍, କାର୍, ସ୍କୁଟର, ସାଇକଲ, ଶଗଡ଼ । ଆଗେ ସାଇକଲ ଖଣ୍ଡେ ବି ଗାଁରେ ନ ଥିଲା, ଏବେ ଘରେ ଘରେ । କେତେଜଣଙ୍କର ସ୍କୁଟର ହେଲାଣି । ଏବେ କେହି କେହି ଗ୍ରାମବାସୀ ଟ୍ରାନ୍‌ଜିଷ୍ଟର ଝୁଲାନ୍ତି । ଦୁଇ ସଡ଼କର ଛକ, ଛକମାନଙ୍କରେ ଦୋକାନ ଘର, ଦୋକାନରେ ରେଡ଼ିଓ ବାଜେ, ଗ୍ରାମୋଫୋନ୍ ରେକର୍ଡ଼ ବି ବାଜେ । ଆଗେ ଗାଁରେ ରାତି ହେଲେ ବିଲି ବିଲି ଅନ୍ଧାର, ଏବେ ଏଠି ସେଠି କେତେଟା ବିଜୁଳିବତି ଜଳେ, ଘରେ ଘରେ ନଳ୍ଣ, କେତେଜଣଙ୍କର ପେଟ୍ରୋମ୍ୟାକ୍ସ । ଗାଁ ଲୋକଙ୍କର ସେତେବେଳେ ଯେଉଁ ଉତ୍କଟ ଅଭାବ, ଦାରିଦ୍ର୍ୟ, ଅସହାୟତା, ଏବେ ଆମ ଗାଁରେ ସେପରି ନାହିଁ । କିଛି ଗରିବ ଲୋକ ଅଛନ୍ତି ସତ, ସେମାନେ ଅଳ୍ପ । ଅଭାବ ଅଛି ବୋଲି ମନ ଅଶାନ୍ତ, ଏପରି ଅନେକେ, ତା'ର କାରଣ ନୁହେଁ ଯେ ସେ କାଳର ଲୋକଙ୍କଠୁଁ ଏମାନଙ୍କୁ କମ୍ ମିଳୁଛି । ତା'ର କାରଣ ସେକାଳରେ ସେମାନେ ଏତେ ପ୍ରକାର ସୁଖସୁବିଧା ଖୋଜୁ ନ ଥିଲେ, ଯେମିତି ସେମିତି ହେଉ, ଖାଇ ପିନ୍ଧି ଚଳି ଗଲେ ହେଲା । ମିଳିବ ନାହିଁ ଧରି ନେଇ ଆଉ ଅଧିକକୁ ମନ ବଳାଉ ନ ଥିଲେ । ଏମାନଙ୍କ ଆଖି ଖୋଲିଛି, ଧାରଣା ବଦଳିଛି, ସହରରେ ହେଉ, ଗାଁରେ ଥିଲା ଘରେ ହେଉ, ଅନ୍ୟମାନେ ଯେଉଁ କଣ୍ଟରେ ଚଳନ୍ତି, ଯେଉଁ ପ୍ରକାର ଭୋଗ ଲୋଡ଼ନ୍ତି, ଏମାନେ ବି ସେଇଆ ଲୋଡ଼ନ୍ତି । ''ଆମେ ବି ମଣିଷ । କେଉଁ ଗୁଣେ କାହାଠୁଁ ଊଣା ? ଆମର ବି ଦରକାର'', ସେମାନେ ଭାବନ୍ତି । ଗାଁ ପାଟିରେ ନୂଆ ସ୍ୱାଦ ଲାଗିଛି, ତା'ର ନୂଆ ଭୋକ, ଯେକୌଣସି ଉପାୟରେ ହେଉ, ସେ ଭୋକକୁ ମେଣ୍ଟାଇବାକୁ ଲୋକେ ଆଗଭର । ଯେଉଁ ଉପାୟରେ ତା' ମେଣ୍ଟିପାରିବ ବୋଲି ଯାହାକୁ ଦିଶିଲା, ସେ ଧରିଲା ସେହି ମାର୍ଗ, ସେଥିରେ ନ୍ୟାୟ ଅନ୍ୟାୟ କି ଅନ୍ୟ କିଛି ବିଚାର ନାହିଁ । ଧର୍ମ-ଅଧର୍ମ, ନ୍ୟାୟ-ଅନ୍ୟାୟ, ଏସବୁ ବିଚାର ପୁରୁଣା ଚଳଣି ପରି ଲୁଚି ଲୁଚି ଯାଉଛି । ଗାଁକୁ ଧନ ଆସିଛି, ଆସୁଛି, କିନ୍ତୁ ସ୍ନେହ ନାହିଁ, ଶାନ୍ତି ନାହିଁ, ନିରାପତ୍ତା ନାହିଁ । ଯେ ଯାହା ଖଞ୍ଜାରେ ଯେ ଯାହା ସ୍ୱାର୍ଥରେ ଯେ ଯୁଆଡ଼େ ।

ଭାବୁ ଭାବୁ ବାଟ ଚାଲୁ ଚାଲୁ ମନେ ପଡ଼ିଯାଏ ଗୋଟାଏ ଶବ୍ଦ - 'ଦୁର୍ନୀତି' । ବାଟରେ ଘାଟରେ ସବୁଠି ଲୋକେ ସେହି ଶବ୍ଦଟି କୁହାକୁହି ହୋଇ ଆକ୍ଷେପ କରନ୍ତି, ତା'ର ସହସ୍ରେ ରୂପ ବର୍ଣ୍ଣନା କରନ୍ତି, ସହସ୍ରେ ନାଁ କହିଯାଆନ୍ତି । ସେ ଭିତରେ ଓ ବାହାରେ, ସେ ଉପରେ ଓ ତଳେ, ସେ ବ୍ୟାପିରହିଛି, ତାହାରି ଯୋଗୁଁ ସବୁ ଅଶାନ୍ତି ଅମଙ୍ଗଳ ବିଶୃଙ୍ଖଳା, ଖବରକାଗଜମାନେ ତା' ବିଷୟରେ କେତେ କଥା ଲେଖନ୍ତି । କିନ୍ତୁ କାହିଁ ? ତୁଣ୍ଡ ହାଉ ହାଉ ଛଡ଼ା କାର୍ଯ୍ୟରେ କେଉଁଠି କି ଉଦ୍ୟମ ଆରମ୍ଭ ହୋଇଛି ମଣିଷର ମନରୁ ଆଚରଣରୁ ସମାଜରୁ ଦେଶରୁ ଦୁର୍ନୀତିକୁ ତଡ଼ିବାକୁ ? ଆଗ ସୁନୀତି ଆସିଲେ ସିନା ! ଲାଭ, ଲୋଭ, ଇନ୍ଦ୍ରିୟ ସୁଖର ନାନା ଲାଳସା କାଟି, ନିଜେ ଯାଚି ହୋଇ କଷ୍ଟ ସହି କିଏ ଆଗ୍ରହୀ ହେଉଛନ୍ତି ନିଜଠି ସୁନୀତି ପ୍ରତିଷ୍ଠା କରିବାକୁ ? ତେଣୁ ବୃଥା ବକ୍ ବକ୍ କି ବୃଥା କୁମ୍ଭୀର କାନ୍ଦଣା, ଫଳ ଫଳି ନାହିଁ । ଲାଗୁଛି ସତେ ଯେପରିକି - ଯାହାକୁ ଦୁର୍ନୀତି କୁହାଯାଏ ସେଇଟା ହିଁ ସଂସାରରେ ଚାଲିବାକୁ ରାଜପଥ ବୋଲି ଲୋକେ ଧରି ନେଉଛନ୍ତି । ସେଠି ଚକ୍ଷୁଲଜ୍ଜା ନ ଥିବ, ଡର ଭୟ ନ ଥିବ, ନିଜଠି ବିବେକ ଅଛି ବୋଲି ଅନୁଭୂତି ହିଁ ନ ଥିବ, କାହାରି ପ୍ରତି ଅନୁରକ୍ତି ନ ଥିବ, ଉପରୋଧ ନ ଥିବ, ଦୟାମାୟା କିଛି ନ ଥିବ, ଖାଲି ନିଜ ସ୍ୱାର୍ଥ ପାଇଁ ଲୋକେ ଧାଉଁଥିବେ, ସହରରେ ହେଉ, ଗାଁରେ ହେଉ, ଯେଉଁଠି ହେଉ । ଧରାପରା, ଛଡ଼ାଛଡ଼ି, ଧକାଧକି, ପେଲାପେଲି, ଦଳାଦଳି, ଚକଟାଚକଟି, କଟାକଟି ଆହୁରି ବଢ଼ିଥିବ, ବହୁତ ବଢ଼ିଥିବ, ସେତେବେଳେ କେମିତି ଦିଶୁଥିବ ଏ କୋଠା ମାଳମାଳ ଆଲୁଅ ଝଲଝଲ ଦେଶର ଅବସ୍ଥା ?

ଫାଙ୍କା ପଡ଼ିଆ କଣରେ ସେଇ ଉଞ୍ଚା ପକ୍କା ପିଢ଼ିଟା ଏମିତି ନାନା କଥା ମନେ ପକାଇଦିଏ, ବାରମ୍ବାର ପଛକୁ ଦେଖିଯାଉଥାଏ, - ଅତୀତର ସେ ଅମଳଟା କେଡ଼େ ଗରିବ ଥିଲା । ଅଥଚ ସେ ଗାଁରେ ଥିଲା ଟିକିଏ ସ୍ନେହ, ଟିକିଏ ଛାଇ, ତା' ପାଇଁ ମନଟା ଗୋଳେଇ ପୋଳେଇ ହୁଏ ।

ନିଜକୁ ଥଟ୍ଟା କରେ, - ମୁଁ ମୋ ପିଲାଦିନକୁ ଖୋଜୁଛି ।

ସେଦିନ ସଞ୍ଜବୁଡ଼େ ଚାରିଆଡ଼ୁ ମଣିଷଙ୍କ ସୁଅ ଛୁଟିଥାଏ ସେହି ବଡ଼ପଡ଼ିଆଆଡ଼େ, ରାସ୍ତାରେ ପ୍ରଚଣ୍ଡ ଭିଡ଼, ମୁଁ ବି ନିଜକୁ ମିଶାଇଦେଲି ସେହି ଭିଡ଼ ଭିତରେ, ଚାଲିଲି । ପଡ଼ିଆର ଉତ୍ତରପଟ ରାସ୍ତା କରେ କରେ ଅନେକ କାର୍, ଟ୍ରକ୍ ଓ ବସ୍ ଥୁଆ ହୋଇଛି । ଆହୁରି କେତେଗୁଡ଼ିଏ ଗାଡ଼ି ଥୁଆ ହୋଇଥିବାର ଦିଶିଲା । ଏଡ଼େ ବଡ଼ ପଡ଼ିଆରେ ଏମୁଣ୍ଡୁ ସେମୁଣ୍ଡ ମଣିଷ ଭର୍ତ୍ତି, ଚାରିଆଡ଼େ ମାଇକ୍ ଲାଗିଛି, କିଏ ଭାଷଣ ଦେଉଛନ୍ତି, ମାଇକ୍‌ରେ ଶୁଭୁଛି । ଦୂରରେ ପଡ଼ିଆ ସେମୁଣ୍ଡ କଣରେ ଦିଶୁଛି, ଯେଉଁଠି ସେ ଉଚ୍ଚ ପକ୍କା ପିଢ଼ିଟି ଥାଏ, ସେଠି ସତେଯେପରି ସିନେମାର ଆଲୋକିତ ପର୍ଦ୍ଦା ଉପରେ ଫିଲ୍ମର ଦୃଶ୍ୟଟିଏ । ଧାଡ଼ି ହୋଇ ପାଞ୍ଚଜଣ ବସିଛନ୍ତି, ଜଣେ ଠିଆ

ହୋଇଛନ୍ତି, ହାତ ହଲାଉଛନ୍ତି, ଭାଷଣଟି ବୋଧହୁଏ ତାଙ୍କର । ଗୋଟି ଗୋଟି କରି ହିସାବ ଦେଇ ଦେଇ ତଥ୍ୟ କହି କହି ସେ ବୁଝାଇଯାଉଛନ୍ତି, ଅଳ୍ପ କେତୋଟି ବର୍ଷ ଭିତରେ ଦେଶର ଚାରିଆଡ଼େ କେନେ କେତେ ଟଙ୍କା ଖର୍ଚ୍ଚ ହୋଇ କେତେ କେତେ ଉନ୍ନୟନ କାମ ଆରମ୍ଭ ହେଲାଣି । ଆହୁରି କେତେ କ'ଣ ହେବାକୁ ଯାଉଛି, ନାହିଁ ନ ଥିବା ଉନ୍ନତି ଯେ । ସେ ବୁଝାଇ କହୁଛନ୍ତି ଯେ ସବୁ ଉନ୍ନତି ମୂଳରେ ଅଛି ଜଣେ ବିଚକ୍ଷଣ ଦୂରଦର୍ଶୀ ଶାସକଙ୍କ ନିର୍ଦ୍ଦେଶ, ପରିଚାଳନା, ତାଙ୍କରି ମହାନୁଭବତା । ସମସ୍ତେ ତାଙ୍କରି ନେତୃତ୍ୱ ମାନି ଏକଜୁଟ ହୋଇ କଠିନ ପରିଶ୍ରମ କଲେ ଦେଶର ବଳ ଆହୁରି ବଢ଼ିଯିବ, ଆହୁରି ଉନ୍ନତି ହେବ, ସବୁ ସମସ୍ୟା ଦୂର ହେବ ।

ଜନତା ଭିତରୁ ବାରମ୍ବାର ଜୟଧ୍ୱନି ଉଠୁଛି, ତାଳିମାଡ଼ ଶୁଭୁଛି ।

ସେ କହୁଛନ୍ତି କେମିତି ଏ ଦେଶରେ ଆହୁରି ଥୋଡ଼ାଏ ଅଛନ୍ତି ଯେଉଁମାନେ ଲୋକଙ୍କୁ ଭୁଲ ବାଟ ଦେଖାଇ ଭୁଆଁ ବୁଲାଇବାକୁ ଉଦ୍ୟମ ଚଳାଇଛନ୍ତି, ଲୋକଙ୍କ ଭିତରେ ବିଭେଦ ଲଗାଇବାକୁ ଚେଷ୍ଟା କରୁଛନ୍ତି, ସେମାନଙ୍କୁ ଗଢ଼ି ଆସେ ନାହିଁ, ସେମାନେ ଖାଲି ଭାଙ୍ଗିବାକୁ ଆଗଭର, ହୁସିଆର, ତାଙ୍କୁ ହୁସିଆର ।

ଦେଶରେ ଏତେ ଭଲ ଭଲ କଥା ହେଲାଣି, ଏତେ ଉନ୍ନତି ହେଲାଣି ଓ ହେବାକୁ ଯାଉଛି ଶୁଣୁ ଶୁଣୁ ଠିଆ ଠିଆ ସୁଖକର ସ୍ୱପ୍ନଟିଏ ଦେଖିଲା ପରି ଲାଗୁଥାଏ, ମନେ ମନେ କହୁଥାଏଁ - ସାଧୁ ସାଧୁ, ଫୁଲଚନ୍ଦନ ପଡୁ ଆପଣଙ୍କ ତୁଣ୍ଡରେ । ଭୁଲିଯାଇଥାଏ ହାଡ଼େ ହାଡ଼େ ଭୋଗୁଥିବା ଯାତନା, ଆଶଙ୍କା, ଚଢ଼ା ଦାମ୍, ଅଶାନ୍ତି, ହିଂସା ବିଶୃଙ୍ଖଳା, ଖବରକାଗଜ ଯେତେ ଯେତେ ଅପ୍ରୀତିକର ସମ୍ବାଦ ନିତି ଛାପେ ।

ଉଠିଲେ ଆଉ ଜଣେ । ଯେ ଜଣେ ହୃଷ୍ଟପୁଷ୍ଟ, ଗୋଲ ମୁହଁ, ପଣ୍ଟିମା ଯୁବକ, ପୂରିଲା ପୂରିଲା ଦେହ, ଧଳା ପାଇଜାମା ଧଳା ପଞ୍ଜାବି ପିନ୍ଧିଛନ୍ତି । ଜୟ ଧ୍ୱନିରେ ପଡ଼ିଆ କମ୍ପିଲା, ତୁହାକୁ ତୁହା ତାଳିମାଡ଼ ହେଲା । ୟାଙ୍କୁଇ ଦେଖିବା ପାଇଁ ଏତେ ଲୋକ ରୁଣ୍ଡିଛନ୍ତି, ଯେ ନୂଆ ନେତା ହେଲେବି ଖୁବ୍ ବଡ଼ ନେତା, କାରଣ ଯେ ଦେଶର ପ୍ରତାପୀ ମୁଖ୍ୟ ଶାସକଙ୍କର ପୁଅ, ସେ ଯଦି ରାଜା ଯେ ସ୍ୱୟଂ ଯୁବରାଜ । ଆଗ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନାଁ କହି ସେ ତାଙ୍କ ବକ୍ତୃତା ଆରମ୍ଭ କଲେ । ମୂଳରୁ ହିଁ ଆମ୍ଭେ ଖୁସି ହେଲୁଁ, ତାଳି ଉପରେ ତାଳି ମାଡ଼ ହେଲା । ସର୍ବମଙ୍ଗଳ ସର୍ବଶୁଭରେ ଆରମ୍ଭ ହେଲା । ସେ କହିଲେ, ଓଡ଼ିଶା ଜଗନ୍ନାଥଙ୍କ ଦେଶ । ଏତକ ଶୁଣୁଶୁଣୁ ଭଲା କେଉଁ ଓଡ଼ିଆର ପ୍ରାଣ ପୁଲକିତ ନ ହେବ ? ହଁ, ଓଡ଼ିଶାର ସେତିକି ସମ୍ପଦ ଏବେ ବି ଅଛନ୍ତି ଜଗନ୍ନାଥ । ସେ କହିଲେ ଓଡ଼ିଆ ତାଙ୍କ କଳା ଓ ଭାସ୍କର୍ଯ୍ୟ ପାଇଁ ଯୁଗେ ଯୁଗେ ବିଖ୍ୟାତ । ଆମେ ଗର୍ବରେ ଛାତି ଫୁଲେଇଲୁଁ । ସତେ ତ ! କିନ୍ତୁ ସେ ଚେତାଇ ଦେଲେ, ଆମର ଯେ ଅତି ଚଞ୍ଚଳ

ଶିଳ୍ପାୟନ ହେବାକୁ ଯାଉଛି, ଉନ୍ନୟନ ହେବାକୁ ଯାଉଛି, ଆମେ କେବଳ ସେଇଥିରେ ମାତି ରହି ଆମର କଳା କୁଶଳତାକୁ ଯେପରି ପାଶୋରି ନ ଯାଉଁ, ବରଂ ତା'ର ଅଭିବୃଦ୍ଧି କରୁଁ । ପରିଷ୍କାର ଜଣାଗଲା ଯେ ସେ ଜଣେ କଳାପ୍ରେମୀ ଆଦର୍ଶବାଦୀ ମଧ, ତାଙ୍କ ବିଚାର ଆର୍ଥନୀତିକ ଉନ୍ନୟନରେ ସୀମିତ ନୁହେଁ । ତା'ପରେ ସେ ମହାତ୍ମାଗାନ୍ଧି, ପଣ୍ଡିତ ନେହେରୁଙ୍କ ନାଁ ଧରିଲେ, କେତେ ସମସ୍ୟା ଭିତରେ ଦେଶର ଉନ୍ନୟନ ପାଇଁ କିଭଳି ଆନ୍ତରିକ ଓ କଠିନ ଉଦ୍ୟମ ଚାଲିଛି ସେସବୁ କଥା କହିଲେ, ଦେଶକୁ ବାହାରୁ ଓ ଭିତରୁ ଆସୁଥିବା ବିପଦର ଆଶଙ୍କା ବିଷୟରେ କହିଲେ, ଅନ୍ୟବାଟରେ ଯିବାକୁ ଅର୍ଥାତ୍ ଭୁଲ୍ ବାଟରେ ଯିବାକୁ ଲୋକଙ୍କୁ ମତାଉଥିବା ଲୋକଙ୍କ କଥା କହି ଜନତାକୁ ସତର୍କ କରିଦେଲେ । ସେମାନେ ଯେପରି ସେସବୁ ଲୋକଙ୍କ କଥାରେ ପଡ଼ି ଭାସି ନ ଯା'ନ୍ତି । ଜନତା ଗହଳିରୁ ପୁଣି ଜୟଧ୍ୱନି, ପୁଣି ତାଳିମାଡ଼ । ଚାଳିଶ ମିନିଟ୍ ଭାଷଣ ଶୁଣାଇ ସେ ବସିଲେ । ତାଙ୍କୁ ଧନ୍ୟବାଦ ଦେବାକୁ ଆଉ ଜଣେ ଉଠି ବକ୍ତୃତା ଆରମ୍ଭ କଲେ, କିନ୍ତୁ ସେତେବେଳକୁ ଲୋକେ ଉଠିଲେଣି । ମୁଁ ବି ଉଠି ଆସିଲି ।

ଓଃ ! କେତେ ଲୋକ ! ଲକ୍ଷେ ଲୋକ ହୋଇଥିବେ ପରା !

ଆସିଲାବେଳେ ଭାବୁଥିଲି, - ସମସ୍ତେ ନିଜ ନିଜ ପାର୍ଟ ଭଲ କଲେ । ନୂଆ ନେତା ବି ଝୁଣ୍ଟି ନାହାନ୍ତି, ସେ ଠିକ୍ ଗତରେ ପଡ଼ିଗଲେଣି ।

ତହିଁ ଆରଦିନ ସଞ୍ଜବୁଡ଼ । ପୁଣି ମୁଁ ବଡ଼ ପଡ଼ିଆକୁ ଗଲି । ସଡ଼କରେ କାଲି ପରି ଭିଡ଼ ନାହିଁ । ସାଧାରଣ ଲୋକଗହଳି, ଯେମିତି ସବୁଦିନେ । ପଡ଼ିଆର ଉତ୍ତରପଟ ସଡ଼କରେ ଆଜି ଆଉ ଟ୍ରକ୍, ବସ୍, କାର୍‌ମାନ ଥୁଆ ହୋଇ ରହି ନାହିଁ । ପଡ଼ିଆ ଫାଙ୍କା, ଅନ୍ଧାର, କିନ୍ତୁ ତା'ର ଦକ୍ଷିଣପୂର୍ବ କୋଣପଟେ ଯେଉଁଠି ପକ୍କା ପିଢ଼ିଟି ଥାଏ, ତା' ଉପରେ ସେମିତି କାଲିପରି ସିନେମାର ଆଲୋକିତ ପର୍ଦ୍ଦାଟିଏ ଭଳି କ'ଣ ଦିଶୁଛି । ସେଥିରେ ସତେଅବା ସିନେମାର ଆଉ ଗୋଟିଏ ଦୃଶ୍ୟ, ଜଣେ ଠିଆ ହୋଇଛନ୍ତି, ଆଉ ପାଞ୍ଚ ଛ'ଜଣ ବସିଛନ୍ତି, ତା' ଆଗରେ ତଳେ ଖଣ୍ଡେ ବାଟ ଗହଳି ହୋଇଥିଲାପରି ଦିଶୁଛି, ଗୋଟିଏ ଗୋଟିଏ ବିଜୁଳି ଆଲୁଅ ଦିଶୁଛି, ମାଇକ୍‌ରେ ଶୁଭୁଛି କ'ଣ ଭାଷଣର ଗର୍ଜନ, କ'ଣ କୁହାହେଉଛି କିଛି ବାରି ହେଉ ନାହିଁ, ଶବ୍ଦଗୁଡ଼ାକ ଥରିଥରିକା ଗୋଟାଏ ଉପରେ ଗୋଟାଏ ତା' ଉପରେ ଆଉ ଗୋଟାଏ ଏହିପରି କୁଦାମାରି ମାଡ଼ି ବସୁଛନ୍ତି, ପରସ୍ପର ତଣ୍ଟି ଚିପୁଛନ୍ତି, ଏକା ସଙ୍ଗରେ ଶୁଭୁଛି ଗୁଡ଼ାଏ କ୍ରୁଦ୍ଧ ଚିତ୍କାର । ଲାଗିଲା, ବୀର ରସ ଯେ, ପ୍ରଚଣ୍ଡ ଉତ୍ତେଜନା ଭିତରୁ ନାଦ ବାହାରୁଛି, କିନ୍ତୁ ମାଇକ୍ ଯନ୍ତ୍ରଟା ଶଠତା କରୁଛି । ଆଗକୁ ଗଲି, ଭିଡ଼ ପାଖକୁ । କାଲିର ଭିଡ଼ ସଙ୍ଗେ ଏ ଭିଡ଼କୁ ତୁଳନା କରାଯାଇ ନ ପାରେ । କାଲି କଥା ଅଲଗା ଥିଲା, କିନ୍ତୁ ଆଜିର ଗହଳି ବି ବହୁତ, ହଜାର ହଜାର

ହେବ । ବହୁତ ଲୋକ ବସି ପଡ଼ିଛନ୍ତି ଗୋଟାଏ ଚକଡ଼ା ମାଡ଼ି ମଞ୍ଚ ଆଗରେ, ତଳେ, ତାଙ୍କୁ ଘେରି ତା' ପଛକୁ ତା' ପଛ ହୋଇ ଟିକିଏ ଫାଙ୍କା ଫାଙ୍କା ହୋଇ ଖଣ୍ଡେ ଦୂରଯାକେ ଲୋକେ ଠିଆ ହୋଇ ଅନାଇଁଛନ୍ତି, ଶୁଣୁଛନ୍ତି । ଆଗରେ ବସିଥିବା ଲୋକଙ୍କ ଗହଳିରୁ ବେଳେବେଳେ ତାଳିମାଡ଼ ଉଠୁଛି, କେତେବେଳେ କେଉଁ ଧ୍ୱନି ଉଠୁଛି, ପଛରେ ତା'ର ସମର୍ଥନ ଶୁଭୁ ନାହିଁ, ଟିକିଏ ପଛକୁ ସେ ଶବ୍ଦବି ଶୁଭୁ ନାହିଁ, ଜଣାଯାଉଛି, ସେସବୁ ଶବ୍ଦକୁ ବିଛେଇ ଦେବା ପାଇଁ ମାଇକ୍ ଖଞ୍ଜା ହୋଇ ନାହିଁ ।

ସେହି ବକ୍ତା ଉତ୍ତେଜିତ ହୋଇ କ'ଣ କହିଯାଉଛନ୍ତି, ସତେଯେପରି ସେ ଖୁବ୍ ରାଗିଛନ୍ତି, ଗର୍ଜୁଛନ୍ତି, କଜିଆ କରୁଛନ୍ତି କି କ'ଣ, ସେ ହାତ ଟେକୁଛନ୍ତି, ହାତ ହଲୋଉଛନ୍ତି, ଅଧୀର ହେଉଛନ୍ତି, କିନ୍ତୁ କ'ଣ ସେ କହୁଛନ୍ତି ?

ଆମରି ଓଡ଼ିଆ ଲୋକ, ଓଡ଼ିଆ ଭାଷାରେ ତ କହୁଛନ୍ତି ପରା ! କିନ୍ତୁ ମାଇକ୍ ସବୁ ବିକୃତ କରି ଦେଉଛି କାହିଁକି ? ଅଥବା ପାଟିର ସାନ୍ନିଧ୍ୟକୁ, କଥାର ବେଗକୁ, ଉତ୍ତେଜନାକୁ ମାଇକ୍ ଯନ୍ତ୍ରଟି ସମ୍ଭାଳିପାରୁ ନାହିଁ । ଦେଖି ଚାହିଁ ଶୁଣି ଗୋଟାଏ ମୋଟାମୋଟି ଧାରଣା ହେଲା, ଯେ ବକ୍ତାଙ୍କର ଆନ୍ତରିକତା ଅଛି, କୌଣସି କାରଣରୁ ସେ ବ୍ୟଥିତ, ଉତ୍‌କ୍ଷିପ୍ତ ।

ସେ ବସିଲେ । ପୁଣି ତାଳି । ପୁଣି ଧ୍ୱନି । ଉଠିଲେ ଜଣେ ଭଦ୍ରମହିଳା, ସେ କୁଆଡ଼େ ପଶ୍ଚିମ ଭାରତର କେଉଁ ରାଜାଙ୍କର ରାଣୀ ଥିଲେ । ସେ ରାଜା ଆଉ ନାହାନ୍ତି । ରାଜାମାନଙ୍କ ରାଜୁତି ତ ଏ ଦେଶରେ ଆଉ ନାହିଁ । କିନ୍ତୁ ଇତିହାସ ଅଛି । ରାଣୀଙ୍କ ବୟସ କଳନା କରି ହେଲା ନାହିଁ, ଲାଗିଲା ପଚାଶରୁ କମ୍ ନୁହେଁ । ମୂର୍ତ୍ତିଟି ନିରାଭରଣା, ସୁଶ୍ରୀ, ଗାମ୍ଭୀର୍ଯ୍ୟପୂର୍ଣ୍ଣ, ସ୍ୱର ସୁଶ୍ରାବ୍ୟ । ଧାରଣା ହେଲା, ସେ ସଭାମାନଙ୍କରେ ଭାଷଣ ଦେବାକୁ ଅଭ୍ୟସ୍ତା ।

ସାରାଦେଶରେ ମହଙ୍ଗା, ବେକାରି, ଦାରିଦ୍ର୍ୟ, ବିଶୃଙ୍ଖଳା, ଦୁର୍ନୀତି, ହିଂସା, ଅନୈତିକତା, ଅଶାନ୍ତି ବଢ଼ୁଛି ବୋଲି ସେ କହିଲେ । ଏଥିପାଇଁ ପ୍ରଚଳିତ ଶାସନକୁ ଦୋଷ ଦେଲେ । ଏ ଶାସନ କେବଳ ଜଣେ ଲୋକଙ୍କ କଥାରେ ବସ ଉଠ ହୁଏ, ଏ କେବଳ ନିଜ ଗାଦି, ନିଜ କ୍ଷମତା ଚିରସ୍ଥାୟୀ କରିବାକୁ ବ୍ୟଗ୍ର ବୋଲି ସେ କହିଲେ ଓ ଯେଉଁ ବିରୋଧୀ ଦଳ ପକ୍ଷରୁ ତାଙ୍କୁ ଡାକି ଅଣା ହୋଇଛି, ତାକୁହିଁ ସମର୍ଥନ କରି ଟାଣ କରିବାକୁ ଲୋକଙ୍କୁ ମତାଇଲେ । ସେ ବସିପଡ଼ିଲେ । ମଞ୍ଚ ଆଗରେ ସେ ଚକଡ଼ାରୁ ପୁଣି ତାଳିମାଡ଼, ପୁଣି ଜୟଧ୍ୱନି ।

କଷ୍ଟ କରି ବହୁତ ଦୂରରୁ ଭଦ୍ରମହିଳା ଆସିଛନ୍ତି । କିନ୍ତୁ ସେ କ'ଣ ନୂଆ କଥା କହିଗଲେ ଯାହା ଏଠି ସେଠି ସବୁଠି ପ୍ରଚଳିତ ଶାସନର ପତନ ଚାହୁଁଥିବା ରାଜନୀତିକ ନେତାମାନେ ପୂର୍ବେ ନ କହିଛନ୍ତି ବା ଏବେ ନ କହନ୍ତି ? ବା ସେପରି ଭାଷଣର ସାରାଂଶ ଖବରକାଗଜରେ ନ ବାହାରେ ? ଶାସକଦଳର ଲୋକେ ତାଙ୍କ ଭାଷଣରେ କ'ଣ କହନ୍ତି ଓ ତାଙ୍କ ବିରୋଧୀଦଳର ଲୋକେ ସେମାନଙ୍କ ଭାଷଣରେ କ'ଣ କହନ୍ତି, ସେସବୁ

ତୁହାକୁ ତୁହା ସେହି କଥା, ସେହି କଥା ହୋଇ ହୋଇ ଗାଁର ଚାଷୀମୂଲିଆଙ୍କର ବି ପ୍ରାୟ ମୁଖସ୍ଥ ହୋଇଯାଇଛି । କାହିଁକି ବା ଭଦ୍ରମହିଳା ଭାବିଛନ୍ତି ଯେ ଯେ ପ୍ରାନ୍ତର ଲୋକେ ତାଙ୍କୁ ଓ ତାଙ୍କ କଥାକୁ ଅଧିକା ଗୁରୁତ୍ୱ ଦେବେ ? ଏମାନେ କ'ଣ ତାଙ୍କୁ ଚିହ୍ନିଛନ୍ତି ଓ ତାଙ୍କୁ ଏପରି ମାନନ୍ତି ଯେ ତାଙ୍କ କଥା ଶୁଣିବେ ? ଦେଶରେ କି ପ୍ରକାର ପରିବର୍ତ୍ତନ ହେଲେ ଭଲ ହୁଅନ୍ତା ବୋଲି ସେ କଳ୍ପନା କରିଛନ୍ତି ? କେଉଁ କ୍ଷେତ୍ରରେ, କେଉଁ ବିଷୟରେ କିପରି ଦିଶନ୍ତା ତା' ରୂପରେଖ ? ଦେଶ ଭିତରେ ଓ ବାହାରେ କେଉଁ ବିଷୟଟି କିପରି ତୁଳା ହୁଅନ୍ତା ? ସେ କଳ୍ପିତ ପରିବର୍ତ୍ତନର ଉପାଦେୟତା କ'ଣ ? ଦେଶରେ ସାଧାରଣ ମଣିଷଙ୍କର ବର୍ତ୍ତମାନ ସ୍ଥିତି ଯାହା, କି କି ଉପାୟ କଲେ ସେମାନେ ସେ ପରିବର୍ତ୍ତନ ଆଣିପାରିବେ ? ଏସବୁ ବିଷୟରେ ନିଜେ ସେ କ'ଣ ଭାବି ଆବିଷ୍କାର କରିଛନ୍ତି ? ମନରେ ନାନା ପ୍ରଶ୍ନ ଘେନି ଠିଆ ଗହଳି ପିଠିଆଡୁ ମୁଁ ତାଙ୍କ ମୁହଁକୁ ଅନାଇଲି । କିନ୍ତୁ ସେ ତୁନି ହୋଇ ବସିଲେଣି, ମୁହଁରେ ସୌଜନ୍ୟର ମୁଖା, ମଞ୍ଚ ଉପରୁ ସଭାସ୍ଥଳୀକୁ ଅନାଇଁଲେ ଯେପରି ଅନେକେ ପିନ୍ଧିଥାନ୍ତି ।

ଏଥର ଯେ ଠିଆହେଲେ ସେ ଜଣେ ବୃଦ୍ଧ ପଞ୍ଜାବୀ, ଶିଖ ଭଦ୍ରଲୋକ, ଅନୁରୂପ ପୋଷାକ, ବାର୍ଦ୍ଧକ୍ୟ ବାରି ହେଉଥାଏ ତାଙ୍କ ପାକେଲା ନିଶରୁ, କାନପାଖର ଧଳା ବାଳରୁ, ସ୍ୱରରୁ । ପୂର୍ବେ ସେ ଥିଲେ ଏ ଦେଶର ଜଣେ ମନ୍ତ୍ରୀ । ସେ କହିଲେ ସେ ହିନ୍ଦୀରେ କହିବେ, କିନ୍ତୁ ଏଡ଼େ ତରତର ହୋଇ ଏଡ଼େ ଗଡ଼ଗଡ଼ କରି କହି ଚାଲିଗଲେ ଯେ କିଛି ବୁଝି ହେଲା ନାହିଁ । ସେ ବୋଧହୁଏ ଉର୍ଦ୍ଦୁ ଓ ପଞ୍ଜାବୀମିଶା ହିନ୍ଦୀରେ କହିଲେ କି କ'ଣ, ଜଣା ନାହିଁ । କିନ୍ତୁ ଖୁବ୍ ଉତ୍ତେଜିତ ହୋଇ କହୁଥାନ୍ତି, ଲାଗୁଥାଏ ସେ କ'ଣ ସବୁ ଅଭିଯୋଗ କରୁଛନ୍ତି ଓ ସେ ଜଣେ ସାହସୀ ନିର୍ଭୀକ ଯୋଦ୍ଧା, ବୀରଦର୍ପରେ ଶତ୍ରୁକୁ ଆହ୍ୱାନ କରୁଛନ୍ତି । ଡେଙ୍ଗା, ଛାଁଆଁଟ୍, ସୈନିକ ପରି, ମୁଣ୍ଡରେ ପଗଡ଼ି, ଚିବୁକରେ ଦାଢ଼ିବନ୍ଧା ପଟି, ଧଳା ନିଶ, ପାଇଜାମା, କୋଟ୍ । ଆଉ ଏ ଲଢୁଆ ମୁଦ୍ରା, ଲଢୁଆ ଠାଣି । ବାଃ ! ଭଲ ମାନୁଛି ।

ହୁଏତ ମନ୍ତ୍ରୀ ଥାଇ ସେ ଥିଲେ ସଚ୍ଚୋଟ, ନିଷ୍ଠାପର, ଆନ୍ତରିକତାସହ କର୍ମନିଷ୍ଠ । ମୁଁ ଜାଣେ ନାହିଁ । ତାଙ୍କ ବିରୋଧରେ କିଛି ପଢ଼ିଥିଲା ଭଳି ମୋର ମନେ ନାହିଁ । ତାଙ୍କ ସମ୍ବନ୍ଧରେ ବି ଜାଣେ ନାହିଁ । ଗଲା ଚଉତିରିଶ ବର୍ଷ ଭିତରେ ଦେଶର ରାଜଧାନୀରେ କେତେ ମନ୍ତ୍ରୀ ଶପଥ ଘେନିଛନ୍ତି, ପୁଣି ଚାଲିଯାଇଛନ୍ତି । ସମସ୍ତେ ଯେ ଦେଶସାରା ନାଁଡାକ୍, ଅଭୁଲା ହୋଇ ରହିଥିବେ ତା' ନୁହେଁ । ଆଉ ତାଙ୍କ ବେଳର ସେହି ମନ୍ତ୍ରିମଣ୍ଡଳ ସେହି ଶାସକଦଳ । ସେମାନଙ୍କଠୁଁ କେତେ କଥା ତ ଦେଶର ଲୋକେ ଆଶା କରିଥିଲେ । କିନ୍ତୁ ଆଗ ତାଙ୍କର ଧ୍ୟାନ ଗଲା ଯେଉଁ ଶାସକ ଦଳ ତାଙ୍କ ପୂର୍ବରୁ ରହିଥିଲେ ତାଙ୍କ ବିରୋଧରେ ନାନା କାର୍ଯ୍ୟାନୁଷ୍ଠାନ ଚାଲୁ କରିବ ଆଡ଼କୁ, ତା'ପରେ ଧ୍ୟାନ ଗଲା ପରସ୍ପରଙ୍କ ଆଡ଼କୁ, କିଏ ପ୍ରଧାନ ବୋଲେଇବ, ବେଶି କ୍ଷମତା ବେଶି ପ୍ରତିପତ୍ତି ପାଇବ, ନିଜ

ନିଜର ଅଲଗା ଅଲଗା ଦଳବଳ ବଢ଼ାଇବ ସେହିଆଡ଼କୁ । ମତାନ୍ତରରୁ ମନାନ୍ତର, ମନାନ୍ତରରୁ ଶତ୍ରୁତା ଲାଗିଗଲା । ନାନା ଦଳ ଏକାଠି ହୋଇ ସେମାନେ ଶାସକ ଦଳଟିଏ ଗଢ଼ିଥିଲେ, କଳି ଲାଗିଯାଇ ଯୋଡ଼ିଏ ବର୍ଷରେ ତା' ଖଣ୍ଡ ଖଣ୍ଡ ହୋଇଗଲା, ସେମାନେ ସମସ୍ତେ କ୍ଷମତାରୁ ଗଲେ । ଯାହାଙ୍କୁ ସମାଲୋଚନା କରିଥିଲେ, ଯାହାଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ଚଳାଇଥିଲେ, ସେହି ପୁରୁଣା ଶାସକ ପୁଣି ଲେଉଟି ଆସିଲେ ଗାଦିକୁ ।

ତାଙ୍କ ବକ୍ତୃତା ସରିଲା । କ'ଣ ସେ କହିଗଲେ କିଛି ବୁଝିପାରିଲି ନାହିଁ ।

ତା'ପରେ ଠିଆ ହେଲେଣି ଶେଷଜଣକ, ଯାହାଙ୍କୁ ଦେଖିବା ପାଇଁ ଯାହାଙ୍କ କଥା ଶୁଣିବା ପାଇଁ ଏତେ ଲୋକ ସେଠି ରୁଣ୍ଡ ହୋଇଥିଲେ । ସେହି ଆର ମନ୍ତ୍ରୀଦଳରେ ସେ ହୋଇଥିଲେ ଜଣେ ନାଁଡାକ୍ ମନ୍ତ୍ରୀ । କିନ୍ତୁ ସେତିକି ନୁହେଁ, ବହୁ ବର୍ଷ ହେଲା ସେ ଜଣେ ନାଁଡାକ୍ ନେତା, ଏବେବି, ଯଦିଚ ସେ ଶାସକ ଗୋଷ୍ଠୀର ଗୋଟିଏ ବିରୋଧୀ ଦଳର ନେତା, ଜଣେ ନିର୍ଭୀକ, ସ୍ପଷ୍ଟବାଦୀ ସମାଲୋଚକ, ଶକ୍ତିଶାଳୀ ବକ୍ତା ବୋଲି ପରିଚିତ । ସାଧାରଣ ଜୀବନରେ ସେ ସରଳ, ନିରାଡ଼ମ୍ବର; ସଚ୍ଚୋଟ ବୋଲି ନାଁ ଶୁଣାଯାଏ । ସେ ଜଣେ ବୁଦ୍ଧିମାନ୍, ଅଭିଜ୍ଞ ରାଜନୀତିକ କର୍ମୀ, ସ୍ୱାଧୀନତାପ୍ରେମୀ ଓ ସ୍ୱାଧୀନତା ସଂଗ୍ରାମୀ ।

ସେ ଠିଆହେଲେ, ତାଳିମାଡ଼ ହେଲା, ଜୟଧ୍ୱନି ହେଲା । ଧୀର ଶାନ୍ତ ଭାବରେ ସେ ତାଙ୍କ ବକ୍ତୃତା ଆରମ୍ଭ କଲେ । ତାଙ୍କର କଥା କହିବାର ଗୋଟିଏ ସୁନ୍ଦର ଭଙ୍ଗୀ ଥିଲା, ସେ ଉତ୍ତେଜିତ ହେଉ ନ ଥିଲେ, ମୁହଁ ଆମ୍ବିଲା କରୁ ନ ଥିଲେ, ସହଜ ଭାବରେ କଥା କହି ଯାଉଥିଲେ, କଟୁ ସମାଲୋଚନାକୁ ଏପରି ବାଗରେ କହୁଥିଲେ ଯହିଁରେ ଶୁଣିଲା ଲୋକେ ହସି ହସି ଗଡ଼ୁଥିଲେ । ସେ ବୋଧହୁଏ ଚାଳିଶ ମିନିଟ୍ ଯାଏ କହିଲେ, କିନ୍ତୁ ତାଙ୍କ କଥା ଶୁଣୁ ଶୁଣୁ ସମୟ ଆଦୌ ଜାଣି ହେଲା ନାହିଁ । ତାଙ୍କ ବକ୍ତୃତା ସରିଲା, ପୁଣି ତାଳିମାଡ଼, ଜୟଧ୍ୱନି, ଆଉ ଜଣେ ଧନ୍ୟବାଦ ଦେବାକୁ ଉଠି ବକ୍ତୃତା ଆରମ୍ଭ କଲେଣି, କିନ୍ତୁ ଲୋକେ ଘରକୁ ବାହୁଡ଼ିଲେ, ମୁଁ ବି । ବାଟରେ ଭାବିଲି, ତାଙ୍କ କଥା ଖୁବ୍ ଆମୋଦ ଦେଲା ସତ, ଶୁଣୁଥିଲି, ହସୁଥିଲି, ଯାତ୍ରା ଶୁଣିଲାପରି ଉପଭୋଗ କରୁଥିଲି । କିନ୍ତୁ କ'ଣ ସେ କହିଲେଟି ?

ସେମାନେ ମନ୍ତ୍ରୀ ଥିଲାବେଳେ ଯୋଡ଼ିଏ ବର୍ଷରେ ସେମାନେ ଦେଶର ଯେପରି ଉନ୍ନତି କରିଥିଲେ ସେମାନେ ଚାଲିଗଲା ପରେ ଆଉ ସେପରି ହୋଇପାରି ନାହିଁ, ଅବସ୍ଥା ତଳକୁ ଖସିଛି ବୋଲି ସେ ଗୋଟିଏ କାଗଜ କାଢ଼ି କେତୋଟି ତଥ୍ୟ ପଢ଼ି ଶୁଣାଇଲେ । ତାଙ୍କର ସେ ଉକ୍ତିଟି ଏବେ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ଜଣାଗଲା ନାହିଁ । ସେମାନେ ଭାରି ଭଲ କାମ କରୁଥିଲେ, ଆଉ ଅନ୍ୟ କେହି ସେଭଳି କରିପାରିବ ନାହିଁ । ସେମାନେ ଲୋକଙ୍କ ମନରେ ଏପରି ବିଶ୍ୱାସ ସେତେବେଳେ ଜନ୍ମାଇ ପାରିଥିଲେ ଲୋକେ ତାଙ୍କୁ ପୁଣି ଡାକି ଆଣି ଗାଦିରେ ବସାଇଥାନ୍ତେ ।

ସେ କହିଲେ ଯେ ସେ ମନ୍ତ୍ରିମଣ୍ଡଳ ଯେ ଭାଙ୍ଗିଗଲା ତା'ର କାରଣ ଅନ୍ୟାନ୍ୟ ଦଳର ନେତାମାନେ ନିଜ ଭିତରେ ପିଟାପିଟି ଲଗାଇ ସେ ମେଣ୍ଟକୁ ଭାଙ୍ଗିଦେଲେ, କିନ୍ତୁ ସେ ଭଙ୍ଗାଭଙ୍ଗି କାମରେ ତାଙ୍କ ଦଳ ନ ଥିଲେ । ଗୋଟାଏ କିଛି ଗଣ୍ଡଗୋଳ ଘଟିଗଲେ ପିଲାଏ ଯେମିତି 'ମୁଁ ନୁହେଁ', 'ମୁଁ ନୁହେଁ' କହି ଦାୟିତ୍ୱ ଛଡ଼ାଇ ହୁଅନ୍ତି, ତାଙ୍କ କଥା ସେହିପରି ଲାଗିଲା । ହୁଏତ ସେ ଠିକ୍ କହିଲେ କିମ୍ବା ହୁଏତ କହିଲେ ଭୁଲ୍, କିନ୍ତୁ ତହିଁରେ ଆଉ କ'ଣ ଥାଏ ? ତାଙ୍କ ମନ୍ତ୍ରୀ ଥିବା ବେଳ ତ ଯାଇଛି ।

କେତେ ସମୟଯାକେ ସେ ସେହି ପୁରୁଣା କଥା କହିଲେ, ଯେ ଦେଶରେ ବଢ଼ି ଚାଲିଛି ଦାରିଦ୍ର୍ୟ, ମୁଦ୍ରାସ୍ଫୀତି, ଦରଦାମ୍, ବେକାର ସଂଖ୍ୟା, ଦୁର୍ନୀତି, ବିଶୃଙ୍ଖଳା, ନାନା ଉପଦ୍ରବ, ହିଂସାକାଣ୍ଡ, ଚୋରି, ଦୁର୍ଘଟଣା, ଉଦ୍‌ବେଗ, ଅଶାନ୍ତି ଇତ୍ୟାଦି । କିନ୍ତୁ ସେକଥା ତ ସମସ୍ତେ ଜାଣନ୍ତି । ଠିକ୍ କେଉଁ ଉପାୟ କଲେ ଏସବୁ ଦୂର ହୋଇପାରନ୍ତା ବୋଲି ସେ ଯଦି କିଛି ବାଟ ପାଇଛନ୍ତି ସେଇଆ ଶୁଣିବାକୁ ମନ ହେଉଥିଲା । ସେ କଥା ତ ସେ କିଛି କହିଲେ ନାହିଁ ।

ପ୍ରତିପକ୍ଷକୁ ସେ ନାନା ଦୋଷରେ ଦୋଷୀ ବୋଲି କହି ସେ ସମାଲୋଚନା କଲେ । କହିଲେ ଯେ ସେମାନେ ଦେଶର ନାନା ରୋଗ ପାଇଁ ଦାୟୀ, ସେମାନେ ଯେଉଁ ନୀତି ଧରି ଶାସନ ଚଳାଇଛନ୍ତି ତହିଁରେ ଅବସ୍ଥା ଦିନୁଦିନ ଆହୁରି ତଳକୁ ତଳକୁ ଯିବ, ଦେଶରେ ବିଦେଶୀ ବେପାରୀ ପଶି ଏ ଦେଶର ଶିଳ୍ପ ବେପାରକୁ କ୍ଷତିରେ ପକାଇବେ, ସେମାନେ ବସିଛନ୍ତି ଏପରି ଉପାୟ କରିଦେବେ ଯହିଁରେ ତାଙ୍କରି ଦଳର ମୁଖିଆ ପୁରୁଷାନୁକ୍ରମେ ଏ ଦେଶରେ ମନଇଚ୍ଛା ରାଜୁତି କରିପାରିବେ, ତାଙ୍କ କଥାରେ ପାଟି ଫିଟେଇବାକୁ ଆଉ କାହାରି କ୍ଷମତା ରହିବ ନାହିଁ, ତାଙ୍କରି ମର୍‌ଜି ଅନୁସାରେ ସବୁ ହେଉଥିବ, ସମସ୍ତେ ଚହିଥିବେ, ଗଣତନ୍ତ୍ର କି ବ୍ୟକ୍ତି-ସ୍ୱାଧୀନତା ବୋଲି କିଛି ରହିବ ନାହିଁ ।

ଭାବିଲେ ବଡ଼ ଭୟଙ୍କର ଚିତ୍ର ଯେ, ଦେହ ଶୀତେଇ ଉଠେ । କିନ୍ତୁ ଏ ସମ୍ଭାବନା କ'ଣ ସତରେ ଘଟିବ ଓ ଏ ଦେଶର ସତୁରି କୋଟି ଲୋକ ଜଳଜଳ କରି ତୁନି ହୋଇ ଚାହିଁ ଠିଆ ହୋଇଥିବେ ? ଘଟିବ ବୋଲି ସେ ବା ଜାଣିଲେ କେମିତି ? ସେ କ'ଣ ସର୍ବଜାଣ ? ଯଦି ସବୁ ଜାଣିପାରନ୍ତି ତା'ହେଲେ ଯେତେବେଳେ ସେ ମନ୍ତ୍ରିମଣ୍ଡଳରେ ଯୋଗ ଦେଇଥିଲେ, ସେ କ'ଣ ଜାଣିଶୁଣି ଯୋଗ ଦେଇଥିଲେ ଯେ ଦୁଇବର୍ଷ ପୂରୁ ପୂରୁ ସେ ମନ୍ତ୍ରିମଣ୍ଡଳ ନିଜ ଭିତରେ କଳି କରି ଭାଙ୍ଗିଯିବ, ଲୋକଙ୍କ ବିଶ୍ୱାସ ହରାଇବ, ଆଗ ଆସିଲାବେଳେ ଦେଶର ଲୋକଙ୍କ ମନରେ ଯେଉଁ ଆଶା ଉତ୍ସାହ ସଞ୍ଚାର କରିଥିଲା ତାକୁ ମୂଳପୋଛ କରିଦେଇ ଚାଲିଯିବ ?

ନା, ସେ ସର୍ବଜାଣ ନୁହନ୍ତି, କେହି ସର୍ବଜାଣ ନୁହନ୍ତି, କେତେ ଆଗତଭବିଷ୍ୟ ମାଳିକା ରଚନା କରାହୋଇଛି, କେଉଁଟା କେଉଁ ମନୁଷ୍ୟର ନିଜର ଆଶା କି ଆଶଂକାର ଚିତ୍ର ।

ସେ ମଧ୍ୟ ଏଠି ନିରପେକ୍ଷ ବିଚାରକ ହୋଇ ଠିଆ ହୋଇ କଥା କହୁ ନ ଥିଲେ, ଯାହାଙ୍କ ବିରୋଧରେ କହୁଥିଲେ ତାଙ୍କର ସେ ଜଣେ ପ୍ରତିପକ୍ଷ ନେତା । ନିଜ ଦଳ, ନିଜ ମତ ସପକ୍ଷରେ ଲୋକଙ୍କୁ ମନାଇବା ତାଙ୍କର ଉଦ୍ଦେଶ୍ୟ ଥିଲା, ତା'ହେଲେ କାଳେ ତାଙ୍କ ଦଳ ବଳ ପୁଣି ବଢ଼ିଉଠିବ, ଯେତେ ଦିନ ଲାଗୁ, ପୁଣି କାଳେ ତାଙ୍କ ଦଳ ଏ ଦେଶର ଶାସନ ଚଳାଇବାକୁ ସୁଯୋଗ ଓ କ୍ଷମତା ପାଇବେ ।

ଭାବି ଭାବି ଚାଲୁଥିଲି, କାଲି ଓ ଆଜି ସନ୍ଧ୍ୟାରେ ସେହି ଯୋଡ଼ିଏ ଦୃଶ୍ୟ କଥା । କେତେଥର ଦେଖିଛି ଏ ଦୃଶ୍ୟ । ଦେଶ ଲାଗି ଏ ବି ନିଶ୍ଚୟ ପ୍ରୟୋଜନ ଯେ ଯେଉଁମାନେ ଶାସନ ଦାୟିତ୍ୱ ତୁଲାଉଛନ୍ତି ସେମାନେ ମଝିରେ ମଝିରେ ଆସି ଲୋକଙ୍କ ଆଗରେ ଠିଆ ହୋଇ ବୁଝାଇବେ କ'ଣ କ'ଣ କଲେଣି, କେଉଁ ଅଭାବ କେଉଁ ସମସ୍ୟା ଦୂର କରିବାକୁ କ'ଣ କରୁଛନ୍ତି, କେତେ ବାଟ ଗଲେଣି, କି କି ଅସୁବିଧା ଦେଖୁଛନ୍ତି । ଯେଉଁମାନେ ଶାସନ ଦାୟିତ୍ୱ ତୁଲାଉ ନାହାନ୍ତି କିନ୍ତୁ ନିଜ ସ୍ୱାର୍ଥରେ ଆବଦ୍ଧ ନ ରହି ଦେଶର ଭଲ ମନ୍ଦ କଥା ଭାବୁଛନ୍ତି, ନିରପେକ୍ଷ ହୋଇ ତନଖି କରି ଦେଖୁଛନ୍ତି, ସେମାନେ ମଝିରେ ମଝିରେ ଆସି ଲୋକଙ୍କ ଆଗରେ ଠିଆ ହୋଇ ବୁଝାଇବେ, କେଉଁଥିରେ କି ଦୋଷତ୍ରୁଟି ଦେଖୁଛନ୍ତି, ଶାସକମାନେ କେଉଁଠି ଭୁଲ୍ କରୁଛନ୍ତି, ବାଟ ଚୁଡୁଛନ୍ତି ବୋଲି ସେମାନେ ଭାବୁଛନ୍ତି, ତାଙ୍କ ମତରେ ଠିକ୍ ବାଟ କ'ଣ, ଖାଲି ଗୋଟିଏ ସ୍ୱାଧୀନ ଦେଶ ଓ ଗଣତନ୍ତ୍ରର ଦେଶର ମଣିଷ ବୋଲି ଏଠି ସାଧାରଣ ଲୋକଙ୍କର କ'ଣ କ'ଣ ଦାୟିତ୍ୱ ତୁଲେଇବା ଦରକାର, କେଉଁଠି ତା'ର ଅଭାବ ପଡୁଛି । ପ୍ରଚାର ନୁହେଁ, ବିଚାର ଖେଳିଯାଉ, ଲୋକେ ଚେତନ୍ତୁ ।

ଦେଶଟିଏ ସ୍ୱାଧୀନ ହୋଇଗଲେ ଆପେ ଆପେ ଯେ ସେ ଦେଶ ଗୋଟିଏ ଗଣତନ୍ତ୍ର ଦେଶ ହୋଇଯାଏ ଏପରି ନୁହେଁ । ନାନା ସ୍ୱାଧୀନ ଦେଶରେ ନାନା ପ୍ରକାର ଶାସନ ପଦ୍ଧତି ଥାଏ କେଉଁଠି ଶାସନର ପଦ୍ଧତି 'ଏକଛତ୍ରବାଦ', ଜଣେ ଲୋକ କି ଗୋଟାଏ ଗୋଷ୍ଠୀ ନିଜ ଇଚ୍ଛା ଅନୁସାରେ ଦେଶଟାଯାକ ଉପରେ ଶାସନ ଚଳାନ୍ତି, ଲୋକଙ୍କ ମତକୁ ପଚାରନ୍ତି ନାହିଁ କି ଖାତିର କରନ୍ତି ନାହିଁ । ଯେଉଁଠି ଶାସନ ପଦ୍ଧତି 'ଗଣତନ୍ତ୍ର' ସେ ଶାସନର ଲକ୍ଷଣ ଭିନେ । ସେଇଟା ହେଲା, ''ଦେଶ ଲୋକଙ୍କ ଶାସନ, ଦେଶ ଲୋକଙ୍କ ହିତ ପାଇଁ ଉଦ୍ଦିଷ୍ଟ ଶାସନ, ଦେଶ ଲୋକଙ୍କ ଦ୍ୱାରା ଶାସନ ।'' ସେଠି ଖାଲି ଯେ ଲୋକମତ ଅନୁସାରେ ଶାସନ ଗଢ଼ା ହୁଏ ଓ ଶାସନ ଚାଲେ କେବଳ ସେତିକି ନୁହେଁ, କି ଲୋକେ ଭୋଟ ଦେଇସାରି ତାଙ୍କ କାମ ତୁଟିଲା ବୋଲି ଧରି ନେଇ ଶାସନ ବିଷୟରେ ଉଦାସୀନ ରହି ନିଜ କାମଧନ୍ଦାରେ ଲାଗି ରହିଥାନ୍ତି ତା' ଆଦୌ ନୁହେଁ । ଗଣତନ୍ତ୍ର-ଦେଶରେ ପ୍ରତି ମଣିଷ ବୁଝିବା କଥା ଯେ ଦେଶ ଗୋଟାକଯାକର ଭଲ ମନ୍ଦ ପାଇଁ ତା'ର ବି ଭାବିବାକୁ ଅଛି, କାରଣ ଦେଶଟା ତା'ର, ସେଥିପାଇଁ ତା'ର ବି ଦାୟିତ୍ୱ ଅଛି,

କର୍ତ୍ତବ୍ୟ ଅଛି, ସେ ବି ନିଘା ରଖିବ, ପଚାରି ବୁଝୁଥିବ, ମୁହଁ ଖୋଲୁଥିବ, ତା'ଦ୍ୱାରା ଯାହା ହେବ, କାମ କରୁଥିବ । ସେଠି ଖାଲି ଜଣକର ମତରେ କି ଅଳ୍ପ କେତେଜଣଙ୍କ ମତପ୍ରକାରେ ଶାସନ ପାଇଁ ନୀତି ତିଆରି ହୁଏ ନାହିଁ, ବହୁ ଲୋକଙ୍କ ମତକୁ ବି ବିଚାରକୁ ନିଆଯାଏ, 'ହାମ୍‌ବଡ଼ା' ନୀତି ଚଳେ ନାହିଁ । ଗଣତନ୍ତ୍ରର ଦେଶରେ ଶାସନର ଏକମାତ୍ର ଲକ୍ଷ୍ୟ ଥାଏ 'ଦେଶ ଲୋକଙ୍କର ହିତ' । ତେଣୁ ଦେଶରେ ଯେଉଁମାନେ ସବୁଠୁ ତଳେ, ସବୁଠୁ ଅଭାବୀ, ଦୁଃସ୍ଥ ପ୍ରତି ଆଗ ନିଘା ଦେବା କଥା: ଯାହା ଯାହା କଲେ ଦେଶଯାକ ଲୋକଙ୍କର ନିହାତି ନିକୁଛିଆ 'ନ ହେଲେ ନ ଚଳେ' ଆବଶ୍ୟକଗୁଡ଼ିକ ଆଗ ମେଣ୍ଟିବ, ଆଗ ସେସବୁ କରିଦେବା କଥା । ଆମର 'ଗଣତନ୍ତ୍ର' ବୋଲି ଛାଞ୍ଚଟି ଅବଶ୍ୟ ଅଛି, ତେଣୁ ପୃଥିବୀର ସବୁଠୁ ବଡ଼ ଗଣତନ୍ତ୍ର ବୋଲି ଆମ ଦେଶକୁ କୁହାଯାଇଥାଏ । କିନ୍ତୁ ଗଣତନ୍ତ୍ରର ବିଚାର, ଗଣତନ୍ତ୍ରର ଆଦର୍ଶ ଆମ ଦେଶ ଉପରେ ଆମ ଲୋକଙ୍କ ମନରେ କେତେ ଅଂଶରେ ପ୍ରତିଫଳିତ ହେଲାଣି ?

ଲୋକେ ବୁଝନ୍ତି, 'ସରକାର' ଥିଲା: 'ସରକାର' ଅଛି । ଆଗେ 'ସରକାର' ହୋଇଥିଲେ ପୁରାଣ କି ଇତିହାସର ରାଜା ମହାରାଜାଏ, ତା'ପରେ ଇଂରେଜ୍, ତା'ପରେ ମଝିରେ ମଝିରେ ଭୋଟ୍ ଦିଆଯାଏ, ଭୋଟ ଜିତା ବଡ଼ ଦଳ 'ସରକାର' ଗଢ଼େ, ସେମାନେ ଜାଣନ୍ତି, ଏପ୍ରକାର ଶାସନକୁ 'ଗଣତନ୍ତ୍ର' କୁହାଯାଏ । କିନ୍ତୁ ସବୁକାଳେ ରାଜ୍ୟ ଚଳାଇବା କାମ ସରକାରର, ସବୁ ଦାୟିତ୍ୱ ତା'ରି । ଲୋକେ ନିଜ ନିଜ ସ୍ୱାର୍ଥ ପାଇଁ ଧାଉଁଥିବେ, କେତେବେଳେ କିଏ ନିଜ ସ୍ୱାର୍ଥ ପାଇଁ ଧାଉଁଥିବେ । କେତେବେଳେ କିଏ ନିଜ ସ୍ୱାର୍ଥ ପାଇଁ ସବୁ ନୀତି ସବୁ ନିୟମ ଭାଙ୍ଗୁଥିବେ; ଅଶାନ୍ତି ବିଶୃଙ୍ଖଳା କରୋଉଥିବେ । ସେଥିରେ ଆଉ କିଏ କ'ଣ କରିବ ? ଠିଆହୋଇ ଦେଖୁଥିବ ସିନା ! ସମ୍ଭାଳ ସରକାର । କେତେବେଳେ କିଏ ସରକାରକୁ ନିନ୍ଦେ । ପରର ଦୋଷ ବାଛିବାକୁ ପାଟିରେ ବାଟୁଳି ବାଜେ ନାହିଁ । ସରକାରର ବି ଦୋଷ କ'ଣ ? ସମସ୍ତେ ମଣିଷ ତ ? ଧନକୁ କ୍ଷମତାକୁ କାହାର ଲୋଭ ନାହିଁ ? ନିଜ ପୁଅଝିଅଙ୍କୁ, ଆପଣା ଲୋକଙ୍କୁ କିଏ ଆଗ ନ କରେ ? କିଏ ବା ବାବାଜି ହୋଇଛି ଯେ ନ ଖୋଜିବ ସବୁଦିନେ କ୍ଷମତାଟା ହାତରେ ରଖିବାକୁ ? ଆଗେ ସିନା ରଜା ହେଇଥିଲେ ରାଜୁତିଟା ହୋଇଥିଲା ଜନ୍ମଗତ ଅଧିକାର, ଆଉ ରଜାର ବଡ଼ପୁଅକୁ ରଜା ଅନ୍ତେ ରାଜୁତିଟା ସେହି ଅଧିକାର ବଳରେ ଆପେ ମିଳୁଥିଲା । ଏବେ ତ ଭୋଟ-ଜିତା ନ ହେଲେ ସରକାର ହେବାକୁ କ୍ଷମତାଟା ନ ମିଳେ । ତେଣୁ ଆଉ ସବୁ କାମ ପଛକୁ ରଖି ଆଗ ଧ୍ୟାନ ରହିବ ଯେମିତି ଭୋଟ ଜିତା ନିଜ ପଟ ଦଳ ନ କମେ ଓ ଯେମିତି ଆରଥରକୁ ବି ଭୋଟଜିତା ନିଶ୍ଚୟ ହେବ । ଏଥିରେ ଆଶ୍ଚର୍ଯ୍ୟ କ'ଣ ? ଭୋଟ ଜିତିବା କ'ଣ ସହଜ ପଡ଼ିଛି ? ସେଥିପାଇଁ ନାନା ଉପାୟ କରିବାକୁ ପଡ଼ିବ ତ !

ଏମିତି ଭାବନ୍ତି ବହୁତ ଲୋକ । ସେମାନେ ସାଧାରଣ ଲୋକ, ସଂସାରୀ ଲୋକ, ନିଜ କୁଟୁମ୍ବ ପୋଷନ୍ତି, ଯାହା ଦେଖି ଶିଖି ବଢ଼ିଛନ୍ତି, ନିଜେ ଯେମିତି ଚଳି ଆସିଛନ୍ତି, ତହିଁରେ ଗଢ଼ି ହୋଇଛି ତାଙ୍କ ବିଚାର, ସବୁ ଦେଖା ପରଖା ଅଙ୍ଗେ ନିଭେଇଥିବା କଥା । ଆଉ ଅନ୍ୟ ପ୍ରକାର ବି ଅଛି, ସେହି ଅନ୍ୟ ବାଟେ ଚାଲିଲେ ଆହୁରି ଭଲ ହେବ ବୋଲି ବାଟ ଚାଲି କେହି ତାଙ୍କର ବିଶ୍ୱାସ ଉପୁଜାଇ ପାରି ନାହିଁ । କେତେ କେତେ ଶୁଣା କଥା, ପଢ଼ା କଥା ତାଙ୍କର ଏ କାନରେ ପଶି ସେ କାନରେ ବାହାରି ଚାଲିଯାଇଛି ।

ସବୁ ଠିକ୍ ଅଛି । ଆମର ସ୍ୱାଧୀନ ଦେଶ । 'ଗଣତନ୍ତ୍ର' ଦେଶ । ଭାଉ ବଢୁଛି । ନାନା ବିଶୃଙ୍ଖଳା ନାନା ଅଶାନ୍ତି ନାନା ବିପଦ ଘଟୁଛି । ସାଧୁମାନେ ବାବାଜିମାନେ କହନ୍ତି ଯେ ଏ ସମୟ ସେଇଆ, ତା'ର ବେଳ ଆସିଲେ ଏ ସମୟ ବଳେ କଟିଯିବ । ଠାକୁରେ ଅଛନ୍ତି, ସେ ତାଙ୍କ ସୃଷ୍ଟିକୁ ପାଳିବେ ।

ସେମାନେ ସେଇଆ କହନ୍ତି ।

ମନେ ପଡ଼ିଗଲା ପୁଣି ପିଲାଦିନ, ପୁଣି ଗାଁ, ସେହି ଲୋକେ, ଯାତପଡ଼ିଆରେ ଯାତଭାଡ଼ି । ସେଠି ରାବଣ ଠିଆହୋଇ ହେଣ୍ଡାଳୁଛି, ଡରୋଉଛି । ତଳେ ରାମ ଲକ୍ଷଣ ତା' ଆଡ଼କୁ ଧନୁ ଉଞ୍ଚେଇ ଟଙ୍କାରୁଛନ୍ତି । ଲକ୍ଷଣ ଟୋକାଟି ହଳଦିଆ ରଙ୍ଗ ବୋଳି ହୋଇ ହଳଦୀ ଗରଗର ଦିଶୁଛି, ରାମ ଯେ ନେଳି ବୋଳି ହୋଇଛି । ରଙ୍ଗ ଉପରେ ଅବରଖ ଗୁଣ୍ଡ ଲାଗିଛି, ଜିକିଜିକି ଦିଶୁଛି । ଲକ୍ଷଣଟି ଚିଁ ଚିଁ କରି ପାଟି କରୁଛି -

''ଆରେ ରେ ରାବଣ ଅସୁର ପାପିଷ୍ଠ
ଦୁରାଚାର ତୋର ମରଣ ସନ୍ନିକଟ, ଇଷ୍ଟ ଦେବତା ସ୍ମରରେ -''
ଉପରେ ଡେଙ୍ଗା ଓସାର ବିକଟାଳ ରାବଣ କୁଦାମାରି ରଡୁଛି
''ମୁଁ ତୁମକୁ ମାରି ଖାଇବି - ଖାଇବି- ଖାଇବି- ।''

ତଳେ କାନ ଅତରା ପକାଇ ଏକାସାଙ୍ଗରେ ମୃଦଙ୍ଗ, ପଖୋଉଜ, ଝାଞ୍ଜ ସବୁ ବାଜି ଉଠି କମ୍ପୋଉଛି, ''ଜିଜି ଜିଜି ଝାଇଁ - ଜିଜି ଜିଁଜିଁ ଝାଇଁ- ।''

ଆମେ ଜାଣିଛୁ ଅଇଛା ରାବଣ ମରିବ ନାହିଁ କି କେବେହେଲେ ରାମ-ଲକ୍ଷଣଙ୍କୁ ରାବଣ ଖାଇବ ନାହିଁ ।

ପଚାଶ ବର୍ଷ କାହିଁ କେତେ ପଛରେ !

# କ୍ରିକେଟ୍

କଟକ ବାରବାଟୀ ଷ୍ଟାଡ଼ିଅମ୍ ଭିତରେ ହେଉଥାଏ କ୍ରିକେଟ୍ ଖେଳ, ଭାରତୀୟ ଦଳଙ୍କ ସଙ୍ଗେ ପ୍ରତିଦ୍ୱନ୍ଦ୍ୱିତା କରୁଥାନ୍ତି ବିଲାତ୍‌ର-ମେରିଲିବୋନ୍ କ୍ରିକେଟ୍ କ୍ଲବ୍ । ବହୁତ ଦାମ୍ ଦେଇ ଟିକଟ କିଣି କାହିଁ ଦୂରରୁ ଦୂରରୁ ଆସି ହଜାର ହଜାର ଦର୍ଶକ ରୁଣ୍ଡିଥାନ୍ତି । ଏତେ ଭିଡ଼ରେ କାଳେ ଜାଗା ନ ମିଳିବ ବୋଲି କେତେ ଲୋକ ରାତିରୁ ଯାଇ ବସି ପଡ଼ିଥା'ନ୍ତି । ଦିନଯାକ ବସିରହିବାକୁ ପଡ଼ିବ, ଖେଳ ସରିବ ଓପରଓଳି ସାଢ଼େ ଚାରିଟାରେ ।

କମଳାଦେବୀ ଏଇ ସହରର ହିଁ ବାସିନ୍ଦା । କେତେ ଦିନଠୁଁ ଶୁଣୁଛନ୍ତି ଏ ଖେଳ ହେବ ବୋଲି । [ଘରେ ପୁଅମାନେ କହନ୍ତି, ବୋହୂମାନେ କହନ୍ତି, ଝିଅଜୋଇଁ, ନାତିନାତୁଣୀମାନେ ନମସ୍ତେ କହନ୍ତି, ସ୍ୱାମୀ ତାଙ୍କର ଅଲଗା ବଖରାରେ ଚୁପଚାପ୍ ବସିବାକୁ ଭଲ ପାଆନ୍ତି, ଘଣ୍ଟା ଘଣ୍ଟା ଧରି କ୍ୟାସେଟ୍ ବଜାଇ ଶୁଣୁଥାନ୍ତି ପ୍ରଭୁପାଦଙ୍କ- 'ହରେ କୃଷ୍ଣ ହରେ ରାମ' ନାମ କୀର୍ତ୍ତନ, କେତେବେଳେ କ'ଣ ଧର୍ମପୁସ୍ତକ ପଢ଼ନ୍ତି ନ ହେଲେ ପୁଅମାନଙ୍କ ସଙ୍ଗେ କେଉଁ ବ୍ୟବସାୟ ଧନ୍ଦା ବିଷୟରେ କଥା ହୁଅନ୍ତି, ସେ ବି କହିଥିଲେ ଏ କ୍ରିକେଟ୍ ଖେଳ ବିଷୟରେ ।] କିନ୍ତୁ ସେ ଶୁଣି ଶୁଣି କହନ୍ତି, "ହ, ଯେ ଖାଲି ଗୋଟାଏ ହସା, ଗୋଟାଏ ହୋ ।"

ତାଙ୍କର ପାଞ୍ଚପୁଅ ଯାକ ଇସ୍କୁଲ୍‌ରେ ପଢ଼ିଲା ଦିନୁଁ କ୍ରିକେଟ୍ ଖେଳୁଥିଲେ । ତହିଁରୁ ଜୟ ଓ ଗୋବିନ୍ଦ, ସହରର ଭଲ କ୍ରିକେଟ୍ ଖେଳାଳିଙ୍କ ଭିତରେ ଗଣା ହେଲେ । କିନ୍ତୁ କ୍ରିକେଟ୍ ଖେଳ ପ୍ରକୃତରେ କ'ଣ, ତହିଁରେ ଭଲ ଖେଳ କ'ଣ ମନ୍ଦ ଖେଳ କ'ଣ, ସେ ବିଷୟରେ କମଳାଦେବୀ କେବେ କୁତୂହଳୀ ହୋଇ ନ ଥିଲେ, କି କିଛି ଜାଣି ନ ଥିଲେ । ଏତିକି ଜାଣିଥିଲେ ଯେ ସେ ଖେଳରେ ଜଣେ ଗୋଟାଏ ଚିକ୍କଣ କାଠଫାଳିଆ ପରି ଜିନିଷ ଧରି ଆରପଟୁ ଫିଙ୍ଗା ହୋଇଥିବା କାଠଗୁଳିକୁ ଖୁବ୍ ଜୋର୍‌ରେ ପିଟେ; ଏପାଖରୁ ସେପାଖ ଦୌଡ଼ାଦୌଡ଼ି ଲାଗେ । ସେ ଜାଣିଥିଲେ ଯେ ସେ ଖେଳରେ ବିପଦ ବି ଥାଏ, ଥରେ କିଏ ଗୁଳିଟାକୁ ପିଟି ଦେଇଥିଲା ଯେ ଗୋବିନ୍ଦର ଉପର ପାଟିର ଗୋଟାଏ ଦାନ୍ତରୁ ଖଣ୍ଡେ ଭାଙ୍ଗିଗଲା, ଲହୁଲୁହାଣ ହେଲା, ବିଚରା କେଡ଼େ କଷ୍ଟ ପାଇଲା । କମଳାଦେବୀ ଭାବନ୍ତି, ଏ ଯୁଗ ତ ସେମିତି, ସମସ୍ତିଙ୍କର ଏଇ ସବୁ କଥାକୁ ମନ ଓଟାରି ହେଉଛି, କାହାକୁ କ'ଣ କହିବ ? ଏବେ ପୁଅଝିଅଙ୍କ ଆଖିରେ ନାଁଡାକ୍ ଖେଳାଳିମାନେ ହେଲେ

ଦେବତା, ତାଙ୍କରି ଫଟୋ ମରା ହେଉଛି କାନ୍ଥରେ, ଆଉ ସିନେମା ଅଭିନେତା ଅଭିନେତ୍ରୀମାନଙ୍କର । ପିଲାଏ ଆପଣା ବନ୍ଧୁବାନ୍ଧବଙ୍କ ପରିଚୟ ଜାଣି ନ ଥାନ୍ତୁ ପଛେ, କିନ୍ତୁ ସେମାନଙ୍କ ସମ୍ପର୍କରେ ଟିକିନିଖି ଖବର ସେମାନେ ସଂଗ୍ରହ କରି ମନେ ରଖନ୍ତି ।

କମଳାଦେବୀଙ୍କୁ ସତୁରି ବର୍ଷ ହେଲାଣି । ଛାଇ ଆଲୁଅ ଫିକା ଶ୍ୟାମଳ ବର୍ଣ୍ଣ, ଚେକା ପୁଚୁକା ମୁହଁ, ମୁଣ୍ଡବାଳ ଧଳା, ପାତଳ ହୋଇ ଆସିଲାଣି, ନୁହେଁ ଡେଙ୍ଗା ନୁହେଁ ବାଙ୍ଗର ଚେକା ମୋଟା ଦେହ । ପିଲାଦିନେ ଦେହଟି ଥିଲା ଛେଚାପିଟା, ନିଦା, ପଛେ ମୋଟା ହୋଇଗଲା, ତା'ପରେ ଧରିଲା ଡାଇବିଟିସ୍, ତା' ସହିତ ଆଣ୍ଠୁଗଣ୍ଠିବାତ । ଦେହ ସରୁ ହେଲା ନାହିଁ, କିନ୍ତୁ ମାଂସପେଶୀ ଶିଥିଳ ହୋଇ ସ୍ଥାନେ ସ୍ଥାନେ ଓହଳି ପଡ଼ିଲା, ମୁହଁରେ ବି ସ୍ଥାନେ ସ୍ଥାନେ ଲୋଚାକୋଚା ପଡ଼ିଗଲା, ଉଜ୍ଜ୍ୱଳ ଆଖିଯୋଡ଼ିକ ସତେଯେମିତି ସାନ ସାନ ହୋଇଗଲା, ପେଜୁଆ ଦିଶିଲା । ସେଥିପାଇଁ ତାଙ୍କର ଚିନ୍ତା ନ ଥିଲା । କିନ୍ତୁ ଚିନ୍ତା ପଡ଼ିଗଲା ଏଥିପାଇଁ ଯେ ବର୍ଷ ବର୍ଷ ଲାଗି ଚିକିତ୍ସା କରାଇ ସୁଦ୍ଧା ଦେହରୁ ବଳ ବେଶି ବେଶି ହଟି ହଟି ଗଲା, ଦେହ ଆଉ କେବେ ସୁଖ ଲାଗିଲା ନାହିଁ । ଆମ୍ବବାତ ତାଙ୍କ ଦି' ଆଣ୍ଠୁକୁ ପ୍ରାୟ ଅଚଳ କରିଦେଲା, ଦୁଇ ହାତକୁ ଦୁର୍ବଳ କରିଦେଲା, ଦୁଇ ପାପୁଲିର ଆଙ୍ଗୁଠିଗୁଡ଼ିକୁ ଏପରି ମୋଡ଼ି ବଙ୍କେଇ ଦେଲା ଯେ ତହିଁରେ ନିଜ କାମ ବି କରିପାରିବା ସମ୍ଭବ ହେଲା ନାହିଁ । କ୍ରମେ ତା' ବି ଦେହସୁହା ହୋଇଗଲା । ସେବା ଓ ନିଘାର ଅଭାବ ନ ଥିଲା । ପାଖେ ପାଖେ ଥାଆନ୍ତି ଦୁଇ ବୋହୂ । ଅନେକ ସମୟରେ ଆସି ରହିଥାଏ ତାଙ୍କର ବିବାହିତା ବଡ଼ଝିଅ, ଥାଆନ୍ତି ନାତୁଣୀ ତିନୋଟି । ପୁଅ ନାତିମାନେ ବି ତାଙ୍କର ଯତ୍ନ ନିଅନ୍ତି ।

ସେ କାନ୍ଥରେ ଭରା ଦେଇ ପିଣ୍ଡାରେ ଗୋଟିଏ ଗୋଟିଏ ଛୋଟେଇ ଛୋଟେଇ ଚାଲନ୍ତି, କେତେବେଳେ ଚୌକିରେ ଆଉଜି ବସିଥା'ନ୍ତି । ସେ ଠାଏ ବସି ଗପସପ କରନ୍ତି, ଘର କାମ ବରଗନ୍ତି ତଦାରଖ କରନ୍ତି, ନିର୍ଦ୍ଦେଶ ଦିଅନ୍ତି, ମନ ହେଲେ କିଛି ପଢ଼ନ୍ତି କି ରେଡ଼ିଓ ଶୁଣନ୍ତି । କେତେବେଳେ ତୁନି ହୋଇ ବସନ୍ତି, ନ ହେଲେ ବସି ବସି ଶୋଇପଡ଼ନ୍ତି ।

ଗୋଟିଏ ନିମ୍ନ ମଧ୍ୟବିତ୍ତ, ବହୁକୁଟୁମ୍ବୀ ମିତବ୍ୟୟୀ, ପରିଶ୍ରମୀ ପରିବାରରେ ସେ ଜନ୍ମ ହୋଇଥିଲେ । ସେମାନେ ଅଳ୍ପ ସ୍ୱଳ୍ପ ଯାହା ମିଳୁଥିଲା ସେତିକିରେ ସନ୍ତୋଷରେ ଚଳିବାକୁ ଅଭ୍ୟସ୍ତ ହୋଇଥିଲେ, ପରର ଦେଖି ହନ୍ତସନ୍ତ ହେଉ ନ ଥିଲେ । କିନ୍ତୁ ସମୟ ଆସିଲା ଯେତେବେଳେ ପରିବାରର ସବୁ ଭାଇଭଉଣୀ ଓ ସେମାନଙ୍କ ସନ୍ତାନମାନେ ପ୍ରତ୍ୟେକେ ନାନା କ୍ଷେତ୍ରରେ ଉନ୍ନତି କଲେ । ହେଲେ [ଜୀବନଯାକ ସେ ସେହି ଅଭିବୃଦ୍ଧି ହିଁ ଦେଖି ଆସିଥିଲେ । କିପରି ସେ ସମସ୍ତିଙ୍କ କ୍ଷେତ୍ରରେ ଏପରି ସମ୍ଭବ ହେଲା ସେ ଜାଣନ୍ତି ନାହିଁ, ସେ ଜାଣନ୍ତି କାହାରିକି କାହାରିକି ଦୁର୍ଭାଗ୍ୟ ଯେମିତି ଗୋଡ଼ାଇଥାଏ,

ଆଉ କାହାରିକି କାହାରିକି ସୌଭାଗ୍ୟ ବି ଗୋଡ଼ାଏ, ସବୁ ସେହି ଭଗବାନ୍‌ଙ୍କ ଇଚ୍ଛା । ତାଙ୍କର ପରିବାରରେ କେତେ କେତେବେଳେ ସମସ୍ୟା ନ ଘଟିଛି ବିପଦ ନ ଆସିଛି ଏପରି ନୁହେଁ, କିନ୍ତୁ ତାଙ୍କ ବିଶ୍ୱାସ କେବେ ଟଳି ନାହିଁ ଯେ "ଆମେ କାହାର ମନ୍ଦ ନ ପାଞ୍ଚିଲେ ଈଶ୍ୱର ନିଶ୍ଚୟ ସହାୟ ହେବେ, ଶେଷରେ ସବୁ ଭଲ ହୋଇଯିବ ।"]

ପଚାଶ ବର୍ଷ ତଳେ ତାଙ୍କର ବିବାହ ହୋଇଥିଲା । ଶ୍ୱଶୁରଙ୍କର ସାମାନ୍ୟ ଜମି, ଦୁଃଖେ ସୁଖେ ବର୍ଷକ ଚଳେ । ତାଙ୍କ ସ୍ୱାମୀ ଭଜନିବାବୁଙ୍କ ବିଦ୍ୟା ଅଳ୍ପ, ସେ କଲିକତାରେ କାହା ଦୋକାନରେ ଜିନିଷ ବିକନ୍ତି, ଯାହା ରୋଜଗାର କରନ୍ତି ତହିଁରେ ନିଜେ ଚଳନ୍ତି, ଘରୁ ଟଙ୍କା ଯାଏ ନାହିଁ । ତାଙ୍କ ସ୍ତ୍ରୀ କେତେ ମାସ ତାଙ୍କ ଗାଁରେ ରହିଲା ପରେ ସେ ତାଙ୍କୁ ପାଖକୁ ନେଇଗଲେ । କଲିକତାଠୁଁ ଅଳ୍ପ ଦୂରରେ ଗୋଟିଏ ଛୋଟ ଷ୍ଟେସନ ପାଖେ ଗାଁଟିଏ, ସେଇଠି ସେମାନଙ୍କ ବସା । କେତେ ବର୍ଷ ପରେ ଫେରିଆସିଲେ ସାନ ବସାଟିଏ ଭଡ଼ା ନେଇ କଟକରେ ରହୁଥା'ନ୍ତି, ଭଜନିବାବୁ ଲାଗିଥା'ନ୍ତି କ'ଣ ବ୍ୟବସାୟରେ ।

ପାଞ୍ଚଟି ବର୍ଷ ମୋଟେ, ତା'ପରେ ଦେଖାଗଲା ଯେ ସେ କଟକ ସହରର ଜଣେ ନାଁଡାକ୍ ଶିଳ୍ପପତି ଓ ବ୍ୟବସାୟୀ । ବଢ଼ି ଚାଲିଲା ବଢ଼ି ଚାଲିଲା ତାଙ୍କର ଐଶ୍ୱର୍ଯ୍ୟ, ନିଜର ବଡ଼ ଘର, ବାହାର ଅଗଣାରେ ବହୁତ ଗାଡ଼ି, ଘରେ ଲୋକଗହଳି, ସମସ୍ତେ ଚାହାନ୍ତି ସେମାନଙ୍କ ସଙ୍ଗେ ସମ୍ପର୍କ ରଖିବାକୁ । କେତେ ଭୋଜିଭାତ, କେତେ ଦାନ - ସାହାଯ୍ୟ, କେତେ ତୁଣ୍ଡରେ ପ୍ରଶଂସା । ସେତେବେଳେବି କମଳାଦେବୀଙ୍କ ସ୍ୱଭାବ ଓ ବ୍ୟବହାରରେ ଟିକିଏ ବୋଲି ବିକୃତି ଦେଖାଗଲା ନାହିଁ । ତାଙ୍କର ଗର୍ବ ଅଭିମାନ ନ ଥିଲା, ସବୁଦିନ ପରି ସମସ୍ତିଙ୍କ ପ୍ରତି ସେ ସ୍ନେହୀ, ମେଳାପୀ । କେତେ ବର୍ଷ ପରେ ଦେଖାଗଲା ହଠାତ୍ ଭଜନିବାବୁଙ୍କର ସବୁ ଶିଳ୍ପ ବେପାର ବନ୍ଦ ହୋଇଗଲା, ବାହାରର ଦେଖନ୍ତା ଆଡ଼ମ୍ବର ଉଭେଇଗଲା, ଗାଡ଼ିଗୁଡ଼ିକ ବିକ୍ରି ହୋଇଗଲା; ବର୍ଦ୍ଦିପିନ୍ଧା ଦରୁଆନ୍ ବିଦା ହେଲା, ବାହାରେ ସବୁ ଗହଳି ଶୂନ୍‌ଶାନ୍ ପଡ଼ିଗଲା, ସବୁ ଚଢ଼େଇ ଉଡ଼ିଯାଇଥିଲେ ।

କିନ୍ତୁ ତାଙ୍କ ପିଲାଏ ପାରି ଯାଇଥିଲେ, ନିଜ ନିଜ ବାଟେ କ'ଣ କ'ଣ ବ୍ୟବସାୟ କରି କିଛି କିଛି ରୋଜଗାର କରୁଥିଲେ । ଖର୍ଚ୍ଚ କମିଗଲା କିନ୍ତୁ ଘର ଚଳେଇବା ଅଟକିଲା ନାହିଁ । ଭଜନିବାବୁ ତାଙ୍କ ବଖରାଟିରେ ବସି ଧର୍ମପୁସ୍ତକ ପଢ଼ିଲେ, କ୍ୟାସେଟ୍ ବଜାଇ ସଂକୀର୍ତ୍ତନ ଶୁଣିଲେ, ପଦାକୁ ବାହାରିଲେ ନାହିଁ ।

କମଳାଦେବୀଙ୍କ ମୁହଁରେ ତଥାପି ଅତୁଟ ରହିଲା ଆଗଦିନର ଖୁସି ଖୁସି ଠାଣି, ସନ୍ତୋଷ ଓ ଆତ୍ମବିଶ୍ୱାସର ।

ପିଲାଏ ସବୁ ଖେଳ ଦେଖି ଯାଇଛନ୍ତି । ରାତିରୁ ଉଠି ପୂଜାରୀ ସେମାନଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତ କରି ସଜେଇ ବଢ଼େଇ ଦେଇଛି । ସେମାନେ ସେଇଠି ବସି ଖାଇବେ ।

ନିତ୍ୟକର୍ମ ଛିଣ୍ଡେଇ କମଳାଦେବୀ ଆସି ପିଣ୍ଡାରେ ଚୌକିରେ ବସିଲେ । ସେତେବେଳକୁ ସକାଳ ନଅଟା । ସାନବୋହୂ ଆସି ପାଖ ଟେବୁଲ ଉପରେ ଟ୍ରାନ୍‌ଜିଷ୍ଟରଟି ଥୋଇ ରେଡ଼ିଓର କଟକ ଷ୍ଟେସନକୁ ଲଗାଇଦେଲା । ପ୍ରଚାରିତ ହେଉଛି ଖେଳ ବିବରଣୀ । ଲୋକଙ୍କ ପାଟିତୁଣ୍ଡ ଘୋଘା ମଝିରେ ମଝିରେ ଶୁଭିଯାଉଛି । ଇଂରେଜ ପକ୍ଷ ବ୍ୟାଟିଂ କରୁଛନ୍ତି । ଟିକିଏ ଶୁଣି କମଳାଦେବୀ ପାଟି କରି ଡାକି କହିଲେ, ''ଯେ ! ଖାଲି ସେଇଆ ସେଇଆ ସେଇଆ । ଅମୁକ ଫୋପାଡ଼ିଲା ଧମୁକ ପିଟିଦେଲା ଏମିତି ଧାଇଁଲେ ଏତେ ରନ୍ ହେଲା, ଭାରି ବାହାଦୁରି !

ସେଇଥିପାଇଁ ଏତେ ଲୋକ ଏତେ ପାଟି । ଥାଉ ବନ୍ଦ କର ! ଯେ ଯାଇଛନ୍ତି ସେ ଦେଖନ୍ତୁ, ପାଇବେ ଯେ ! ଖରାରେ ଶିଝିବେ ।''

ବୋହୂଟି ତାଙ୍କ ଆଡ଼କୁ ଚାହିଁଲା, ତାଙ୍କୁ ଲାଗିଲା, ବୋହୂଟିର ମୁହଁ ଶୁଖିଗଲା । କହିଲେ, ''ଗୋଟିଏ କଥା କର, ରେଡ଼ିଓ ତମ ଶୋଇବାଘରକୁ ନେଇଯା, ସେଇଠି ତେମେମାନେ ଶୁଣ, ମତେ ପଛେ କହିବ । ଚଷମାଟା ପିନ୍ଧେଇ ଦେ, ମୋ ଆଗରେ ଆଜିକା ଖବରକାଗଜଟା ପାରିଦେ ।''

କିଛି ସମୟ ପରେ ଅଗଣା ଆରପଟୁ ଭଜନିବାବୁଙ୍କ ବଖରାରୁ ମୋଟା ପର୍ଦ୍ଦା ଉହାଡ଼ରୁ ତାଙ୍କ ରେଡ଼ିଓରୁ ଶୁଭିଲା, ସେହି ଖେଳ ଖବର ଚାଲିଛି, ଶବ୍ଦ ସ୍ପଷ୍ଟ ଶୁଭୁ ନ ଥାଏ ।

''ବୁଢ଼ାଙ୍କ ସଉକ୍ ଟୋକାଙ୍କ ସଉକ୍‌ଠୁଁ ବଳିଲା, କି କାଳ !'' କମଳାଦେବୀ ହସି ହସି କହିଲେ, ''ଆଜି ଆଉ ହରି ସଂକୀର୍ତ୍ତନ ଶୁଣା ନାହିଁ, ଖାଲି କ୍ରିକେଟ୍ ଖେଳକୁ ମନ ହେଉଛି । ଧାଇଁଗଲ ନାହିଁ ?''

କମଳାଦେବୀଙ୍କର ସକାଳଟି ଯେମିତି କଟିବା କଥା ସେମିତି କଟିଲା, କିଛି ପରିବର୍ତ୍ତନ ନ ଥିଲା । କିଛି କାମ ନ ଥାଇ ଠାଏ ରହି ସମୟ କଟାଇବା ବହୁ କାଳୁ ତାଙ୍କର ଅଭ୍ୟାସ ହୋଇଯାଇଥିଲା, ତେଣୁ ଦିନଟି କେମିତି କଟିବ, କାହା ପରେ ସେ କ'ଣ କରିବେ ତାହା ବନ୍ଧା ଗତରେ ପଡ଼ିଯାଇଥିଲା ।

ଦି'ପହରେ ତାଙ୍କ ପାଟିକି ବଡ଼ବୋହୂ ଚାମୁଚିରେ ନେଇ ଖାଦ୍ୟ ବଢ଼ାଇ ଦେଉଥାଏ । ସବୁଦିନେ ଏତିକିବେଳେ ବୋହୂମାନେ 'ଆଉ ଟିକିଏ', 'ଆଉ ଟିକିଏ' କହି ତାଙ୍କୁ ବଳେଇ ବଳେଇ ଖୁଆନ୍ତି ଓ ପିଲାଙ୍କୁ ଖୁଆଇଲାବେଳେ ବାଁରେଇଲା ପରି ତାଙ୍କ ଆଗରେ ନାନା ଗପ ପକାନ୍ତି । ବଡ଼ବୋହୂ କହିଲା, ଜାଣିଲେ ନା ବୋଉ ଆଜିକା ଖେଳ କଥା ? ବିଲାତ ଦଳ ଦୁଇଶ ତିରିଶି କରିଦେଲେ ।''

''ଦୁ-ଇ-ଶ ତିରିଶି !'' କମଳାଦେବୀ କହିଲେ । ସେ ଭାବିଲେ, ଏଇଟା ବୋଧହୁଏ ଗୋଟାଏ ବଡ଼ କୃତିତ୍ୱ - ଦଶ କୋଡ଼ିଏ ନୁହେଁ, ପଚାଶ ଷାଠିଏ ନୁହେଁ, ଏକାଥରେ

ଦୁଇଶ ତିରିଶି ! ଯାର ତାତ୍ପର୍ଯ୍ୟ କ'ଣ ? କିନ୍ତୁ ଏ ଅଳ୍ପବୟସ୍କା ବୋହୂ ଦିହିଁଙ୍କ ପାଖେ ନିଜ ଅଜ୍ଞତା ଜାରି କରିବାକୁ ମନ ହେଲା ନାହିଁ । ଚତୁର ହୋଇ ଆଖି ମିଟିମିଟି କରି ଜେରା କଲାପରି ପଚାରିଲେ,

''ସେଉଠୁ ?''

''ସେଉଠୁ ଆମ ତରଫ ବ୍ୟାଟିଂ କରୁଛନ୍ତି, ଶହେ ଖଣ୍ଡେ କଲେଣି ।''

କମଳାଦେବୀ ଖୁସି ହୋଇ ହସିଲେ, କହିଲେ, ''ଭଲ, ଭଲ ।''

ସାନବୋହୂ କହିଲା, ''ଭଲ କ'ଣ କହୁଛନ୍ତିମ, ବୋଉ ! ଆମେ ତାଙ୍କଠୁଁ କେତେ ପଛରେ ପଡ଼ିଛୁଁ, ଆମର ଅଧେ ଖେଳୁଆଡ଼ ବସି ପଡ଼ିଲେଣି, ବଛାବଛା ମାର୍କାମରା ଖେଳୁଆଡ଼୍ ସବୁ ଗଲେଣି । ବିଶ୍ୱନାଥ ତ ଆଜିକା ଖେଳରେ ନାହାନ୍ତି । ଟାଭାସ୍କର, ଭେଙ୍ଗସରକାର୍ ବି ଗଲେ, ଆଉ ବିଖ୍ୟାତ କପିଳଦେବ ଯେ ଏକା ଶହେ ଦେଢ଼ଶହ ପିଟିଦିଅନ୍ତି, ଆଜି ଦେଖ ଠିଆ ହେଉ ହେଉ ଆଉଟ୍, ଗୋଟିଏ ବି ରନ୍ କରିପାରିଲେ ନାହିଁ । ଖେଳିବାକୁ ବେଳବି ବେଶି ନାହିଁ ଆଉ ତ ଦି'ଘଣ୍ଟା କି କେତେ ଥିବ, ଆମେ ସେ ସାହାବ ଦଳଙ୍କୁ ଟପିବୁ କେମିତି ? କେଜାଣି କ'ଣ ହେବ ।''

କମଳାଦେବୀଙ୍କ ମୁଣ୍ଡରେ ଚିନ୍ତା ପଶିଗଲା । ସେ ଆଉ ଖାଇଲେ ନାହିଁ । ତାଙ୍କ ମୁହଁ ଧୂଆ ହେଲା ପୋଛା ହେଲା । ସେ ପଚାରିଲେ,

''ଆମେ ଜିତିବାଟି ?''

ଦି' ବୋହୂ କିଛି ନ କହି ଟିକିଏ ଟିକିଏ ହସିଦେଲେ ।

କମଳାଦେବୀ ଉତ୍ତେଜିତା ହୋଇ କହିଲେ, ''ଆମେ ହାରିବୁଁ ନାହିଁ, ନିଶ୍ଚୟ ଜିତିବୁଁ । ଆମ୍ଭୁକୁ ଜିତିବାକୁ ପଡ଼ିବ । ହେ ମା' ବୁଢ଼ୀମଙ୍ଗଳା !'' ସେ ମୁଣ୍ଡକୁ ଟେବୁଲ୍‌ରେ ମାଡ଼ି ମନେ ମନେ ପ୍ରାର୍ଥନା କଲେ, ''ମା'ଲୋ ମୋର ସବୁ ଗୁହାରି ତୁ ଶୁଣୁ, ଏଇଟା ବି ତତେ ଲାଗିଲା । ଆମ୍ଭୁକୁ ଜିତେଇ ଦେ । ଜିତିଲେ ତତେ କାଳାଶାଢ଼ି, କଳାକାଚ ଦେବି । ମୋ ଗୁହାରି ଶୁଣ୍, ଆମ୍ଭୁକୁ ଜିତେଇ ଦେ ।'' ସେ ମୁହଁ ଟେକିଲେ, ତାଙ୍କ ଆଖି ଛଳଛଳ ଦିଶୁଥିଲା । କହିଲେ ଆମେ ଜିତିବୁଁ ନାଇଁ ? ନିଶ୍ଚେ ଜିତିବୁଁ । ଗଲ ରେଡ଼ିଓଟା ଆଣିଲ ଶୁଣିମା ।''

''ଚାଲନ୍ତୁ, ଖଟରେ ଟିକିଏ ଶୋଇଥିବେ ଶୁଣୁଥିବେ ।''

''ନାଇଁ, ଏଇଠି ବସି ଶୁଣିବି ।''

ରେଡ଼ିଓ ଖେଳ ସମ୍ବାଦ କହିଯାଉଛି । କ୍ରିକେଟ୍ ଖେଳ ସେ ବୁଝନ୍ତି ନାହିଁ, କି ବୁଝିପାରୁ ନାହାନ୍ତି । ଏ ଖେଳରେ ତାଙ୍କର କେହି ଖେଳୁ ନାହିଁ; କି କେହି ଚିହ୍ନାଜଣାର ବି ନାହିଁ । କିନ୍ତୁ ସେହି ତରତର ବିବରଣୀ କୁହା, କେତେବେଳେ ଉତ୍ତେଜିତ, କେତେବେଳେ ତା'

ସହିତ ଘୋଘା ପାଟିତୁଣ୍ଡ, ସବୁ ତାଙ୍କ ଚେତନା ଭିତରେ ଏକାଠି ମିଶିଯାଇ ସୃଷ୍ଟି କରିଛି ଗୋଟାଏ ଅତି ତାତ୍ପର୍ଯ୍ୟ ପରିଣତି ଲାଗି ଅପେକ୍ଷା କରିଥିବା ବଳ କଷାକଷିର ଭାବମୂର୍ତ୍ତି, ଗୋଟାଏ ପଟେ 'ଆମେ', ଆରପଟେ 'ସେମାନେ', 'ପରଲୋକେ', - କେତେବେଳେ 'ଆମେ' ମିଶିଯାଏ ତାଙ୍କ ନିଜ ଲୋକଙ୍କ ପରି, ସ୍ୱାମୀ, ସନ୍ତାନ, ବନ୍ଧୁବାନ୍ଧବ, ଚିହ୍ନା ଲୋକ, କେତେବେଳେ ସେହି ପରିସର ଲମ୍ବି ଲମ୍ବି ହୋଇଯାଏ ଭାରତବର୍ଷ, ଯାହାର ଚାରିଆଡ଼ କେବେ ନ ଦେଖିଲେ ବି ସେ ପିଲାଦିନୁଁ ମନେ ମନେ ରୂପ ଦେଇଛନ୍ତି, ନିଜ ଗାଆଁଟି ପରି, କେତେବେଳେ ଅବା ନିଜ ମା'ପରି ଓ 'ସେମାନେ' କହିଲେ କେତେବେଳେ ଦିଶିଯାଆନ୍ତି ଆକ୍ରମଣକାରୀ ଅଚିହ୍ନା ଲୋକଗୁଡ଼ାଏ, କେତେବେଳେ ଗୁଡ଼ିଏ ପୋଷାକପିନ୍ଧା ଟୋପି ପିନ୍ଧା ସାହେବ, ଆଗେ ଯେଉଁପରି ଲୋକ ଏ ଦେଶରେ ରାଜୁତି କରୁଥିଲେ ।

ଖେଳର କିଛି ନ ବୁଝି ସେ ଖାଲି ମନେରଖିଥାନ୍ତି ଯେ 'ସେମାନେ' ଦୁଇଶ ତିରିଶି କରିଥିଲେ ଓ ସେ କାନେଇ ରହିଥାନ୍ତି 'ଆମର' କେତେ ହେଲା, କେତେବେଳେ ଆହୁରି ହେବ । ମଝିରେ ମଝିରେ ମନେ ମନେ କାତର ହୋଇ ଡାକୁଥାନ୍ତି, ''ମା', ମା', ଆମକୁ ଆହୁରି ଦେ' ମା', ଆମୁକୁ ଜିତେଇ ଦେ ମା' !'' ବାରମ୍ବାର ଆଶଙ୍କାରେ ତାଙ୍କ ଛାତି ଦମଦମ ପଡୁଥାଏ । କେତେବେଳେ କହୁଥାନ୍ତି, ''ସାଇଲା ! ସାଇଲା !'' କେତେବେଳେ କହୁଥା'ନ୍ତି, ''ଗଲା ! ଗଲା !'' ବେଳେ ବେଳେ ତାଙ୍କୁ ଲାଗୁଥାଏ, ଯେପରି ସେ ନିଜେ ପଡ଼ିଆଯାକ ଦୌଡ଼ାଦୌଡ଼ି କରି 'ଆମ ଦଳ'କୁ ମତୋଉଛନ୍ତି, ''ଆରେ ଛାଡ଼ନା, ଡରନା, ଲାଗିଥା, ଲାଗିଥା ।''

ଯେତେବେଳେ ରେଡ଼ିଓ କହିଲା ଛାଇ ଲମ୍ବି ଲମ୍ବି ଆସୁଛି, ଖେଳର ବେଳ ଆଉ ଅଧଘଣ୍ଟାଏ ବାକି, ତାଙ୍କ ଦି'ପଟେ ଦି' ବୋହୂ ପରସ୍ପରଙ୍କ ମୁହଁକୁ ଚାହିଁ ଫଁ ଫଁ ଦୀର୍ଘଶ୍ୱାସ ଛାଡ଼ିଲେ । କମଳାଦେବୀ ସେ ଦୁହିଁଙ୍କ ମୁହଁକୁ ଚାହିଁଲେ, ତାଙ୍କ ଛାତି ଦମ୍ ଦମ୍ ପଡ଼ିଲା । ସେ ତଳକୁ ମୁହଁ ପୋତି ବସିରହିଲେ, ରେଡ଼ିଓକୁ କାନ ନ ଦେଇ ଦୁଇ ପାପୁଲିରେ ମୁଣ୍ଡ ଭରା ଦେଇ ମନେ ମନେ ଜପି ଲାଗିଲେ,

''ମା-ମା-ମା-ମା-''

ଉତ୍ସାହ ବଢ଼ିଲା, ଚିତ୍କାର ତେଜିଲା, ତା'ପରେ ଦି' ବୋହୂ ଏକା ସଙ୍ଗରେ ଚୌକିରୁ ଉଠି ପଡ଼ି ହସି ହସି ତେଇଁ ତେଇଁ ପାଟି କଲେ, ''ଆମେ ଜିତିଗଲୁ । ଆମେ ଜିତିଗଲୁ । ଆମର ଦୁଇଶ ଏକ୍‌ତିରିଶ୍ ।'' ଭଜନିବାବୁ ଅଗଣା ସେପଟେ ତାଙ୍କ ଶୋଇବାଘର ଦୁଆରମୁହଁରୁ ପାଟି କଲେ, ''ଶୁଣିଲଣି ! ଆମେ ଜିତିଲୁ ।''

କମଳାଦେବୀଙ୍କ ମୁହଁ ହସରେ ଫାଟି କୁଞ୍ଚୁ କୁଞ୍ଚୁ ହୋଇଗଲା । କହିଲେ ଜିତନ୍ତୁ ନାହିଁ ? ମୁଁ ପରା ବୁଢ଼ୀମଙ୍ଗଳାଙ୍କୁ ମାନସିକ କରିଥିଲି !''

# ସୋପାଂଗାଡ଼ା

## ।। ଏକ ।।

କନ୍ଧମାଳର ଅନ୍ଧାରି ଅଭ୍ୟନ୍ତର, ଅଗଣିତ ଢେଉ ପରି ମାଳ ମାଳ ପର୍ବତ, ପାହାଡ଼ ପାଚିରି ବେଢ଼ା ଭିତରେ ସାନ ସାନ ଉପତ୍ୟକା, ସବୁ ଢାଙ୍କି ରଖିଛି ଶାଳ ଓ ବାଉଁଶର ନିବିଡ଼ ଅରଣ୍ୟ । ଦିନବେଳେ ପର୍ବତର ଛାଇ ସୂର୍ଯ୍ୟୋପରାଗ ବେଳର ଅନ୍ଧାର ପରି ଏକରେ ସେକରେ ମାଡ଼ିବସେ । ଜହ୍ନ ରାତିରେ ଦିଶେ ପ୍ରକାଣ୍ଡ ପ୍ରକାଣ୍ଡ ରୂପ ସବୁ ଲମ୍ବ ଲମ୍ବ ଶୋଇ ପଡ଼ିଛନ୍ତି; ସ୍ୱପ୍ନରେ ଦେଖିବା ରାଜ୍ୟ । ଏବେବି ସେ ଦୁର୍ଭେଦ୍ୟ ବଣ, ସଡ଼କ ନାହିଁ, ଆଧୁନିକ ସଭ୍ୟତାର ପହଞ୍ଚ ନାହିଁ । କାଳକ୍ରମେ କନ୍ଧମାଳ ଖୋଲି ହୋଇଛି, କେତେଠି ସଡ଼କ, ବଡ଼ ବଡ଼ ଗାଁ, ସ୍ଥାୟୀ ଚାଷଜମି, ଇସ୍କୁଲ ଆଦି ନାନା ଅନୁଷ୍ଠାନ । କନ୍ଧବି ଆଧୁନିକ ଶିକ୍ଷାରେ ଶିକ୍ଷିତ, ତା'ର ରୀତିନୀତି ଚଳଣି ବଦଳିଛି, କିନ୍ତୁ ସେହି ଯେଉଁ ମାଳ ଭିତରର ମଞ୍ଜ, ସେଠିକି ଆଖିଦୁରୁଶିଆ ହୋଇ କିଛି ଭେଦି ନାହିଁ, ମଣିଷ ଆଉ ଜଙ୍ଗଲ ଏକାକାର । ଦି' ହଜାର ଫୁଟ୍ ତିନି ହଜାର ଫୁଟ୍ ଉଚ୍ଚ ପାହାଡ଼ ତାଳୁରେ ଆଠଦଶ ଘର ଥାଇ ଗୋଟିଏ ଗୋଟିଏ 'କୋଟିଆ' କନ୍ଧ ଗାଁ, ନ ହେଲେ ପର୍ବତ ଘେରେଇ ବୁଲିଥିବା ସାନ ଉପତ୍ୟକା ଭିତରେ ଜଙ୍ଗଲ ଦାଢ଼ରେ ଦୁଇକୋଶ ଦୂର ଦୂର ଛାଡ଼ି । ଏବେ ବି ସେମାନେ ଜଙ୍ଗଲରୁ ଖାଦ୍ୟ ଆହରଣ କରନ୍ତି, ଦଣ ହାଣି କିଛି ଚାଷ କରନ୍ତି, ସାତ ଆଠ ବର୍ଷ ଗଲେ ମାଟିରୁ ସାର ସରିଗଲେ ଗାଁ ଉଠାଇନେଇ ଆଉ କୁଆଡ଼େ ଯାଇ ଗାଁ ବସାନ୍ତି । କିଏ ବାରମ୍ବାର ବୁଲୁଥାଏ ପିଲାଛୁଆ ଧରି ଏ ଗାଁରୁ ସେ ଗାଁ, ଯେଉଁଠି ଯେତେ ବର୍ଷ । ଫୁଙ୍ଗା ଦେହରେ କୌପୁନୀ ପିନ୍ଧା ପୁରୁଷ, ବେକରେ ଟାଙ୍ଗିଆ, ସ୍ତ୍ରୀ ବେଢ଼େଇ ହୁଏ ଅଣ୍ଟାରେ ସାନ ଖଣ୍ଡେ, ଉପରକୁ ଖୋଲା । ପୁରୁଷର ହାତରେ ଖଡ୍ଗ, ବେକରେ ସରି ସରି ରଙ୍ଗ ରଙ୍ଗର ମାଳି ଚମଡ଼ାରେ ଘଷି ହୋଇ ବନ୍ଧା ହୋଇଥାଏ, ସ୍ତ୍ରୀ ପିଲାର ମୁଣ୍ଡଠୁ ଗୋଡ଼ଯାକେ ପିତ୍ତଳ ଓ ଗିଲଟିର ନାନା ଅଳଙ୍କାର, ଛାତିରେ ବୋଝ ବୋଝ ରଙ୍ଗ ରଙ୍ଗର କାଚମାଳି କାଠମାଳି । ଘର ଖାଲି ଅନ୍ଧାରି ଗୁମ୍ଫା ପରି ସାନ କୁଡ଼ିଆ, ତଳ ଖୋଲା ହୋଇ ଦି'ହାତ ଖାଲ, ବାଟ ଗୋଟିଏ ସାନ ଜଳା, ବସି ପଡ଼ି ପଶିବାକୁ ହୁଏ, ତା' ଉପରେ ଠିଆ ହୋଇ ହେବ । ସମ୍ପତ୍ତିର ବେଶି ଭାଗ

ପଦାରେ, ଭାଡ଼ି ଛାମୁଡ଼ିଆ ଗଛ ଉପରେ, ତାଷ ପର୍ବତରେ, କୁଡ଼ିଆ ଭିତରେ ସାଇତା ହୋଇଥିବା ଫସଲ । ଜୀବନ ବି ବିତେ ପଦାଏ ପଦାଏ । ବର୍ଷଯାକର ଫସଲରୁ ଭାଗେ ଯାଏ ବଣଜନ୍ତୁ ମୁହଁରେ, ଚଢ଼େଇ ଅଣ୍ଟରେ, ବଡ଼ ଭାଗେ ଯାଏ ବେପାରିର ଶୋଷଣରେ । ଟଙ୍କାଏ ରଣ ନେଲେ ଅଠର ମାସରେ ବଢ଼ି ବଢ଼ି ହେବ କୋଡ଼ିଏ ଟଙ୍କା । ଛତିଶି ଟଙ୍କାର ଫସଲରେ ଶୁଝେଇବା ଦେୟ, ବାକି ଯାହା ବଳିଲା ବର୍ଷକ ପାଞ୍ଚ ଛ'ମାସ ଟାଣିଟୁଣି, ତା'ପରେ ଆମ୍ବଟାକୁଆ, ତେନ୍ତୁଳି ମଞ୍ଜି, ମହୁଲ ଶିଝା, ବଣର ପତ୍ର କନ୍ଦା ଆଦି, କିଛି ଶିକାର, ମୂଷାଠୁଁ ହରିଣଯାକେ । ତଥାପି ଜୀବନ ନିଶ୍ଚିନ୍ତ, ସଞ୍ଚୟର ଦକ ଦକ ନାହିଁ, ବାଣ୍ଟିକୁଣ୍ଟି ଗାଁ ମେଣ୍ଟରେ ଖାଇ ଚଳିବା, ସବୁବେଳେ ପଦାରେ କାମ । ଦାନ୍ତ ଘଷିବା, ଛଞ୍ଚୁ ହେବା, ମୁଣ୍ଡ କୁଣ୍ଡେଇବା, ସଫାସୁତୁରା ହେବା ପାଇଁ ବି ଚିନ୍ତା ଖେଳେ ନାହିଁ, ଲାଜ କରିବାକୁ କିଛି ନାହିଁ । ଖାଲି ଅଜଣା ଭୟ, ଗଛରେ ବିଲରେ ପର୍ବତରେ ସବୁଠି ନାନା ଦେବତା, ସେମାନେ ରୋଗ, ଦୁର୍ଦ୍ଦଶା ସୃଷ୍ଟି କରନ୍ତି, ବାରମ୍ବାର ବଳି ଦେବାକୁ ପଡ଼େ । ଜନ୍ତୁ ବୁଲେ, ପଲ ପଲ ହାତୀ, ଏକା ମନ୍ଦାକେ ଚାଳିଶି କୋଡ଼ିଏ ବଣମଇଁଷି, ତା'ର ପ୍ରକାଣ୍ଡ ଆକାର, ସେ ଭୟଙ୍କର, ବଣ ଗୟଳ । ଦନ୍ତାବଳ ଗାଁ ଦାଣ୍ଡରେ ଠିଆ ହୁଏ । ମହାବଳ ବାଘ, ସେ ବି ଗାଁ ପାଖରେ ଟହଲେ, ଗର୍ଜନ କରେ, କେବେ ଗାଧୁଆ ତୁଠରୁ ବି ଉଠେଇ ନେଇଯାଏ । ପାହାଡ଼ୀ ନଈରେ 'ଗ୍ରାହି' ସାପ, ମଇଁଷି ମୁଣ୍ଡ ପରି ମୁଣ୍ଡ, କୁକୁଡ଼ା ଚୂଳ ପରି ଚୂଳ, ଦି'ଟା ଶିଂଗ, ବଡ଼ ବଡ଼ ଦାନ୍ତ, କାଠଗଣ୍ଡି ପରି ଦେହ, ଲମ୍ବା ଲାଞ୍ଜ, ଏକାଠି ଆଠ ଦଶହାତ ଲମ୍ବ । 'ଷାଠି' ସାପ, କୋଇଲି ସୂତା ପରି, ଷାଠିଏ ହାତ ଲମ୍ବ, ପାଣିରେ ଥାଏ, ଦେହରେ ଗୁରେଇ ହୋଇଯାଇ ଘୋଷାରି ପାଣିରେ ବୁଡ଼ାଇ ମାରେ ।

ଖାଲି ଜନ୍ତୁ ଭୟ ନୁହେଁ, ଗୁଣିଗାରିଡ଼ିର ଭୟ ବହୁତ । କିଏ କ'ଣ ସାଧିଛି, ଲୋକଙ୍କ ବିଶ୍ୱାସ କିଏ କେଉଁ ପ୍ରକାର ଦୁର୍ଘଟଣା ଘଟାଇପାରେ । କିଏ ହୋଇପାରେ ପାଳଟା ବାଘ, କିଏ ହାତୀ, କିଏ ସାପ, ସେମାନେ ପରକୁ ଧ୍ୱଂସ କରି ନିଜେ ସେହି ମଣିଷ ହୋଇ ଚଳୁଥାନ୍ତି । ତାଙ୍କୁ ବି ଚିହ୍ନି ରଖିବା ଦରକାର, ଦିଆ ଘେନା କରି ତାଙ୍କୁ ଖୁସି ରଖିବା ଦରକାର ।

ଆଉ, ଯେତେ ଅଣ-ଆଦିବାସୀ ଚଲାଖ ଲୋକଙ୍କୁ କନ୍ଧର ଭୟ, ସେମାନେ ଠକିବେ, ଶୋଷଣ କରିବେ, କାଳେ କ'ଣ ନାହିଁ କ'ଣ କରିଦେବେ !

ଭୟ ଏଡ଼େଇ ଏଡ଼େଇ ଅନ୍ଧାରି ବଣରେ ଛପିଲା ପରି ହଜିଲା ପରି କୋଟିଆ କନ୍ଧର ଜୀଉଣା, ତାକୁ ଛାଡ଼ିଦେଲେ ତା'ର ସ୍ୱତନ୍ତ୍ର ସଂସାର, ଏ ଦୁନିଆରୁ ବାହାର ।

ଦୁର୍ଭେଦ୍ୟ ମାଳ ଭିତର । ଚାରିପଟେ ଉଞ୍ଚ ଅଛିଣ୍ଡା ପର୍ବତମାନଙ୍କ କାନ୍ଥ କୋଶ କୋଶ ବ୍ୟାପିଛି । ଗୋଟାଏ ବାଟ ଫଟିଛି ଫୁଲବାଣୀର ବାଲିଗୁଡ଼ା ଆଡୁ ତୁମୁଡ଼ିବନ୍ଧ

ପଟୁ ପାହାଡ଼ ଚଢ଼ି ଚଢ଼ି ଗୁମ୍ମାକୁ, ଆଉ ଗୋଟାଏ କୋରାପୁଟ ଜିଲ୍ଲାର ଅମ୍ବାଦୋଳାରୁ ବେଲ୍‌ଘରକୁ । ବର୍ଷକେ ଛ'ମାସ ବାଟ ପଡ଼ିଯାଏ, ବହୁତ ନାଳ ।

ଶୀତଦିନେ ସେଠି ଧୂଳିବରଫ ଝଡ଼େ, କୋଲମରା ଶୀତ, ଥାଳିଆରେ ପାଣି ଥୋଇଦେଲେ ପାହାନ୍ତାକୁ ବରଫ ହୋଇଯାଏ, ଗୁଣ୍ଡା ବରଫ ମାଡ଼ରେ ଗଜା ଶାଳଗଛ ଜଳିଯାଏ । ଜଳେ ନାହିଁ ମଣିଷ ।

ପୋଡ଼ି, ଝଡ଼ି, ଜାଡ଼, ରୋଗ, ଯେତେ ହାଣକାଟ ଦାଉଦାପଟ ଉତ୍ପାତ ଆଉ ବିଭୀଷିକା ସବୁ ତା'ର ଦେହେ ଦେହେ ଯାଏ, ମଣିଷର ଧାର ସରେ ନାହିଁ, କନ୍ଧର ଧାର ସରି ନାହିଁ, ଦଢ଼ି ଚାଲିଛି ।

'କୋଟିଆ' ନାଁ ତାକୁ ରୁଚେ ନାହିଁ, ନିଜେ ସେ 'କୁଇ', ତା' ଅର୍ଥ ଅମାନିଆ, ସ୍ୱାଧୀନ । ନିଜକୁ ସେ କହେ ପରଜା, ତାଷୁଆ, ଦେଶିଆ । ଅ-କନ୍ଧ କେବେ ତାକୁ ନାଁ ଦେଇଥିଲା 'କଟିଆ', ସେ ଖାଲି ତା' କଟିରେ ପତ୍ର ନ ହେଲେ ଗଛ ଛେଲିର କୌପୁନୀ ପିନ୍ଧୁଥିଲା ବୋଲି, ଅଥବା, ତା' ଘର ତଳ 'କୁଟି' ଅର୍ଥାତ୍ ଗାଡ଼ ପରି ବୋଲି, ଅଥବା ତା'ର ପୁରାଣ ଅନୁସାରେ ସେ ଯେ ବସୁଧାରୁ ଠାଏ ସୋପାଂଗାଡ଼ା ବା 'ଜନ୍ମଗାଡ଼' ଭିତରୁ ବାହାରି ପୃଥିବୀ ଉପରକୁ ଆସିଥିଲା ବୋଲି, ଏ ତିନି ଅର୍ଥ ଚଳେ । କେବେ ସମଗ୍ର କନ୍ଧ ଜାତି ଥିଲେ ଏକ, କୋଟିଆ କନ୍ଧର ପୁରାଣ ଜୟପୁର କଳାହାଣ୍ଡି ବଉଦ ସମ୍ବଲପୁରର ବି ନାଁ କହେ, ତା'ପରେ ହେଲେ ନାନା ଉପଜାତି । ଯେ କୋଟିଆ ହୋଇ ରହିଲେ ତାଙ୍କ ଭିତରେ ବି ବୋଲି, ବଂଶମାନଙ୍କ ନାଁ, ପୁଣ୍ୟପର୍ବର ସମୟ ଇତ୍ୟାଦି ଭେଦରେ ଦୁଇ ପ୍ରକାର ଅଛନ୍ତି, ଫୁଲବାଣୀ ଜିଲ୍ଲାର ବେଲଘର-ଗୁମ୍ମା ଆଦି ଅଞ୍ଚଳର କୋଟିଆ ଗୋଟିଏ ପ୍ରକାର, ସେ ଅଞ୍ଚଳକୁ ଲାଗିଥିବା ସେହି ଜିଲାର କୋଠଗଡ଼, ତୁମୁଡ଼ିବନ୍ଧ, ସୁବର୍ଣ୍ଣଗିରି, ଶ୍ରୀରାମପୁର ଅଞ୍ଚଳ ଓ ତାକୁ ଲାଗି କୋରାପୁଟ ଜିଲ୍ଲାର ଚନ୍ଦ୍ରପୁର, ବିଜାପୁର, ବେଲଗଡ଼, ହନୁମନ୍ତପୁର, ଗୁଡ଼ାରିରୁ ଦୁର୍ଗୀଯାକେ ଆଉ ଏକପ୍ରକାର କୋଟିଆ । କିନ୍ତୁ ବେଲଘର-ଗୁମ୍ମା ଆଡ଼ର କୋଟିଆ ସୃଷ୍ଟିର ଇତିହାସ ବିଷୟରେ ଯେଉଁ ଦୀର୍ଘ ପୁରାଣ ଗାଏ ସେଥିରେ ଯେଉଁ ଆଦିପୁରୁଷମାନଙ୍କ ନାଁ ଧରେ ଆର ପ୍ରକାର କୋଟିଆ ମଧ୍ୟ ତହିଁରୁ ଗୋପୀ ମାଝି, ପାଲ୍‌ଚି ମାଝି, ବୁରା ପେନୁ ଆଦି କେତେକ ଆଦିପୁରୁଷଙ୍କ ନାଁ କହେ, ସୋପାଂଗାଡ଼ାରୁ ମଣିଷ, ଜୀବଜନ୍ତୁ ଶସ୍ୟ ଆଦି ସବୁ ଓ ସମସ୍ତେ ପ୍ରଥମେ ପୃଥିବୀ ଭିତରୁ ଆଲୁଅକୁ ଆସିବା କଥା କହେ । ସୂର୍ଯ୍ୟ ଚନ୍ଦ୍ରଙ୍କ ବିଷୟରେ ସେହି ଏକା କିମ୍ବଦନ୍ତୀ ନିୟମଗିରିର ଡଙ୍ଗ୍ରିଆ କନ୍ଧ ବି କହେ । ଉଦୟଗିରି ଟିକାବାଲି ଆଡ଼ର କନ୍ଧ ବେଲଘରଠୁଁ ଷାଠିଏ କୋଶ ଦୂରରେ ରହନ୍ତି, ସେମାନେ ସାଧାରଣ ଅଣଆଦିବାସୀଙ୍କ ପରି ଖାଆନ୍ତି, ପିନ୍ଧନ୍ତି, ଚଳନ୍ତି, ଅନେକ ତହିଁରୁ ଉଚ୍ଚଶିକ୍ଷିତ, କିନ୍ତୁ ସେମାନେ ବି ବୁଢ଼ାବୁଢ଼ାଙ୍କଠୁଁ ଶୁଣିଛନ୍ତି, ସୋପାଂଗାଡ଼ାରେ ଗାତବାଟେ ମଣିଷ ଜାତି ପୃଥିବୀ ପେଟରୁ

ଏ ସଂସାରକୁ ପ୍ରଥମେ ଆସିଥିଲା, ଆଗ ତାଙ୍କ ପୂର୍ବପୁରୁଷ ବି ପତ୍ରମେଖଳା ପିନ୍ଧୁଥିଲେ, ମଣିଷ ହାଣି ବଳି ଦେଉଥିଲେ, ଜଙ୍ଗଲରେ କୁଡ଼ିଆ ତୋଳି ରହୁଥିଲେ । ସେମାନେ ବି ଶୁଣିଛନ୍ତି ସୋପାଂଗାଡ଼ା ପୁରାଣର କଥା, ଚନ୍ଦ୍ରସୂର୍ଯ୍ୟଙ୍କ କିମ୍ବଦନ୍ତୀ । ମୂଳ ଏକା, ଡାଳ ନାନା ଆଡ଼େ, ଆଖିକି ଭିନ୍ନେ ଦିଶେ ।

'ସୋପାଂଗାଡ଼ା' - (ଜନମଗାଡ଼), ତା' ଆଗରୁ ପୃଥିବୀରେ କନ୍ଧ ଜାତିର ଇତିହାସ କନ୍ଧ ଜାଣେ ନାହିଁ, ଆରମ୍ଭ ସେଇଠୁ । କୋଟିଆ କନ୍ଧ କହେ, ଖାଲି କନ୍ଧ ନୁହେଁ, ସବୁ ମଣିଷ, ସବୁ ଜୀବଜନ୍ତୁ, ବୃକ୍ଷଲତା, ଶସ୍ୟ, ଦେବତା ପୃଥିବୀ ଭିତରେ ଅନ୍ଧାରରେ ଜନ୍ମ ହୋଇ ବଢ଼ିଲେ, ମଣିଷ ଆଲୁଅ ଖୋଜି ଖୋଜି ସେହି ବାଟେ ପଦାକୁ ବାହାରିଲା, ଦେବତା ବି ବାହାରିଲେ, ସବୁ ଜୀବଜନ୍ତୁ ସବୁ ଶସ୍ୟ ବିହନ ବାହାର କଲେ । ସୃଷ୍ଟି ବ୍ୟାପିଲା - ସେ ତ ପଛ କଥା ।

## ।। ଦୁଇ ।।

କଥାଟିଏ କହୁଁ - ।
ପୁରାଣ କଥା, ସୃଷ୍ଟିର ଜନମ କଥା ।
ଆଗ ନାରେ ନାରେ, ଡାରେ ଡାରେ,
''ସାରି ମାଲି ସାରିଲି
ଲୁଡ଼ି ମାଲି ଲୁଡ଼ିଲି ।''
ତା'ପରେ ଆମନ୍ତ୍ରଣ, -
''ଆସ ମୋର ଶଳା (ୱାମୁ ମିତୁ) ଆସ ସଙ୍ଗିନୀ (ୱାମୁରାଣୀ)
ଗୀତ ଗାଇବା (ଗାଣା ଏଡିନା କାବା ଏଚିନା)
କଥା ବାଣ୍ଟି ହେବା (ଡଚି ସାନା ଟୋଣ୍ଡି ସାନା)''
ଏ ବଡ଼ ଆଚମ୍ଭିତ କଥା
କ'ଣ ସବୁ କେମିତି ଜନ୍ମ ହେଲା ! (ଇନାଲି ଲିଙ୍ଗା ଆନେ ଜାନା ଆନେ)
ସୂର୍ଯ୍ୟ ନ ଥାଇ ଚନ୍ଦ୍ର ନ ଥାଇ ! (ୱେଲାଂ ସିଲାଲାଏ ଲାଞ୍ଜୁ ସିଲାଲାଏ)
ସାତ ଅନ୍ଧାରରେ ସାତ ଅମାସ୍ୟାରେ ! (ସାତା ଆନ୍ଧାରାଏ ସାତା ବାଡ଼ୋରାଏ)
ଜୀବନରେ ସାଙ୍ଗସାଥୀ ନ ଥାଇ, ପାଣି ଭିତରେ
(ଲାଏ ଡୁଂ ଡୁଂ ଜେଲାତା ଲାଏ ଡୁଂ ଡୁଂ ପାଟାତା)
ଆଗ କ'ଣ ଜନ୍ମ ହେଲା ? (ତାଏ ଏ ଲୁ ରାଏ ତାଏ କୁତୁରାଏ)

ଏଡ଼େ ଚଞ୍ଚଳ କହିହେବ ନାହିଁ, ଗାଉ ଗାଉ ବିତିଯିବ ଦିନ ଦିନ ରାତି ରାତି । କାହାଣୀ ସଙ୍ଗେ ଗୀତରେ ଗୀତରେ ନାଁମାନଙ୍କର ଦୀର୍ଘ ତାଲିକା, ଦେବତା, ମଣିଷ, ଜନ୍ତୁ, ଚଢ଼େଇ, ପୋକଯୋକ, ଗଛ, ଶସ୍ୟ, ପର୍ବତ, ସ୍ଥାନ, ପ୍ରତି ବିଷୟରେ । ତା' ସହିତ ସେହି କାହାଣୀ । ସେ ସୋପାଂଗାଡ଼ାର ପୁରାଣ, କୋଟିଆ କନ୍ଧର ବେଦ ।

ସୂର୍ଯ୍ୟ ନାହିଁ, ଚନ୍ଦ୍ର ନାହିଁ, ଆକାଶ ପୃଥିବୀ ମିଶି ରହିଛି, ଖାଲି ନିରନ୍ଧ୍ର ଅନ୍ଧାର, ପୃଥିବୀରେ ମାଟି ନାହିଁ ଖାଲି ପାଣି । ସେହି ପାଣି ଭିତରେ ତା' ମନକୁ ମନ ସାନ ମଞ୍ଜି ପରି ଜନ୍ମ ହେଲା ପ୍ରଥମ ଜୀଅନ୍ତା ରୂପ,

ସେ ଗୋଟିଏ ନାରୀ ମୂର୍ତ୍ତି,

ସେ ଆଦ୍ୟାଶକ୍ତି, ସେ ଦେବୀ,

ସେ କୁମାରୀ (ରାଣୀଆତ୍ତୁ, ବେଣ୍ଡିଆତ୍ତୁ)

ସେ କାହାକୁ ବିଭା ହୋଇ ନ ଥିଲେ, କେହି ତାଙ୍କର ଭର୍ତ୍ତା ନୁହେଁ, କିନ୍ତୁ ପଛେ ସମଷ୍ଟିଙ୍କୁ ସୃଷ୍ଟି କଲେ ସେ ଓ ତାଙ୍କ ପଛେ ପଛେ ଜନ୍ମ ହୋଇଥିବା ଅନ୍ୟାନ୍ୟ ତେଇଶିଜଣ ନାରୀ । ସେ ସୃଷ୍ଟିର ପ୍ରଥମ ଚେତନା, ଯାହା ପ୍ରୟୋଜନ ଭାବିଲେ ତା' କଲେ । ଆଗ ଭାବିଲେ ଚାରିଆଡ଼େ ପାଣି, ବସି ସୁଦ୍ଧା ହେବ ନାହିଁ (କପ୍‌କା ପାଣ୍‌ପି ସିଡ଼େନୁ), ଠିଆ ହୋଇ ହେବ ନାହିଁ (ନିଲ୍‌ପା ପାଣ୍‌ପି ସିଡ଼େନୁ), ତେଣୁ ପାଣିକୁ କାଦୁଅ କଲେ, କାଦୁଅକୁ ମାଟି କଲେ । ତା'ପରେ ମଣିଷ, ଜୀବଜନ୍ତୁ, ଗଛ, ଲଟା ସବୁ କଲେ । ସବୁ ରଖିଲା ପୃଥିବୀ ପେଟ ଭିତରେ । କନ୍ଧ ପୁରାଣ ନାଁ ଡାକି ଡାକି କହେ, ଆଗ କିଏ, ତା'ପରେ କିଏ । ସୁନା ଥାଳିରେ ମଣିଷ ରୂପ ଆଙ୍କି ଜୀବନ୍ୟାସ ଦେବାରୁ ଗୋଟିଏ ଉତ୍ତାରୁ ଗୋଟିଏ ମଣିଷ ଜନ୍ମ ହେଲେ ।

ପ୍ରଥମ ମଣିଷ - ଉତ୍ତୁରେଙ୍ଗା

ଶେଷରେ ସୃଷ୍ଟି କଲେ କନ୍ଧର ଦେବତାମାନଙ୍କୁ,

ପ୍ରଥମ ଦେବତା - ଧରଣୀ, ପ୍ରତି କନ୍ଧ ଗାଁରେ ପୋତା ହୋଇଥିବା କାଠ ଖୁଣ୍ଟ ତାଙ୍କ ସଂକେତ, ସେହି ଧରଣୀମୁଣ୍ଡା ବା ନିଶାଣିମୁଣ୍ଡା ।

ରାଣୀଆତ୍ତୁ ସବୁ ଅସାଧ୍ୟ ସାଧନ କଲେ, ସବୁ ଅସମ୍ଭବକୁ ସମ୍ଭବ କଲେ । ପୃଥିବୀ ଉପରେ ସାତଟା ସୂର୍ଯ୍ୟ ତହିଁରୁ ଜଣେ ବାପ ଅନ୍ୟ ଛଅଜଣ ତା' ପୁଅ, ତାଙ୍କ ତାତିରେ କିଛି ବଞ୍ଚିବା ଅସମ୍ଭବ । ସୂର୍ଯ୍ୟର ଭଉଣୀ ଚନ୍ଦ୍ର, ତାରାମାନେ ତା'ର ସନ୍ତାନ । ସେମାନଙ୍କର ଇତ୍ୟବସରରେ ସର୍ଜନ ସରିଥାଏ, ପୃଥିବୀ ଉପରେ ଢାଙ୍କୁଣି ପରି ଆକାଶ ଉଗାଡ଼ି ହୋଇ ରହିଥାଏ । କୁମାରୀ ଦେବୀ (ରାଣୀଆତ୍ତୁ ବା ବେଣ୍ଡିଆତ୍ତୁ) କମାର ନେଇ ଲୁହା

ଡରକାଇ ଲୁହାର ଖୁଣ୍ଟ ପାଟିଆ କରାଇ ଆକାଶକୁ ପୃଥିବୀରୁ ଅଲଗା କରି ଉପରକୁ ଟେକାଇଲେ । କେଉଁଠି କେଉଁଠି ଖୁଣ୍ଟ ପୋତା ହେଲା, କୋଟିଆ କନ୍ଧ ତା ନାଁ ବି ଗାଏ ।

ତା'ପରେ ଚନ୍ଦ୍ର ବୁଦ୍ଧି କଲା, ତାରାମାନଙ୍କୁ ଖୋଷାରେ ଲୁଚାଇ ଓଠରେ ପିଆଶାଳ କ୍ଷୀର ଲଗାଇ ଓଠ ନା଼ଲି କରି ସୂର୍ଯ୍ୟକୁ ବୁଝାଇଦେଲା ସେ ଭୋକ ମାରିବାକୁ ନିଜ ଛୁଆଙ୍କୁ ଖାଇଛି । ସୂର୍ଯ୍ୟ ଯା ଶୁଣି ନା' ଛୁଆ ଅର୍ଥାତ୍ ଆଉ ଛ'ଟା ସୂର୍ଯ୍ୟଙ୍କୁ ଖାଇଦେଲା, ପଛେ ଦିହେଁ ଗାଧୋଇଲାବେଳେ ଚନ୍ଦ୍ରର ଖୋଷାରୁ ତାରାମାନେ ବାହାରି ପଡ଼ିଲେ, ସୂର୍ଯ୍ୟ ଭଉଣୀର ଠକାମି ବୁଝିପାରିଲା, ତାକୁ ଧରିବାକୁ ଗୋଡ଼େଇଲା, ଯେତେଥର ଧରି ଗିଳେ ସେତେଥର ଗ୍ରହଣ ଲାଗେ, କିନ୍ତୁ ମଣିଷମାନେ ବନ୍ଧୁକ ଫୁଟାନ୍ତି, ପାଟି କରନ୍ତି, ସୂର୍ଯ୍ୟ ଭୟରେ ଚନ୍ଦ୍ରକୁ ଛାଡ଼ିଦିଏ ।

ଆକାଶରେ ଗୋଟାଏ ଚନ୍ଦ୍ର, ଥୋଡ଼ାଏ ତାରା, ଗୋଟାଏ ସୂର୍ଯ୍ୟ, ପୃଥିବୀ ରହିଲା ଭଳି ହେଲା । କୁମାରୀ ଦେବୀ ସୂର୍ଯ୍ୟକୁ ଚନ୍ଦ୍ରକୁ ନିର୍ଦ୍ଦେଶ ଦେଲେ କେଉଁ ବାଟେ ଉଇଁବେ, କେଉଁ ବାଟେ ଅସ୍ତ ହେବେ । ଦିନ ରାତି, ଋତୁ ସବୁ ହେଲା । କୁମାରୀ ଦେବୀ ସୃଷ୍ଟିକୁ ପୃଥିବୀର ପେଟ ଭିତରୁ ଉପରକୁ ଉଠାଇବାକୁ ମନ କଲେ ।

ମାଟି ତଳେ କେତେ ପାତାଳରେ ସେ ସୃଷ୍ଟି । ଖାଲି ଅନ୍ଧାର । ବାଟ ନାହିଁ । ଆଗ ବାଟ କଢ଼ାଇଲା ମୂଷା, ଖୋଳି ଖୋଳି ସୁଡ଼ଙ୍ଗ କରି ଚାଲିଲା ଆଗେ ଆଗେ, ତା'ପରେ ଅଟକି ଗଲା, ଆଉ ପାରିଲା ନାହିଁ । ଲାଗିଲା ଝିଙ୍କ, ବହୁତ ବାଟ ଖୋଳିଲା, ତଥାପି ହେଲା ନାହିଁ । ତା'ପରେ ଲାଗିଲା ବଜ୍ରକାପ୍ତା, ସେ ବି ଗୋଟିଏ ଜନ୍ତୁ, ତା ' ଦେହଯାକ ଲୁହାର ଚକ୍ତି ଛାଉଣୀ ହେଲାପରି ବର୍ମ, କୋଟିଆ କନ୍ଧ ତାକୁ କହେ 'ଜାରେଣି' । ବହୁତ ବାଟ ସେ ସୁଡ଼ଙ୍ଗ କାଟିଲା, ତଥାପି ହେଲା ନାହିଁ । ତା'ପରେ ଚେଷ୍ଟା କଲା ଉଇ । ତାହାରି ଅଦମ୍ୟ ଉଦ୍ୟମରେ ପୃଥିବୀ ଉପରକୁ ସୁଡ଼ଙ୍ଗ ଖୋଳା ହେଲା, ହଠାତ୍ ଅନ୍ଧାର ଭିତରେ ଦିଶିଲା ତୀବ୍ର ଆଲୁଅ । ସେହି ଆଲୁଅ ଆଡ଼କୁ ଯାଇ ଯାଇ ଦିନେ ସେମାନେ ବାହାରିଲେ ।

ଯେଉଁଠି ବାହାରିଲେ ସେହି ଜାଗାର ନାଁ 'ସୋଫା-ଗା଼ଡା' ଅପଭ୍ରଷ୍ଟ ହୋଇ 'ସାଫାଗାଡ଼ା' ବା 'ହାଫାଗାଡ଼ା' । ଆଗ ବାହାରିଲେ ରାଣୀଆତ୍ତୁ (ଦେବୀ) ତା'ପରେ ତାଙ୍କ ସହଚର, ତା'ପରେ ମନୁଷ୍ୟମାନେ, ଯେମିତି ଆଗପଛ ହୋଇ ଜନ୍ମ ହୋଇଥିଲେ ସେମିତି ବାହାରିଲେ । ଆଗ ଉତୁରେଙ୍ଗା । ସେମିତି ସବୁ ସୃଷ୍ଟି ଜୀବଜନ୍ତୁ, ଉଦ୍ଭିଦ, ଦେବତା ଆଦି ବାହାରିଲେ ।

କୁମାରୀ ଦେବୀ (ରାଣୀଆତ୍ତୁ) ବିଭିନ୍ନ ଦେବତାଙ୍କର ପୂଜା ବ୍ୟବସ୍ଥା କଲେ, କେବେ କେମିତି କାହାର ପୂଜା କରିବେ ମଣିଷମାନଙ୍କୁ ସେପରି ଆଦେଶ ଦେଲେ, ଭିନ୍ନ

ଭିନ୍ନ ବଂଶର କନ୍ଧଙ୍କୁ ଭିନ୍ନ ଭିନ୍ନ ଅଞ୍ଚଳ ଭିନ୍ନ ଭିନ୍ନ ଜମି ବାଣ୍ଟି ଦେଲେ । ପ୍ରତି ବଂଶ ଗୋତ୍ର ସେ ଆଗରୁ ସୃଷ୍ଟି କରିଥିଲେ, ବଂଶର ନାଁ ଓ ଆଦିପୁରୁଷମାନଙ୍କ ନାଁ ସେ ପୁରାଣରେ ଅଛି । ସେମିତି, ପ୍ରତି ବୃତ୍ତି ଓ ସେ ବୃତ୍ତିଧାରୀମାନଙ୍କ ଆଦିପୁରୁଷଙ୍କ ନାଁ । ସମାଜ ବସିଲା । ମଣିଷ ବଢ଼ିଲେ । ପ୍ରତି କନ୍ଧ ଜାଣେ କିଏ ତା'ର ପ୍ରପିତାମହ ଯେ ଆଦି ସୃଷ୍ଟି ବେଳର ଜଣେ ଆଦିପୁରୁଷ, କ'ଣ ତା' ଗୋତ୍ର ।

କୋଟିଆ କନ୍ଧର ପବିତ୍ର ନଦୀ ଗୁଞ୍ଜି ନାଳ; ସେ ଗୁମା ପାଖରେ ଗୁଞ୍ଜିଆନୁ ମାହାଆନୁ ପର୍ବତରୁ ବାହାରି ତେଲନଦୀରେ ମିଶିଛି । ପୁରାଣରେ ତା'ର ବିଶିଷ୍ଟ ସ୍ଥାନ ଅଛି । ରାଣୀଆଡୁ ମୁଣ୍ଡ ଧୋଇ ଗାଧୋଇବେ ବୋଲି ବନ୍ଧ ଖୋଜୁଥିଲେ, ବନ୍ଧ ପୋଖରୀ ନ ଥିଲା । ଠାଏ ଦେଖିଲେ, ଓସ୍ତଗଛ, ଯାପି ଗଛ, ରାଣ୍ଡାଂ ଲଟା, ବେତ ବଣ, କେକ୍ରେଲାକୁ ଓ ରାଚେଣାକୁ ବୁଦା, ଆଓ୍ୱାସାକୁ ଓ ପାଓ୍ୱାସାକୁ ବୁଦା ଅଛି । ତଳେ ପାଣି ଥିଲେ ଉପରେ ଏସବୁ ଦିଶେ । ତେଣୁ ସେ ସେହି ଜାଗାରେ ଠାଏ ଉଖାରି ଦେଲେ ଓ ସଙ୍ଗେ ସଙ୍ଗେ ଝରଣା ବାହାରି ପଡ଼ିଲା ।

ରାଣୀଆଡୁ ସେ ପାଣିରେ ମୁଣ୍ଡ ଧୋଇ ବାଳକୁ ପଛକୁ ଛାଟିଦେଲେ । ସେ ବାଳରୁ ଜନ୍ମ ହେଲା ପିଡ଼େଲି ବୁଦା, ସାନ ସାନ ବାଉଁଶ ପରି, ତାଲା ପୁଜୁ ଫୁଲ, କାଣୀରଣା ଓ କାଣାରାଣା ଗଛ । ଝରଣାର ପାଣି ଉପତ୍ୟକାରେ ଭର୍ତ୍ତି ହେଲା, ହ୍ରଦ ପରି ହେଲା, ବସ୍ତି ବୁଡ଼ିଗଲା, ଚିନ୍ତା ପଡ଼ିଗଲା ପାଣି କେମିତି ଖଲାସ ହେବ । ରାଣୀଆଡୁ ହଳେ ବଳଦ ଯୋଚି ଲଙ୍ଗଳ ଓଟରାଇଲେ, ବଳଦ ଅଡ଼େଇ ଗଲେ ଚାରିଜଣ, ସେମାନେ ଏଙ୍ଗୁ ଉଦେରା, କୁଣ୍ଡୁ ଉଦେରା, ଜାନାଂ ଦୁଲାରା, ମିନାଂ ଦୁଲାରା । ଲଙ୍ଗଳ ଯେଉଁ ସିଅ କାଟିଗଲା ପାଣି ସେବାଟେ ନଈ ହୋଇଗଲା । ଶାଳଗଛ ଚେର ଓ ସାହାଜ ଗଛ ଚେରରେ ନଙ୍ଗଳ ପଶିଗଲା, ତା' ଚେର ବି କଟା ହେଲା । ବାଟରେ ଆଗୁଳିଲେ ଦୁଇ ପର୍ବତ, ପଞ୍ଚାୟତ ବସିଲା, ଶୁଣିଲେ ନାହିଁ, ତେଣୁ ସେ ପର୍ବତକୁ ଖଣ୍ଡାରେ ହାଣି ବାଟ କରାଗଲା । ପାଣି ବୋହିଗଲା । କେଉଁ କେଉଁ ରାଜ୍ୟ ବାଟେ ନଈ ଗଲା, କନ୍ଧର ଐତିହାସିକ ଅଞ୍ଚଳ, ତା' ନାଁ ପୁରାଣରେ ପଡ଼େ । ତା'ପରେ ପହଞ୍ଚିଲେ ତେଲନଦୀ କୂଳ । ପାଣି ତେଲନଦୀରେ ପଡ଼ିଲା, ମହାନଦୀରେ ପଡ଼ିଲା । କ୍ରମେ ଏପରି ସ୍ଥାନକୁ ଆସିଲା ଯେଉଁଠି ଆଉ ସ୍ଥଳଭାଗ ନାହିଁ । ଆକାଶରେ ଥିବା ମେଘଦେବତା, ପବନଦେବତା ଶିସା ଡଙ୍ଗାରେ ପାଣିକୁ ଉପରକୁ ଉଡ଼ାଇନେଲେ । ରାଣୀଆଡୁ ସେମାନଙ୍କୁ ଆଦେଶ ଦେଲେ - ''ଡଙ୍ଗାକୁ ଠେଲ ନାହିଁ, ହଲାଅ ନାହିଁ, ସବୁଦିନେ ବର୍ଷା କର ନାହିଁ । ୪ ମାସ ଖରା ହେବ, ୪ ମାସ ବର୍ଷା, ୪ ମାସ ଶୀତ । ଆମ୍ବ, ତୋସି, ଚାର, ଡାଲିଆ ଏସବୁ ଶେଷ ହେଲା ପରେ ପାଣି ଡଙ୍ଗାକୁ ଠେଲି ବର୍ଷା ଅଜାଡ଼ ।'' ଋତୁ ସେହି ଅନୁସାରେ ହୁଏ ।

ପୃଥିବୀ ଉପରେ ବସିଗଲା ବସତି । ଗୋଟିଏ ଗୋଟିଏ ସ୍ଥାନ ଜଙ୍ଗଲ କାଟି ସଫା କରାଯାଏ, ତା ନାଁ ହୁଏ 'ପଦର', ପ୍ରତି ପଦରରେ ଗୋଟିଏ ଗୋଟିଏ ବଂଶର କନ୍ଧ ବସତି । ପ୍ରତି ପଦରରେ ନାନା ଦେବତା ପ୍ରତିଷ୍ଠା କରାଗଲେ । ସେମାନେ ରାଣୀଆତ୍ତୁକୁ ପଚାରିଲେ, ''ଆମେ କଣ ଖାଇବୁ ?'' ରାଣୀଆତ୍ତୁ ତାଙ୍କ ପାଇଁ ପୂଜା ଭୋଗ ବ୍ୟବସ୍ଥା କରିଦେଲେ । ସେମିତି ସେ 'ଜେନା ଦେବତା'କୁ କହିଲେ, ''ତୁମେ ରକ୍ତ ଖାଇବ ନାହିଁ, ଲିଆ, ମୁଆଁ, ନଡ଼ିଆ, ଧୂପ, ଦୁଧ, ପଣା ଖାଇବ ।'' 'ଡଂଗର ଦେବତା'କୁ ପାହାଡ଼କୁ ପଠାଇ କହିଲେ, ''ତମୁକୁ ଲୋକେ ଭୋଗ ଦେବେ, ଚାଉଳଗୁଣ୍ଡା, ହଳଦୀଗୁଣ୍ଡା, ଚିଟା ପକାଇ ଚାରିପାଞ୍ଚଟି କୁକୁଡ଼ା ତମୁକୁ ଭୋଗ ଦିଆଯିବ ।'' 'ବୀମା ରଜା' ଦେବତାକୁ କହିଲେ, ''ତମୁକୁ ଲୋକେ ଧଳାକୁକୁଡ଼ା, ଧଳାପାରା, ଧଳାଛେଳି ଖାଇବାକୁ ଦେବେ ।'' ଗଙ୍ଗୀ ଦେବତାକୁ କହିଲେ ''ତୁମେ ନଇରେ ଥିବ, ତୁମକୁ ଲୋକେ ଘୁଷୁରି ବଳି ଦେବେ ।'' 'କାଳୀ ସୁନ୍ଦରୀ' ଦେବତାକୁ କହିଲେ 'କଳାପାରା, କଳାକୁକୁଡ଼ା, କଳାଛେଳି, କଳା ଶଂଖା, କଳାମାଳି, କଳାସିନ୍ଦୂର ଏ ସବୁ ତମର ଭୋଗ, ତୁମେ ବୁଲି ବୁଲି ଚଳିବ, ଯାହାକୁ ମନ ହେବ ତାକୁ ଧରିବ, ଖାଇବ, ତା'ର ରକ୍ତ ଝାଡ଼ା କରିବ ।'' ବସନ୍ତୀ ଦେବତାକୁ କହିଲେ ''ତୁମେ ବୁଲୁଥିବ, ମଣିଷ ଉପରେ ବିହନ ବୁଣି ଖାଇବ ।'' 'ବାଲିଦେବତା'କୁ କହିଲେ, ''ତମୁକୁ ଲିଆ ମୁଆଁ, କୁକୁଡ଼ା, ପାରା, ଭୋଗ ଦିଆ ହେବ ।'' ଆହୁରି କେତେ କେତେ ଦେବତା, ସମସ୍ତିଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା । ବୁଗାପେନୁ ବା ଡୋଙ୍ଗ୍ରୀ: ଗାଁ ପୂର୍ବ ଦିଗରେ ଦି'ହାତ ଉଚ୍ଚ କୁଡ଼ିଆ ଭିତରେ ଲମ୍ୱା ପଥର, ପୌଷମାସରେ ତାଙ୍କ ପୂଜା: ପୁଣି ବୈଶାଖରେ ବଣ ପୋଡ଼ିଲା ବେଳେ ବୋବାନି ବା ଠାକ୍ରାଣି; ଚୈତ୍ର ମଙ୍ଗଳବାରଦିନ ପୂଜା ସାନ୍ଧୀ, ଲିଙ୍ଗାପେନୁ ବା ପିତୃପିତାମହ, କୁଡ଼ାପେନୁ, ବୁଇ ଇତ୍ୟାଦି ।

ଆଗ ବସାହେଲେ ଧରଣୀ ଦେବତା, ସେ ଧରିତ୍ରୀ ଦେବୀ । ସୋପାଂଗାଡ଼ାରେ କୋଟିଆ କନ୍ଧ ବଂଶ ଲାଗି ଗୋଟିଏ ଗୋଟିଏ 'ଧରଣୀ ମୁଣ୍ଡା' ବା କାଠ ଖୁଣ୍ଟ ପୋତା ହେଲା, ସେଇ ସେ ଦେବତାଙ୍କ ସଂକେତ । ପ୍ରତି କନ୍ଧ ବସ୍ତିରେ ଗୋଟିଏ 'ଧରଣୀ ମୁଣ୍ଡା କାଠ, 'ଧରଣୀ ମୁଣ୍ଡା' ପୋତା ନ ହେଲେ ଗାଁ ବସିବ ନାହିଁ । ଆଗ ଧରଣୀକୁ ପୂଜା ଦେବା କଥାହିଁ କନ୍ଧ ଭାବିଥିଲା, କାରଣ ସମସ୍ତେ ଧରିତ୍ରୀ ଭିତରୁ ବାହାରିଥିଲେ, ସବୁ ଜନ୍ତୁ ସବୁ ଶସ୍ୟ ବି ତାହାରି ଭିତରୁ ବାହାରିଲା । ଧରଣୀକୁ ପୂଜା କରି ସନ୍ତୁଷ୍ଟ କରିବା ସେ ଭାବିଲା ତାଙ୍କର ପ୍ରଧାନ କର୍ତ୍ତବ୍ୟ, ଧରଣୀ ଭୋଗ ଖାଇଲେ ରାଜ୍ୟ ଉଜ୍ଜ୍ୱଳ ହେବ, ସବୁ ସୌଭାଗ୍ୟ ଘଟିବ, ସବୁ ଭୟ ଦୂର ହେବ, ଫସଲ ହେବ, ରୋଗ ଗ୍ରାସିବ ନାହିଁ, ଜୀବନରେ ସୁଖଶାନ୍ତି ରହିବ । ଆଗ ବଳି ଦିଆ ହେଲା କଦଳୀଗଛ, କିନ୍ତୁ ମନ ମାନିଲା ନାହିଁ । ତା'ପରେ କଖାରୁ କଟା ହୋଇ ଭୋଗ

ହେଲା, ତହିଁରେ ବି ମନ ମାନିଲା ନାହିଁ। ଖମ୍ଭ ଆଳୁ ହାଣି ବଳି ଦିଆଗଲା। କିଛି କାଳ ପରେ ପିଆଶାଳ ଗଛକୁ ହାଣି ବଳି ଦିଆଗଲା। ତା'ପରେ ପିଆଶାଳ ଖୁଣ୍ଟ ପୋତି ସେଥିରେ ଶିଆଳିଲଟା ଗୁରେଇ ସେ ଖୁଣ୍ଟକୁ ହାଣି ବଳି ଦେବାକୁ ଚେଷ୍ଟା ହେଲା, ଖୁଣ୍ଟ କଟିଲା ନାହିଁ; କିନ୍ତୁ ବଳିଦେବା ଲୋକର ହାତ ଟିକିଏ କଟିଯାଇ ଭୂଇଁରେ ରକ୍ତ ପଡ଼ିଗଲା। ଧରଣୀ ରକ୍ତ ଚାଖିଲା, ମାଗିଲା ମଣିଷ ବଳି। ଆରମ୍ଭ ହେଲା ମେରିଆ ପୂଜାରେ ନରବଳି ଦେବା ପ୍ରଥା।

ପ୍ରଥମେ ବଳି ପଡ଼ିଲା ଗୋଟିଏ କୁମାରୀ କନ୍ୟା, ନିଂଗୁଲୀ। ସେ ଉଡ୍ଡୁରେଙ୍ଗାଡ଼ା ଓ ମଚିନାଲୀଙ୍କ ଝିଅ। କନ୍ଧ ପୁରାଣରେ ଉଡ୍ଡୁରେଙ୍ଗାଡ଼ା ଏ ପୃଥିବୀର ପ୍ରଥମ ମଣିଷ, ବଂଶ ନୁଣ୍ଡୁଳା। ଉଡ୍ଡୁରେଙ୍ଗାଡ଼ା ଯୋଡ଼ିଏ ଆଦିନାରୀଙ୍କୁ ବିଭା ହୋଇଥିଲେ, ଜଣେ ନେରାନ୍ଦାଲୀ, ଆଉ ଜଣେ ମଚିନାଲୀ। ଓ୍ୱସାଙ୍ଗା କୁଜୁଙ୍ଗା ବୋଲି ତାଙ୍କର ଦୁଇ ପୁଅ। ନିଂଗୁଲୀ ବଳି ପଡ଼ିଲା ବେଳେ ସେ ପୂଜାରେ ପୁରୋହିତ ହୋଇଥିଲେ ନିଜେ ଉଡ୍ଡୁରେଙ୍ଗାଡ଼ା, ଗଣକ ହୋଇଥିଲେ ପାଏରା।

ସୋପାଂଗାଡ଼ାରେ ଯେଉଁଠି ନିଂଗୁଲୀ ବଳି ପଡ଼ିଲା ସେଠି ତାର ସ୍ମାରକ ହୋଇ ଥୁଆ ହୋଇଛି ଖଣ୍ଡେ ଚଟାପଥର, ଦି' ହାତ ଉଚ, ଦି' ହାତ ଓସାର, ଆକୃତିରେ ମଣିଷର ହୃତ୍‌ପିଣ୍ଡ ପରି।

ସେ ଖାଲି ଆରମ୍ଭ ମାତ୍ର। ଯୁଗ ଯୁଗ ବିତିଗଲା, ଗାଏଁ ଗାଏଁ ମଣିଷ ବଳି ଚାଲିଲା, ମଣିଷ ରକ୍ତରେ ଭୂଇଁ ଜୁଡୁବୁଡୁ ହେଲା।

ଆସିଲା ଇଂରେଜ ଅମଳ, ମେରିଆ ବଳି ବନ୍ଦ କରିବାକୁ ଇଂରେଜ ସରକାର ସାହେବ କର୍ମଚାରୀ ପଠାଇଲେ, ସୈନ୍ୟ ବି ଗଲେ। 'ମେରିଆ କମିସନ୍'ର ସାହେବମାନେ ବାରମ୍ବାର ସେ ଦୁର୍ଭେଦ୍ୟ ମାଳ ଭିତରେ ବୁଲି ବୁଲି କନ୍ଧଙ୍କୁ ବୁଝାଇଲେ, ଡରାଇଲେ, ବଳି ପାଇଁ ବନ୍ଦୀ ହୋଇ ରହିଥିବା ଶହ ଶହ ଲୋକଙ୍କୁ ବିଭିନ୍ନ ସ୍ଥାନରେ ସେମାନେ ମୁକୁଳାଇ ନେଲେ, ଅନେକ ସ୍ଥାନରେ କନ୍ଧମାନେ ଯୁଦ୍ଧ କଲେ।

କୋଟିଆ ମାଳରେ ପ୍ରଥମ ନାଁଡାକ୍ ଯୁଦ୍ଧ ହେଲା ରାଂପାରୁ ଗାଁରେ, ଗାଁର ମୁଣ୍ଡିଆଳ ହୋଇଥିଲେ ସାରାକା ନୂଆ ମାଝି ଓ ସାରକା ଟୁଙ୍କୁ ମାଝି 'ସାରାକା' ତାଙ୍କ ବଂଶ ନାଁ। ବହୁତ କନ୍ଧ ମଲେ।

ଗାନ୍ଧୁର ଓ ବନ୍ଦିରିରେ ଯୁଦ୍ଧ ହେଲା। ବନ୍ଦିରିରେ ଲଢ଼ିଲେ ଇଂରେଜ। ଗେନ୍ଦା ମାଝି ଓ ଡୁଡୁମାଝିଙ୍କ ନେତୃତ୍ୱରେ ବହୁତ ଆଡ଼ର କନ୍ଧ ଏକାଠି ହେଲେ, ଇଂରେଜ ସରକାର ବାରମ୍ବାର ବନ୍ଦିରିବସ୍ତି ଜାଳିଲେ ଶ୍ରୀରାମପୁରରେ ବି ବଡ଼ ଯୁଦ୍ଧ ହେଲା, ସେତେବେଳେ କନ୍ଧ ସର୍ଦ୍ଦାର ଥିଲେ ଶ୍ରୀରାମପୁରର ମୁଦ୍ରିରିଙ୍ଗିଆ କଡୁମ୍ଭେ ପାଟୁମାଝି,

ଜୁବାଗୁଡ଼ାର ସ୍ରାନି ପାଟ୍ରମାଝି ଓ ସାନ୍ଧମାହାଁର ପୁଟ୍‌ଚା ପାଟ୍ରମାଝି । ଯୁଦ୍ଧ-ଯୁଦ୍ଧ, ମଣିଷ ହାଣି ଧରଣୀ ଦେବତା ପାଖେ ବଳି ପକାଇବା ଅଧିକାର ପାଇଁ ଖାଲି ନୁହେଁ, ବଣପାହାଡ଼ ଭିତରେ ଆପଣା ଗୋଷ୍ଠୀର ସ୍ୱତନ୍ତ୍ରତା ରକ୍ଷା ପାଇଁ ସେ ଯୁଦ୍ଧ । ବାରମ୍ବାର ଯୁଦ୍ଧ ଫଳରେ ଇଂରେଜର ବଳ ଆଗରେ କୋଟିଆ କନ୍ଧ ମୁଣ୍ଡ ନୁଆଁଇଲେ । ନରବଳି ବନ୍ଦ କରିବାକୁ ରାଜି ହେଲେ । ମେରିଆ ପୂଜାର ମନ୍ତ୍ର ଭିତରେ ପଶିଗଲା 'କିଆମଲ' 'ମକମଲ', ସାହେବଙ୍କ ନାଁ, (ମେଜର୍ କ୍ୟାମ୍ପବେଲ୍ ଓ ମେଜର୍ ମ୍ୟାକ୍‌ନିଲ୍) ଧରଣୀ ଦେବୀଙ୍କୁ ମନ୍ତ୍ରରେ କୁହାଯାଏ । ସେମାନେ ନରବଳି ବନ୍ଦ କରିବାରୁ ଆମେ ଆଉ ଗଣ୍ଡି (ମଣିଷ) ଦେଉ ନାହୁଁ, ପୋଢ଼ ଦେଉଛୁଁ । ଆମର କିଛି ଦୋଷ ନାହିଁ ।''

କିନ୍ତୁ ପ୍ରକାଶ୍ୟରେ ନ ହେଲେ ବି ନରବଳି ଲୁଚାଚୋରାରେ ଆଉ କେତେ ବର୍ଷ ଚାଲିଲା, ପ୍ରଥମ ନରବଳି ଗୁମ୍ମା-ସୋପାଂଗାଡ଼ାର ନିଂଗୁଲା, ଶେଷ ନରବଳି ଚନ୍ଦ୍ରପୁର କୋଟିଆମାଳରେ ହନୁମନ୍ତପୁର ପାଖ ପୁରୁଣା ରାଇବଜି ଅର୍ଥାତ୍ କୁର୍ଲିବାଲିରେ ରାଇମାଝି । ରାଇମାଝି ଗୋଗେରାଂଗା ବଂଶର କନ୍ଧ, ଘର ଜାର୍ଗିମାହାଁ । ଧରଣୀ ଦେବତାର ସଂକେତ ସେ ପାଇଲା ଯେତେବେଳେ ଦେବୀଙ୍କୁ ମାନସିକ କରି ଛାଡ଼ିଥିବା 'ବିଜିନା' ବୋଲି ପୋଢ଼ ଜାର୍ଗିମାହାଁରେ ତା' ଘର ଦୁଆର ମୁହଁରେ ଯାଇ ଶୋଇଲା, ରାଇମାଝି ପରିବାରଠୁ ବିଦାହୋଇ ଖାଇପିଇ ପଦାକୁ ବାହାରିଲା, ବିଜିନା ଠିଆ ହେଲା, ଆଗେ ଆଗେ ଚାଲିଲା ସିଧା ପୁରୁଣା ରାଇବିଜି ପଦରରେ ଥିବା ବଳିପଡ଼ିଆ 'ଦଶରାକୁପା'କୁ । ସେଠି ବିଜିନାକୁ ବଳି ପକାଇଲେ । ଗୋଟାଏ ବଡ଼ ଗାତ ଖୋଳିଥିଲେ । ତାହାରି ଭିତରେ ଫୋପାଡ଼ି ଦେଲେ । ରାଇମାଝି ସେ ଗାତରେ ଜୀଅନ୍ତା ପଶିଲା । ତା'ର ନିର୍ଦ୍ଦେଶ ଅନୁସାରେ ଧୀରେ ଧୀରେ ତା ଉପରେ ମାଟି ଲଦି ଦିଆଗଲା । ସେ ତା'ର ଶେଷନିଶ୍ୱାସରେ କହିଦେଇ ଗଲା ''ଆଜିଠୁଁ ଆଉ ନରବଳି ଦେବ ନାହିଁ, ଦେବୀଙ୍କର ଏଇଆ ଆଦେଶ ।'' ଆହୁରି ମାଟି ଗଦା କରାହେଲା । ତା' ଉପରେ 'ଧରଣୀମୁଣ୍ଡା' ଖୁଣ୍ଟ ପୋତାଗଲା । ନରବଳି ବନ୍ଦ ହେଲା । ରାଇ ମାଝି ଥିଲା ଦେବୀଙ୍କ କାଳିଶି, 'ଜାନୀ' । ରାଇମାଝି ଓ ବିଜିନା ପୋଢ଼ଙ୍କ ନାଁକୁ ମିଶାଇ ସ୍ଥାନର ନାଁ ରଖାହେଲା 'ରାଇ-ବିଜି' ।

## ॥ ତିନି ॥

ମାଳ ମାଳ ପର୍ବତ, ଧାଡ଼ି ଧାଡ଼ି, ଥାକ ଥାକ । ଘଞ୍ଚ ଶାଳବଣ, ବାଉଁଶ ବଣ, ଲଟି ଅରମା । ପଦରରେ ପୁରୁଷେ ଉଚ୍ଚ 'ଶିକ୍‌ଲୀ' ଘାସ, ପବନରେ ଢେଉ ଖେଳିଯାଏ । ପାହାଡ଼ ଢାଲୁରେ ଉପତ୍ୟକାରେ ସ୍ଥାନେ ସ୍ଥାନେ ବଣକଦଳୀର ଜଙ୍ଗଲ । ପଲ ପଲ ହାତୀ ବୁଲନ୍ତି । ମହାବଳ ବାଘ ବୁଲେ ।

ସେହି ବଣ ଅରମାର ଅନ୍ଧାର ତଳେ ଲୁଚି ଛପି ରହନ୍ତି ଅତୀତର ଠାକୁର-ବିଗ୍ରହମାନେ, ଅତୀତର ଗୃହସ୍ଥଳୀ, ଅତୀତର ଇତିହାସ, ଜଙ୍ଗଲ ମାଡ଼େ । କନ୍ଧ କୁହାକୋହି ହୁଅନ୍ତି କେଉଁଠି କେଉଁ ସନ୍ତକ ଅଛି, ଖୋଜିଲେ କେଉଁଟା ଦିଶେ କେଉଁଟା ଦିଶେ ନାହିଁ ।

ସୋପାଂଗାଡ଼ାରେ କୌଣସି ଗାଡ଼ ନାହିଁ, କୌଣସି ସୁଡ଼ଙ୍ଗର ମୁହଁ ଦିଶେ ନାହିଁ । ପ୍ରାୟ ସମକୋଣ କରି ମିଶିଥିବା ଯୋଡ଼ିଏ ନଈର ତ୍ରିକୋଣରେ ଗୋଟିଏ ଢିପ, ସେଠି ପୁରୁଣା ବାଉଁଶବଣ, ପାଖେ ପୁରୁଣା ଇଟାକୁଢ଼, ହାତେ ଲମ୍ୱା ମୁଠୁଣିଏ ଓସାର ଚାରି ଆଙ୍ଗୁଳି ମୋଟା ତଷ୍ଣ-ପୋଡ଼ା ଇଟା, ପ୍ରାଚୀ ଉପତ୍ୟକାର ଇଟା ମନେପଡ଼େ ।

କନ୍ଧ କହେ, ଆଦିନାରୀ (କୁମାରୀ ଦେବୀ) ରାଣୀଆତୁଙ୍କର ଦାନ୍ତ ସେଠି ପୋତା ହୋଇଛି, କାକୁଡ଼ି ମଞ୍ଜି ପରି ସେ ଦାନ୍ତ, ସେଠି ତାଙ୍କର ପାଣିହାଣ୍ଡି ଅଛି, ଧାନ କୁଟିବା ମୂଷଳ ଅଛି, ଖାଇବା ପାତ୍ର ଅଛି । ସେସବୁ ପଥର ହୋଇଯାଇଛି, ଆଖିରେ ପଡ଼େ ନାହିଁ । କିମ୍ୱଦନ୍ତୀର ଅର୍ଥ ହୁଏ ମୂର୍ଖତାର ପଥର, କନ୍ଧ କହନ୍ତି ସୋପାଂଗାଡ଼ାରେ କନ୍ଧମାନେ ଆଗ ପଥରରେ ଘର କରୁଥିଲେ ।

ବେଲଘରରୁ ଗୁମ୍ମା ବାଟରେ ଚାରିକୋଶ ଗଲେ ସାନ କୋଟିଆ କନ୍ଧ ଗାଁଟିଏ, 'ଵ୍ଲାଞ୍ଜା' (ବାଘର ବହୁବଚନ), ବାଟର ଡାହାଣକୁ ଅର୍ଥାତ୍ ଉତ୍ତରକୁ ଆଠଘର ବସ୍ତି, ଦକ୍ଷିଣକୁ ଚାରିଘର ବସ୍ତି, ଘୋର ଅରଣ୍ୟର ଦାଢ଼ରେ ସେ ଗାଁ । ସେଠି ରହେ ସୋପାଂଗାଡ଼ାର ପୂଜକ, 'ମିଣିଗୁଂଏରି' ବଂଶର । କନ୍ଧ-ପୃଥ୍ୱୀରେ ଆଉ କାହାରି ସେ ଅଧିକାର ନାହିଁ । ତା କାରଣ ବି ଅତି ସହଜ ! ରାଣେଆତୁ ଦେବତାଙ୍କ ହାତରୁ ପୂଜା ନେଲେ ନାହିଁ, କହିଲେ ''ତମୁକୁ ତ ମଣିଷହିଁ ସୃଷ୍ଟି କରିଛି । ତୁମ ହାତରୁ ମୁଁ କେମିତି ଖାଇବି ?'' ଧାମଣପାଙ୍ଗା ପର୍ବତରେ ପୁରୁଣା ବାଉଁଶବୁଦାଟିଏ ଥିଲା, ସେହି ବାଉଁଶଗଛରୁ ସେ ନିଜେ ଗୋଟିଏ ନୂଆ ଦେବତା ସୃଷ୍ଟି କଲେ, ଜନ୍ମ ହେଉ ହେଉ ତାକୁ କାକରରେ ଘୋଡ଼େଇ ପକାଇଲେ, ଘେନିଆସିଲେ ସୋପାଂଗାଡ଼ାକୁ । ତା ଦେହରେ ମାଟିର କି ମଣିଷର ଗନ୍ଧ ନ ଥିଲା । ତାରି ହାତରୁ ସେ ଭୋଗ ପାଆନ୍ତି ସେହି ସେ 'ମିଣିଂଗୁଏରି' । ପୁରୋହିତ ବୁଦୁ ଜାନି ବିଶ୍ୱାସ କରେ ତା'ଠି ମିଣିଂଗୁଏରି ରକ୍ତ ଅଛି, ତେଣୁ ସେ ସୋପାଂଗାଡ଼ା ଦେବତା ଆଦିଶକ୍ତି ରାଣୀଆତୁଙ୍କୁ ଭୋଗ ଦିଏ । କନ୍ଧ କହନ୍ତି ସେ ସୋପାଙ୍ଗାଡ଼ା କଥା ସବୁ ଜାଣେ, କେଉଁଠି କଣ ଅଛି ସବୁ ଜାଣେ, କହେ ନାହିଁ କିଛି । ସେ ଜ୍ଞାନୀ ତେଣୁ ସେ କହେ ନାହିଁ, ଜାଣେ, ଦେଖେ । ସେମିତି କନ୍ଧ ଜାତି ଯୁଗେ ଯୁଗେ ଦେଖି ଦେଖି ଆସିଛି । ଯାହା ଦେଖିଛି ସବୁ ତା ମନେ ମନେ ।

ସେହି କ୍ଷାଞ୍ଜାଠୁଁ ଉତ୍ତରପୂର୍ବକୁ ଆହୁରି ଦେଢ଼ କୋଶ ଯିବାକୁ ପଡ଼ିବ, ବାଁ ପାଖେ ସୋପାଙ୍ଗାଡ଼ା ନଈ, ଉତ୍ତରରେ ଟିମାଦାଡ଼ା ପର୍ବତରୁ ବହି ଆସିଛି । ସମତଳ ଭିତରେ ପାତଳ ଜଙ୍ଗଲ, ପୁରୁଣା ଜଙ୍ଗଲ ଆଉ ନାହିଁ । ତା'ପରେ ଦିଶିବ ପୂର୍ବରୁ ପଶ୍ଚିମକୁ ଆସିଛି ଗୁମାରନଈ ଭଟେଇ ନାଳ, ସୋପାଙ୍ଗାଡ଼ା ନଈରେ ମିଶିଛି । ତାକୁ ପାରି ହେଉ ହେଉ ଆର ପାଖେ ଢିପ ତଳେ ପଥରଟିଏ, ମଣିଷର ହୃତ୍‌ପିଣ୍ଡ ଆକୃତିର । ଦି' ହାତ ଓସାର ହେବ, ତିନି ହାତ ଉଚ୍ଚ । କନ୍ଧର ପ୍ରଥମ ନରବଳି ନିଂଗୁଲୀର ସ୍ମୃତି ଚିହ୍ନ ସେ । କନ୍ଧ ସମାଜର ଆଖି ଆଗରେ ଧରଣୀ ଦେବୀଙ୍କ ସନ୍ତକ ଖୁଣ୍ଟ କତିରେ ପଥର କତିରେ ନିଜେ ତା'ର ବାପ ଉଡୁରେଙ୍ଗାଡ଼ାହିଁ ଧରଣୀ ପୂଜାରେ ପୁରୋହିତ ହୋଇ ନିଜ ହାତରେ ଛୁରୀ ଧରି !

ଅଲିଅଳୀ ଝିଅ ବୟସଟେ ଥିଲା ନିଂଗୁଲୀ, ବାର ତେର ବର୍ଷର କୁମାରୀଟିଏ । ତା'ର ଧୂଳି ଖେଳ ଭାଙ୍ଗି ନ ଥିଲା, ରୂପରେ ଗୁଣରେ ନାଁ-ଡାକ ପିଲା, ବାପ ମା'ଙ୍କର ଗୋଟିଏ ବୋଲି ଝିଅ । ଶହ ଶହ ପରିବାର ନାନା ବଂଶ ଥିବା କନ୍ଧ ଗୋଷ୍ଠୀରେ ତା' ବାପ ରାଜାଠୁଁ ବଳି କ୍ଷମତାଶାଳୀ, ମର୍ଯ୍ୟାଦାବନ୍ତ । ସେ ସେମାନଙ୍କ ସର୍ଦ୍ଦାର, କନ୍ଧ ଜାତିର ପୌରାଣିକ ଆଦି ମନୁ ପ୍ରସିଦ୍ଧତମ ପ୍ରଥମ ମନୁଷ୍ୟ 'ଉଡୁରେଙ୍ଗାଡ଼ା' ।

'ମଟିନାଲୀ' ନିଂଗୁଲୀର ମା, ତାଙ୍କରି ସ୍ତ୍ରୀ ।

ସେଇଠି ଉଡୁରେଙ୍ଗାଡ଼ା ନିଜ ହାତରେ ସମର୍ପଣ କରିଥିଲେ ଧରିତ୍ରୀ ଦେବତାକୁ ଆପଣା ପ୍ରିୟତମା କନ୍ୟାର ରକ୍ତ । ସେଇଠି ।

## ।। ଚାରି ।।

ସେ ଦୃଶ୍ୟ ମନେ ପଡ଼ିଯାଉଛି । ଫଗୁଣ ମାସ ରବିବାର ।

ଜଙ୍ଗଲ ନାଲି ପଡ଼ିଛି, ନାଲି ପତ୍ର, ନାଲି ଫୁଲ, ପଳାଶ, ଆଉ ଲଟା-ପଳାଶ, କୃଷ୍ଣଚୂଡ଼ା, ଅଶୋକ । ପେଛା ପେଛାଶାଳ ଫୁଲ ବି ନାଲି ।

ଧୂଳିଆ ଆକାଶ ଉହାଡ଼ରୁ ନାଲି ସୂର୍ଯ୍ୟ ବି ଅନାଇଁ ଦେଖୁଛି, ସେ ଖାଇଥିଲା ତା ନିଜର ଛଅଟି ପୁଅଙ୍କୁ, ଭୋକ ଦାଉରେ, ଭଉଣୀର ପ୍ରରୋଚନାରେ ।

ଗୋଷ୍ଠୀଯାକର ସବୁ ମଣିଷ ସେ ନଈକୂଳେ ରୁଣ୍ଡିଛନ୍ତି, ଶହ ଶହ କନ୍ଧ କନ୍ଧୁଣୀ, ଗୋରା, କଳା । ତାଙ୍କର ଆବୁଆବୁଆ ବୃଷାଳ ଦେହ ଖରାରେ ଝଟକୁଛି । ଲଙ୍ଗଳା ମଣିଷ, ଫୁରୁ-ଫୁରୁ ମୁଣ୍ଡବାଳ, ଅଣ୍ଟାରେ ଡୋର, ଲେଙ୍ଗୁଟି ମାରିଛନ୍ତି କେଙ୍ଗେଂ ଗଛର ଲମ୍ବା ପତ୍ର । ମଦ ପିଇ ମାତିଛନ୍ତି, ହାତରେ ଛୁରୀ, ଆଖିରେ ଅସ୍ୱାଭାବିକ ଉତ୍ତେଜନା । ସେହି ଗହଳି ମଝିରେ ଟଳୁ ଉପରକୁ ଉଠିଛି ଗୋଟାଏ ଶିମିଳି କାଠର ମୋଟା ଖୁଣ୍ଟ, ତା' ଉପରେ ଗୋଟାଏ ଠେକୁଆ ପରି ରୂପ ହୋଇ ହଣା ହୋଇଛି । ଦି' କେନିଆ

ହୋଇଛି, ଗୋଟାଏ କେନାରୁ ଓହଳିଛି ଗୁଡ଼ାଏ କୁତ୍ରା ହାଡ଼ । ଖୁଣ୍ଟଯାକ ଫୁଲ ହାର ବନ୍ଧା ହୋଇଛି ।

ଖୁଣ୍ଟ ଆଗରେ ଅଛନ୍ତି ନିଂଗୁଲୀର ବାପ ଉଡୁରାଙ୍ଗାଡ଼ା, ସିଦ୍ଧାନ୍ତୀ ପାଏର, ପ୍ରତି କନ୍ଧ ବଂଶର ବଡ଼ ବଡ଼ ଲୋକେ, ନିଂଗୁଲୀର ଦାଦିମାନେ- ପେନାରାଙ୍ଗାଡ଼ା ଓ ଆଉ ଷୋଳଜଣ, ତା'ପଛକୁ ତା' ପଛ ହୋଇ ଶହ ଶହ କନ୍ଧ ନର ନାରୀ ।

ନଈରେ ସେ ଦୃଶ୍ୟର ପ୍ରତିବିମ୍ବ ପଡିଛି । ଢିପ ଉପରେ ଚାଷ କ୍ଷେତ, ଗହଳି ହରଡ଼ କ୍ଷେତ ହଳଦିଆ ପଡ଼ି ସାରିଲାଣି, ଭୂଇଁ ବରଗଡ଼ା 'କାଟି' କ୍ଷେତରେ କାଠି ପରି ଛୁଇଁ ପାକଳ ହେଲାଣି, ପତ୍ର ଅଳ୍ପ । ସୁଆଁ ପାଚିଛି । ନଈ ଅତଡ଼ା ସେକରେ ଢିପ ଉପରେ ଚଟା ଇଟାରେ ତିଆରି ସାନ ଦେଉଳ ଗୁମ୍ଫା ପରି । ସେ ରାଣେ-ଆତୁଙ୍କ ଦେଉଳ ।

ମଣିଷର ଗହଳି ମଝିରେ ଯେଉଁ ଖୁଣ୍ଟ, ତା କଡିରେ ଧରଣୀ - ଦେବତା, ସେ ତିନିଟା ଗୋଲ ଗୋଲ ପଥର, ଚୁଲି ଝିଙ୍କା ପରି, ତା' ଉପରେ ଆହୁରି ଗୋଟାଏ । ତା ଆଗରେ ପ୍ରକାଣ୍ଡ ମାଟିଦୀପ ମୋଟା ସଳିତା ଜଡ଼ା ତେଲରେ ଜଳୁଛି । ବହଳ ହୋଇ ଝୁଣା ଧୂଆଁ ଭଉଁରି ଭଉଁରି ଉଠୁଛି, ପାଖରେ ଥୁଆ ହୋଇଛି ଠେକିରେ ଅତୁଠର ପାଣି, ହାଣ୍ଡିରେ ରନ୍ଧା ମଦ, ଭୂଇଁରେ ନାନା ବର୍ଣ୍ଣର ମୁରୁଜ ପଡ଼ିଛି, ଫୁଲ ପଡ଼ିଛି, ହଳଦୀ, ଚାଉଳ, ସିନ୍ଦୂର ପଡ଼ିଛି । କୁକୁଡ଼ା ଡିମ୍ବ ଥୁଆ ହୋଇଛି ।

ପୂଜା

ପୁରୋହିତମାନେ କନ୍ଧ ଭାଷାରେ ମନ୍ତ୍ର ବୋଲୁଛନ୍ତି, ଆଗରେ ପ୍ରଧାନ ପୁରୋଧା, ସମାଜପତି ଉଡୁରେଙ୍ଗାଡ଼ା ନିଜେ ।

ଖୁଣ୍ଟରେ ବନ୍ଧା ହୋଇଛି ତାଙ୍କର ତେର ବର୍ଷର ସୁକୁମାରୀ ଝିଅ, - ନିଂଗୁଲୀ । ବାପ ପରି ଛାଣ୍ଟ ତା ଗଢ଼ଣ, ମା'ପରି ଅପୂର୍ବ ସୁନ୍ଦରୀ ।

ବାପର ସେ ନୟନପିତୁଳୀ । ବାପର କାଖରେ କୋଡ଼ରେ ସେ ମଣିଷ ହୋଇଥିଲା । ପାଞ୍ଚ ବର୍ଷ ବୟସଯାକେ ବାପହିଁ ଥିଲା ତା'ର ବାହନ, ବାପର ବେକକୁ କୁଣ୍ଢେଇ ଧରି ବାପର ଛାତିରେ ଲାଖିଯାଇ ସେ ବଣ ପାହାଡ଼ ବୁଲିଛି, ଜନ୍ତୁ, ଚଢ଼େଇ, ମଣିଷ ଚିହ୍ନିଛି । କେଡ଼େ ଶରଧା କରେ ତା ବାପ ତାକୁ । ଦଣ୍ଡେ ନ ଦେଖିଲେ ଅଧୀର । ଯେତେବେଳେ ବଣରୁ ଘରକୁ ଆସିବେ ତା ପାଇଁ କିଛି ହେଲେ ଆଣିଥିବେ । ଫୁଲ, ଫଳ,କୋଳି, କନ୍ଦା, ଖେଳିବାକୁ ଚଢ଼େଇଟିଏ କି କେଉଁ ଜନ୍ତୁର ଛୁଆ । ଯେତେବେଳେ ତା'ର ଟିକିଏ ବୁଦ୍ଧି ହେଲା ସେ ନିଜେ ତାକୁ ଶିଖାଇଥିଲେ କାଣ୍ଡ ବିନ୍ଧିବାର ବାଗ, ଜନ୍ତୁ ଧରିବାକୁ ନାନା ପ୍ରକାର ଫାଶ ପକାଇବା କୌଶଳ, ଛୁରୀ ଚଳେଇବା କୌଶଳ । ସବୁଥିରେ ସେ ପୁଅପିଲାଙ୍କୁ ବଳି ।

ସେହି ନିଂଗୁଲୀ ଖୁଣ୍ଟରେ ବନ୍ଧା ହୋଇଛି । ତାକୁ ଠିଆ ରଖି ତା ଦି'ହାତ ଲୁହା କଡ଼ାରେ ପଶି ଲୁହା ଜଞ୍ଜିରରେ ଖୁଣ୍ଟରେ ଛନ୍ଦା ହୋଇଛି, ଦି' ଗୋଡ଼ ବି ସେହିପରି, ଅଣ୍ଟା ବନ୍ଧା ହୋଇଛି ଖୁଣ୍ଟରେ ଲୁହା ଜଂଜିରରେ । ତା ଅଣ୍ଟା ଡୋରରେ ପତ୍ରମେଖଳା, ଦେହଯାକ ଫୁଲହାର, ମୁଣ୍ଡରେ ଚାଉଳ, ହଳଦୀଗୁଣ୍ଡ । କପାଳରେ ସିନ୍ଦୂର ବୋଳା ହୋଇଛି ।

ସେ ବେକକୁ କରକୁ ଢଳାଇ ଦେଇଛି, ତାର ମୁଣ୍ଡବାଳ ତଳକୁ ଓହଳି ପଡ଼ିଛି ।

ସେ ବେଳେ ବେଳେ ବେକ ସଳଖାଏ, ବଡ଼ ବଡ଼ ପାଗଳ ଆଖିରେ ଅନାଏଁ । କାନ୍ଦି କାନ୍ଦି ଆଖି ନାଲି । ସେ ଚିର୍ଚ୍ଛିରେଇ କାନ୍ଦେ । ନାନା ଆକାରର ପଚାଶ ଷାଠିଏ ଢୋଲ ଏକାଠି ବାଜେ, ଶିଙ୍ଗା, ତୂରୀ, ମହୁରୀ ବିକଟାଳ ଶବ୍ଦ କରି ଗଗନ ଫଟାଏ । ତା'ର କାନ୍ଦଣା ସେ ଶବ୍ଦରେ ବୁଡ଼ିଯାଏ ।

ଉତ୍ତୁରେଙ୍ଗା ଠିଆ ହେଲେ । ପ୍ରକାଣ୍ଡ ଆକାର । ସମସ୍ତିଙ୍କଠୁଁ ଡେଙ୍ଗା । ଗୋରା । ବଳିଷ୍ଠ ଓସାର କାନ୍ଧ । ମୁହଁରେ ବହଳ ନିଶଦାଢ଼ି । ଲମ୍ବା ଦାଢ଼ି ଓହଳିଛି । ମୁଣ୍ଡରେ ବେତାଏ ବାଳ, ବୟସ ପଚାଶ ଟପିଛି, ଗୋଟିଏ ବି ବାଳ ପାଚି ନାହିଁ ।

ଉପରକୁ ହାତ ଟେକିଲେ, ବାଜା ବନ୍ଦ ହେଲା । ସମସ୍ତେ ତୁନି ପଡ଼ିଲେ । ଶୁଭୁଥାଏ ଖାଲି ନିଂଗୁଲୀର ତୁହାଇ ତୁହାଇ ଚିତ୍କାର, ତା ଛାତିଫଟା କାନ୍ଦଣା, ତାର ଆତୁର ଡାକ -

''ବାପା ! ବାପା ! ମା ! ମା !''

ସେ ବାପ ସତେକି ଏଠି ନାହିଁ, ଯେ ଉତ୍ତୁରେଙ୍ଗା, କନ୍ଧ ଗୋଷ୍ଠୀର ଦଳପତି । ତା' ମା ମଚିନାଲୀ ନାହାନ୍ତି ଏଠି । ଉତ୍ତୁରେଙ୍ଗା ସତେ ଅବା ଠିଆ-ହାତ ପଥର । ମଦ ପିଇ ପିଇ ବିବେକକୁ ଶୁଆଇ ପକାଇଛନ୍ତି । ଚେତନା ଗୋଟାଏ ଧାରଣାରେ ସ୍ଥିର, ଅଟଳ- ସେ କର୍ତ୍ତବ୍ୟ କରୁଛନ୍ତି । ସେ କର୍ତ୍ତବ୍ୟ ତାଙ୍କ ଗୋଷ୍ଠୀ ପ୍ରତି, ମଣିଷ ଜାତି ପ୍ରତି, ତାଙ୍କ ଦେବତା ପ୍ରତି । ଆକାଶ, ଧରଣୀ ଆଉ ସାରା ସୃଷ୍ଟି ଦେଖୁଛନ୍ତି, ତାଙ୍କ ହୃଦୟ ଥରିବ ନାହିଁ, ହାତ ଥରିବ ନାହିଁ । ଜନ୍ମ ହେବେ ମରିବେ କେତେ ଉତ୍ତୁରେଙ୍ଗା, ଯେମିତି ପୋକ ମାଛି, କର୍ତ୍ତବ୍ୟ କରିବାକୁହିଁ ହେବ ।

ସେ କେବେ ଭାବୁ ନ ଥିଲେ ସେ ପାଗଳ, ବିଭ୍ରାନ୍ତ, ତାଙ୍କ ସମାଜ ଅନ୍ଧବିଶ୍ୱାସୀ, ମୂର୍ଖ ବୋଲି, ସେ ନାହିଁ ନ ଥିବା ନୃଶଂସତାର ପରମ୍ପରା ଗଢୁଛନ୍ତି ବୋଲି, ସେ ଭାବୁଥିଲେ ସେ ମଣିଷ ଜାତିର ହିତ କରୁଛନ୍ତି । ଯୁଗ ଯୁଗକୁ, ଧରଣୀ ଦେବୀ ସନ୍ତୁଷ୍ଟା ହେବେ, ସବୁ ସୁଖସମୃଦ୍ଧି ମାଡ଼ିଯିବ । ଦୁଃଖ ରହିବ ନାହିଁ, ବିପଦ ରହିବ ନାହିଁ ।

ଆଖି ବୁଜିଥାନ୍ତି । କହିଲେ,

ଶୁଣନ୍ତୁ ସମସ୍ତେ । ସବୁ ଦେବତା, ସବୁ ମଣିଷ, ଏ ଆକାଶ, ଏ ସୂର୍ଯ୍ୟ, ଏ ପବନ, ଏ ସୃଷ୍ଟି ସମସ୍ତେ ସାକ୍ଷୀ ରହିଲେ । ଯେ ଗୋଷ୍ଠୀର ସମସ୍ତିଙ୍କ ମଙ୍ଗଳ ପାଇଁ ମୁଁ ମୋ ପ୍ରିୟତମା କନ୍ୟାକୁ ଧରଣୀ ମାଆକୁ ଭୋଗ ଦେବି । ନେ ମା ଧରଣୀ, ତୁ ଖା, ତୁ ଖାଇ ସନ୍ତୁଷ୍ଟ ହ, ଯାଠୁଁ ପ୍ରିୟତର ଅଧିକ ମୂଲ୍ୟବାନ୍ ମୋର କିଛି ନାହିଁ, ମୋର ପ୍ରାଣ ବି ନୁହେଁ । ତୁ ଖାଇଲେ ରାଜ୍ୟ ଉଜ୍ଜ୍ୱଳ ହେବ, ଦେଶ ଉଜ୍ଜ୍ୱଳ ହେବ, ଫସଲ ଭଲ ହେବ, ରୋଗ ହେବ ନାହିଁ । ଯୁଗେ ଯୁଗେ ମଣିଷ ଜାତି ସୁଖଶାନ୍ତିରେ ରହିଥିବ ।

କେଉଁ ଅନ୍ଧାରି ଗୁମ୍ଫା ଭିତରୁ ଶୁଭୁଛି ସେ ଶବ୍ଦ । ଭୟଙ୍କର ଶୁଭୁଛି ।

ନିଂଗୁଲୀ ଭୟରେ ଚିତ୍କାର କଲା, "ବାପା ! ବାପା ! ମା ! ମା !" ତା'ର ବିକଳ ଆଖି ଆଗରେ ବିକଟାଳ ହାଉଁ ଦେଖାଇ ତା ଆଡ଼କୁ ମାଡ଼ିଆସୁଛି ବିଭୀଷିକା । ଚିହ୍ନି ହେଉଛି, ଏଇ ତାର ବାପା, କିନ୍ତୁ କଣ ଏପରି । ଏଇ ମାନେ ତା ଲୋକେ, ତା ସମାଜ, ସବୁ ଘରେ ସେ ଗେହ୍ଲା ଆଦର ପାଇଥିଲା । କେତେ ଘରେ ତା ସାଙ୍ଗସାଥୀ । କିନ୍ତୁ କେଡ଼େ ଅଚିହ୍ନା ହୋଇଗଲେ । କାହିଁ କାହା ମୁହଁରେ ସ୍ନେହ କି ଦୟା । ଏମାନେ ତା'ଠୁଁ କ'ଣ ଚାହାନ୍ତି ।

"ବାପା ! ବାପା ! "ସେ କାନ୍ଦି କାନ୍ଦି ଚିତ୍କାର କଲା । ପୁଣି ଉତୁରେଙ୍ଗା କଥା କହିଲେ, କହିଲେ "ତୁ ଭାଗ୍ୟବତୀ, ମା ନିଂଗୁଲୀ । ଦେବତା ତତେହିଁ ମନ କଲା, ତୁ ହେବୁ ପେନୁ ବୋଗୁ (ଦେବ-ଭୋଗ) । ଏ ମଣିଷ ଜାତିର ମଙ୍ଗଳପାଇଁ ତୁ ଆଗ ହୋଇ ପାରିଲୁ ନୈବେଦ୍ୟ ଆଉ କେହି ନୁହେଁ, ତୁ ଧନ୍ୟା ହେଲୁ ।

ସେ ଶୁଣୁ ନାହିଁ । ଛାଟିପିଟି ହୋଇ ଆହୁରି ବିକଳ ହୋଇ କାନ୍ଦୁଛି ।

ଉତୁରେଙ୍ଗା ପୁଣି ହାତ ଟେକିଲେ । ଗୋଟାଏ ଘଣ୍ଟା ଟାଇଁ ଟାଇଁ ପିଟା ହେଲା । ସମସ୍ତେ ଉଦ୍‌ଗ୍ରୀବ ହେଲେ । ସବୁ ଢୋଲ ମହୁରି ଏକାଠି ବାଜିଉଠିଲା । ଜନତା ଏକାଠି ଶହ ଶହ ତୁଣ୍ଡରେ ଗାଇଲେ ଧରଣୀର ସ୍ତୁତିମୟ ମେରିଆ ବଳି ଗୀତର ଘୋଷା ।

ପୁଣି ଉତୁରେଙ୍ଗା ହାତ ଟେକିଲେ, ସେ ହାତରେ ଜିକି ଢିକି କଲା ଛୁରୀଟାଏ । ସେ ଖୁଣ୍ଟ ଆଡ଼କୁ ମାଡ଼ିଗଲେ ।

ତା'ପରେ ଶୁଭିଲା ପାଗଳ ଜନତାର ଗର୍ଜନ, ଅନେକ ଛୁରୀ ଉଠିଲା ପଡ଼ିଲା ।

## ।। ପାଞ୍ଚ ।।

ମହାଭାରତ ବର୍ଣ୍ଣନା କରେ ଅସୁର ଜାତିର ଇତିହାସ । ସେଥିରେ ବି କେତେ ପୂର୍ବାପୂର୍ବ ଶ୍ରେଷ୍ଠ ମଣିଷଙ୍କ ବୀରତ୍ୱ, ସାହସ, ଚରିତ୍ରବଳ, ଉଦାରତା ଓ ଯଶ-କୀର୍ତ୍ତିର କାହାଣୀ । ସେମାନେ ଯୁଦ୍ଧରେ ହାରିଲେ, ମହାଭାରତ କହେ ସେମାନେ ଆଶ୍ରୟ ନେଲେ ପାତାଳପୁରୀର ଅନ୍ଧାର ଭିତରେ ।

କୋଟିଆ କନ୍ଧର ପୁରାଣ କହେ ମଣିଷ ପୃଥିବୀ ପେଟର ଅନ୍ଧାର ଭିତରୁ ସୋପାଂଗାଡ଼ାରେ ପଦାକୁ ବାହାରି ବସତି କରିବାର କାହାଣୀ । ସେତେବେଳେ କନ୍ଧମାନେ ଲୁହାର ବ୍ୟବହାର ବି ଶିଖି ସାରିଥିଲେ, ତାଷ ତ ସହଜେ । କମାର ଶାଳ ଓ ଉହାର ଟିକିନିଖି ବର୍ଣ୍ଣନା ସେଥିରେ ଅଛି । ଆଉ ଅଛି ସମାଜର ବିଭିନ୍ନ ଶ୍ରେଣୀ, ବିଭିନ୍ନ ବୃତ୍ତିର ବର୍ଣ୍ଣନା । ପୃଥିବୀ ଉପରକୁ ଆସିବା ଆଗରୁ ଅକଳନ ବର୍ଷ ସେ ସମାଜ ଉପରେ ବିତି ସାରିଥିଲା ।

ଅତଏବ ସୋପାଂଗାଡ଼ାରେ ସୁଡ଼ଙ୍ଗ ବାଟେ ବାହାରି ବସତି ମେଲିଦେବା ଆଗରୁ ନିଶ୍ଚୟ ଆଉ କେଉଁଠି ଥିଲେ ସେମାନେ, ଓ ସେ ନିଷ୍କ୍ରମଣ କେଉଁ ପଳାୟିତ ଗୋଷ୍ଠୀର ହେବ ପରା, ତା ଆଗର ଇତିହାସ ଜଣା ନାହିଁ । ଅନୁମାନ କରିହୁଏ, ସେ ହେବ କେଉଁ ସମତଳ, ଯେଉଁଠି ପ୍ରବଳ ବଢ଼ିରେ ଦେଶ ବୁଡ଼େ, ତା ଆଗରୁ ଅଛି ଗୋଟିଏ ବଢ଼ି ପ୍ରଳୟର କିମ୍ବଦନ୍ତୀ, ଦକ୍ଷିଣର ନାନା କନ୍ଧ ଗୋଷ୍ଠୀ ଅଞ୍ଚଳରେ ସେ ପ୍ରଚଳିତ । ସେଥିରେ ସୃଷ୍ଟିକର୍ତ୍ତା ଜଣେ ଭଗବାନ୍, ସେ ଆକାଶ ଧର୍ମୁ ।

ସଂକ୍ଷେପରେ କାହାଣୀଟି ଏହିପରି– ଦିନେ ଜଣେ କନ୍ଧ ଗୋଟିଏ ଗର୍ଭିଣୀ କୁତ୍ରାକୁ ଶିକାର କରିବାକୁ ଧନୁ ବଂକେଇଲା ବେଳେ କୁତ୍ରା ପେଟରେ ଛୁଆ ପାଟି କଲା, "ଆମ୍ଭକୁ ମାରୁଛ ବୃଥା, ଆଉ ସାତ ଦିନେ ଏ ସଂସାର ବଢ଼ି ପ୍ରଳୟରେ ଧ୍ୱଂସ ହେବ । ଶିକାର ନ କରି ନିଜ ଜୀବନ ବଞ୍ଚାଇବାକୁ ଉପାୟ କର ।"

ସେ କନ୍ଧ ଯାଇ ସମସ୍ତିଙ୍କୁ କହିଲା, କେହି ବିଶ୍ୱାସ କଲେ ନାହିଁ । ସେ ତା'ର ଭଉଣୀକୁ ଘେନି ଗୋଟିଏ ଶିମିଳି ଗଛ କୋରଡ଼ ଭିତରେ ରହିଲା । ଗୋରୁଗାଈ, ଫସଲ, ଜିନିଷ, ଚୁଲି, ନିଆଁ ସବୁ ରଖି କୋରଡ଼ର ମୁହଁ ବନ୍ଦ କଲା । ବଢ଼ି ପ୍ରଳୟ ସାତ ଦିନେ ହେଲା । ସମସ୍ତେ ମଲେ । ସେ ଦୁହେଁ ବଞ୍ଚିଲେ । ସୃଷ୍ଟିକର୍ତ୍ତା ସେମାନଙ୍କୁ ଖୋଜାଇ ଉଦ୍ଧାର କଲେ । ବସନ୍ତ ରୋଗରେ ତାଙ୍କ ମୁହଁର ଚେହେରା ବଦଳାଇ ପରସ୍ପରକୁ ଅଚିହ୍ନା ହେଲା ପରି କରି ଭେଟାଭେଟି କଲେ, ସେମାନେ ସ୍ୱାମୀ ସ୍ତ୍ରୀ ହେଲେ, ପୁଣି ମଣିଷ ଜନ୍ମ ହେଲେ, ବଢ଼ିଲେ ।

ସେମିତି କେଉଁ ବଢ଼ି ଚରୁଥିବା ଅଞ୍ଚଳର ବାସିନ୍ଦା ଥିଲେ କନ୍ଧ, କେବେ କାହା ଆକ୍ରମଣ ଦାଉରୁ ବଞ୍ଚିବା ପାଇଁ ଛପି ଛପି ପଳାଇ ଆସିଥିଲେ ପରା । ବାଟେ ବାଟେ କେତେ ହାଣକାଟ, ସବୁଠି ଶତ୍ରୁ । ମାଳରେ ପଶିଲେ, ସେଠି ବି ରକ୍ଷା ନାହିଁ । ସୋପାଂଗାଡ଼ା ପୁରାଣ କହେ ଆଉ ଏଗାରଟି ଜାଗାରେ ସେମାନେ ପଦାକୁ ବାହାରିବାକୁ ଚେଷ୍ଟା କରିଥିଲେ, ପାରି ନାହାନ୍ତି । ପୁଣି ଅନ୍ଧାରେ ଅନ୍ଧାରେ ଖୋଲ ଖୋଲ ଭିତରେ ।

ତା'ପରେ ପରସ୍ତ ପରସ୍ତ ପାହାଡ଼ ପାଚିରି ଟପି ଆସି ସୋପାଂଗାଡ଼ା ଉପତ୍ୟକାରେ । ପୁଣି ଗାଁ ବସିଲା ସେଠି । ପୁଣି ବଂଶ ବଢ଼ିଲା । କନ୍ଧ ଶ୍ରେଣୀରେ

ହେଲା ନାନା ଉପଜାତି । ସେମାନେ ଖେଳେଇ ହୋଇ ପଡ଼ିଲେ, କେତେଠିଁ ବଦଳିଲେ କେତେ ଧାର ଏକାଠି ମିଶିଲା, କେତେ ନୂଆ ଧାର ହେଲା । କୁଆଂ, ଭୂୟାଁ, କିସାନ୍, ଗଣ୍ଡ, କୋୟା, ପେଙ୍ଗ, ଝୋଡ଼ିଆ, ଜାତପ୍, କୋଣ୍ଡା ଦୋରା, ଲୋହ୍ରା, ବିଂଝାଲ୍ କେତେ କଣ, କିଏ କନ୍ଧ ଭାଷାର କେଉଁ ଉପଭାଷା କହେ, କିଏ ତା ବି ପାସୋରି ଧରିଛି ଅନ୍ୟ ଭାଷା । କିଏ କେଉଁ ପ୍ରକାରେ ଚଳେ, କିଏ ଏବେବି ବଣେ ବଣେ ବୁଲେ, କିଏ ଶିକ୍ଷିତ ଅଣଆଦିବାସୀ ପରି ।

ଉଡୁରେଙ୍ଗା ଅନାଉଁଥିଲେ ସେହି ଆଦିମ ବସତି ସୋପାଙ୍ଗାଡ଼ା ଉପତ୍ୟକାକୁ । ଚାରି କୋଶ ଲମ୍ବା । ତା'ର ଦକ୍ଷିଣପୂର୍ବ ପଟେ ଆହୁରି ଖାଲ, ଏବେ ବି ଫରଚା ଚାଷ-ଭୂଇଁ, ସେଠି ବଡ଼ ଗାଁ ଗୁମ୍ମା, ଏବେ ସେଠି କ୍ୱଚିତ୍ କନ୍ଧ, ବେଶି ପାଇକ ଓ ଡମ୍ବ । ଗୁମା ପୂର୍ବକୁ କୋଶେ ଦୂରରେ ସୂତାଘାଟି ପର୍ବତ, ଦକ୍ଷିଣରେ ବଙ୍ଗେର୍ ଡଙ୍ଗର୍ ପର୍ବତ, ଉତ୍ତରରେ ଲାଗ୍‌ଯୋଡ଼ା ପର୍ବତ । ସେଠି ଏବେବି କୋଟିଆ କନ୍ଧର ବଡ଼ ପର୍ବ ପ୍ରତି ବର୍ଷ ହୁଏ । ଉତେଇ ନଇ ସୂତାଘାଟିରୁ ବାହାରି ପୂର୍ବରୁ ପଶ୍ଚିମକୁ ଯାଇଛି । ବଂଗେର ଡଙ୍ଗର ତଳେ ଖଣ୍ଡେ ଦୂରରେ 'ଲୁହାମୁଣ୍ଡା' ବୋଲି ଉଚ୍ଚ ବନ୍ଧ, ଟିକିଏ ଛଡ଼ାରେ ପଶ୍ଚିମକୁ 'ଡିମେଲ୍ ମୁଣ୍ଡା' ବନ୍ଧ, ଉତ୍ତରରେ ଲାଗ୍‌ଯୋଡ଼ା ପାହାଡ଼ ତଳେ 'ଇନ୍ଦ୍ର ମୁଣ୍ଡା' ବନ୍ଧ । ଏ ତିନୋଟି ପ୍ରକାଣ୍ଡ ହିଡ଼ ପକାଇ କେବେ କନ୍ଧ ବାହାର କରିଥିଲା ବିସ୍ତୃତ ଚାଷ ଜମି, ତିନି ବନ୍ଧର ନାଁ ପୁରାଣରେ ଅଛି । ଆଉ ସେ ଜମି କନ୍ଧର ନୁହେଁ । ସୋପାଂଗାଡ଼ାର ଦକ୍ଷିଣରେ ଶ୍ରାବାଯୋଡ଼ା ପର୍ବତ ଧାଡ଼ି, କୋଶେ ଛାଡ଼ି ଉତ୍ତରରେ ଟିମାଦାଡ଼ା ପର୍ବତ ।

ଉଡୁରେଙ୍ଗା ଦେଖୁଥିଲେ ଏଡ଼େ ବଡ଼ ବିସ୍ତୃତ ଅଞ୍ଚଳରେ ଜଙ୍ଗଲ ସଫା ହୋଇ ବଣ ପରି କେମିତି ଚାଷ ମାଡ଼ିଯାଉଛି, ବର୍ଷକୁ ବର୍ଷ, ଏଠି ସେଠି ହୋଇ ବହୁତ କନ୍ଧ ଗାଁ, ବର୍ଷଯାକ ନାନା ପୁଣ୍ୟ ପର୍ବ ।

ସେ ଦେଇଥିଲେ ପ୍ରଥମ ନରବଳି, ସେଦିନୁ ଆହୁରି କେତେ ଚାଲିଲା, ବଳି ପଡ଼େ ଗାଁ ମୁଣ୍ଡିଆଳର ପୁଅ କି ଝିଅ, ସେହି ହେଲା ପ୍ରଥା । ଦିନା କେତେ ପରେ ଏ ଗାଁ ସେ ଗାଁ ଲୋକେ ଆପଣା ଆପଣା ଭିତରେ ବଦଳ ଉଦଳ କରି ମଣିଷ ଆଣି ବଳି ଦେଲେ, ତା'ପରେ ଧରି ଆଣିଲେ ପଦାରୁ । କନ୍ଧ ବ୍ୟାପିଲେ, ଜଙ୍ଗଲ ସଫା ହେଲା, ଚାଷ ବଢ଼ିଲା, ଗୋରୁଗାଈ ବଢ଼ିଲେ । ସାନ ବଡ଼ ହୋଇ କେତେ ଯୁଦ୍ଧ ହେଲା । କନ୍ଧ ରହିଲା ଅଜେୟ ।

ଧରଣୀ ଖୁସି ଅଛି, କନ୍ଧ ଜାତିର ଭବିଷ୍ୟତ୍ ବି ସମୃଦ୍ଧ, ଏଇ ବିଶ୍ୱାସ ଆସିଥିଲା ଉଡୁରେଙ୍ଗାଙ୍କର । ସେ ଦେଖିଗଲେ ତାଙ୍କ ଗୋଷ୍ଠୀର ଅଛିଣ୍ଡା ସୁଖ ଶିରୀ ସଂପଦ ।

ସେ ଦେଖି ନ ଥିଲେ ଆଜିକାର ସୋପାଙ୍ଗାଡ଼ା ଉପତ୍ୟକା । ସେଠୁ କୋଶ କୋଶ ଦୂର ଦୂରକୁ, - ଶୂନ୍‌ଶାନ୍ ଶାଳବଣ, ଆଦିମ କନ୍ଧାବର୍ତ୍ତ ପଡ଼ିଛି ଖାଁ ଖାଁ, ଖାଲି ବାଘ ହାତୀଙ୍କ ବଣ । କେଉଁ କଣରେ ମିଞ୍ଜି ମିଞ୍ଜି ହୋଇ ଗାଁ ଟିକଏ ।

କନ୍ଧ ଏବେବି ଜୀଅନ୍ତାଙ୍କୁ ହାଣି ହାଣି ବଞ୍ଚେ, ମଣିଷ ନୁହେଁ, ମଇଁଷି, ଗୋରୁ, ଛେଳି, ଘୁଷୁରି, କୁକୁଡ଼ା, ପାରା ।

ଆଉ, - ଜୀଅନ୍ତା ଗଛ, ସତେ ଯେମିତି ସେ ତା'ର ଶତ୍ରୁ । ଶାଳ ଜଙ୍ଗଲ ହାଣି ସୁଆଁ ମାଣ୍ଡିଆ ବୁଣେ ।

ଏବେବି ବିଶ୍ୱାସ କରେ, ବଳି ନ ପାଇଲେ ଦେବତା ରାଗିବେ, ତା'ପରେ ଦେବେ ରୋଗ, ନଷ୍ଟି, ଧ୍ୱଂସ । ତେଣୁ ତାଙ୍କୁ ପୂଜା 'ଦେବାକୁ' ହେବ, ତା ଧାରଣାରେ 'ପୂଜା' ଓ 'ବଳି' ଏକା ଅର୍ଥ । ଠାକୁରମାନଙ୍କୁ ଏତେ ତା'ର ଖାତିରି ତୁଛା ଭୟରୁ, ପ୍ରେମରୁ ନୁହେଁ, ପୂଜା ମୂଳରେ ଭୟ, ଭୟ ତୁଟିଲେ ସେ ପୂଜା ଛାଡ଼ିବାକୁ ଅରାଜି ନୁହେଁ । ନୂଆ ଭୟ ପାଇଁ ନୂଆ ନୂଆ ଦେବତା ବି ଗଢ଼ା ହୁଏ, ଯେପରି କେଉଁ ପ୍ରତାପୀ ଶାସକ, କି ଗୁଣିଆଁ, କେଉଁ 'ଦିକିରାଇ', 'ପାଇକିରାଇ', 'ଟାଟା ସାଉ', 'ରାଙ୍ଗା ସାଉ', କେଉଁ ଦେଓ', ଯାହାଙ୍କ ନାଁ ସେ ମନ୍ତ୍ରରେ ଗାଏ ।

ଏତେ 'ପୂଜା' ଦେଇ କିଛି ବଡ଼ତି ଘଟି ନାହିଁ । ବଣ ମାଡ଼ିଯାଇଛି । ତାଷ ଜମିରେ ଶାଳ ବଣ । ଖାଲ ଜମି ନେଲେ ଅନ୍ୟମାନେ, ରାସ୍ତାପାଖିଆ, ଗହୀର ଜମି, ଭଲ ଜମି । ଏବେବି ସେ ବଣରେ ପଲା ଘରେ ରହେ, ପାଞ୍ଚ ସାତ ବର୍ଷରେ ଗାଁ ଏଠୁ ଉଠେ ସେଠିକି । ତୋଫାନ ଗର୍ଜେ, ଗଛ ଓପାଡ଼େ, କୁଡ଼ିଆ ଉଡ଼େଇନିଏ, ବଜ୍ର ବାଡ଼ାଏ, ବରଷା ଗାଳେ, କୁଆପଥର ଛେଚେ, ଶୀତରେ ରକ୍ତ ଶୁଖେ । ବାରମ୍ବାର ହାତୀ ପଲ ଆସି କ୍ଷେତରେ ପଡ଼ନ୍ତି । ବାଘ ଖାଏ । ରୋଗ ଧରେ, ଥାଟ ଗୋଠ ପାତଳ ହୁଏ । ବେପାରି, ମହାଜନ ଓ ଫାଉମରାଙ୍କର ବାର ଅଦୋଉତି ଲାଗି ରହିଥାଏ ।

ଉତ୍ତୁରେଙ୍ଗା ସେ ଭବିଷ୍ୟତ୍ ଦେଖି ନ ଥିଲେ । ବଣ ଭିତରେ ନଈ କୂଳେ ପଡ଼ି ରହିଥାଏ ଚଟା ପଥରଟିଏ, ସେ ନିଂଗୁଲୀର ବଳି ପଡ଼ିବାର ସ୍ମାରକ ।

## ।। ଛଅ ।।

ଉତ୍ତୁରେଙ୍ଗାଙ୍କ ଅନ୍ତେ କେତେ ଶହ ପୁରୁଷ ଗଲା ତା କଳନା ନାହିଁ, କିନ୍ତୁ ମାଳର ମଞ୍ଜ ଭିତରେ କନ୍ଧଙ୍କର ଆଖି ଦରଶିଆ ପରିବର୍ତ୍ତନ ଘଟିଲା ନାହିଁ । ଏବେବି ଗୁଂଫା ପରି ପଲା କୁଡ଼ିଆ, ଘାସ ଛାଉଣି । ପତ୍ର ପିନ୍ଧା ବହୁତ ଦିନ ଚାଲିଲା, ତା'ପରେ ଚଳିଲା

କେକେଂ ପତ୍ର । ହାତେ ଓସାର, ଅଢ଼େଇ ହାତ ଲମ୍ବ, ଚାରି ପାଞ୍ଚ ଦିନ ଯାକେ ସକାଳୁ ଚାରି ଘଣ୍ଟା ଖରାରେ ଶୁଖିବ, ତା'ପରେ ଛାଇରେ ରହିବ, ତା'ପରେ ସେ ପାଗ ହୋଇଯିବ । କୌପୁନୀ ମାରି ହେବ ଅନ୍ତତଃ ଦିନେ । ତା'ପରେ ଆସିଲା କୁମ୍ଭୀପଟର ଲେଙ୍ଗୁଟି, ତା'ପରେ ସୂତା କନା । ଶୀତଦିନେ ବର୍ଷା ଦିନେ ଘୋରି ହେବା ଲାଗି ବାରଂ ଗଛ କି ଢାମଣା ଗଛର ପଟରୁ କଢ଼ା ହୋଇଥିବା ଦଉଡ଼ିରେ ଜାଲ ପରି ପୋଷାକ ବୁଣା ହେଲା । ମୁଣ୍ଡକୁ ଖୋଳ, ବେକରୁ ଗୋଡ଼ଯାକେ ଚିପିଲା ପରି 'ଜିରା' । ଏ ଲୁଗା ଯୁଗରେ ବି ଏସବୁ ଦୃଶ୍ୟ ସ୍ଥାନେ ସ୍ଥାନେ ଦିଶେ । ଏବେବି ସ୍ତ୍ରୀଲୋକଙ୍କ ଅଣ୍ଟାରେ ପରସ୍ତ ପରସ୍ତ ହୋଇ 'ଝୁଡ଼ି' ଗଛ ପଟରେ ତିଆରି ଦଉଡ଼ି ଗୁରା ହୋଇଥାଏ । ପଛଆଡ଼େ ଚାଖଣ୍ଡେ ଲମ୍ବ ତିନି ଆଙ୍ଗୁଳି ମୋଟ ମେଞ୍ଚାଏ ଦଉଡ଼ି, ତା ନାଁ ରେଟାଂ । ଲୁଂଗି ପରି ସାନ ଲୁଗା ଖଣ୍ଡେ ତା'ରି ଉପରେ ଗୁରା ହୁଏ, ଉପର ଅଧକ ଖାଲି, ସେଠି ବୋଝ ବୋଝ ମାଳି, ଏବେ ପଦାକୁ ବାହାରିଲେ ଉପରେ ଆଉ ଖଣ୍ଡେ ପଡ଼େ । ଏବେବି ସ୍ତ୍ରୀ ପୁରୁଷ ମୁଣ୍ଡରେ ଝିଂକକାଠି ଖୋଷନ୍ତି, ସେଥିରେ ପାଦରୁ କଣ୍ଟା କଢ଼ା ହୁଏ । ମୁଣ୍ଡ ବାଳରୁ ଜଟା ଛଡ଼ା ହୁଏ । ମାଟିର ଅଳଂକାର ଆଉ ନାହିଁ, ଆଗେ କାନରେ ପିନ୍ଧୁଥିଲେ ପଣସ କଢ଼ି ପରି ମାଟିରେ ତିଆରି ମୁଦି, ଏବେ ପିତ୍ତଳର । ଆଗେ ପିନ୍ଧୁଥିଲେ ବେକରେ ଓସାର କାଠମାଳି । ତା'ପରେ ବ୍ୟବହାର କଲେ ଗମ୍ହାରି ଗଛର ମଞ୍ଜି ଓ ଶୁଖିଲା ବିରିଙ୍ଗା ଫଳ ଗୁନ୍ଥା ମାଳି, ଏବେ ଆଉ ତା ନାହିଁ, ତା ବଦଳରେ ରଙ୍ଗ ରଙ୍ଗର କାଚମାଳି, ଆଗର ଧନୁ ଏବେ ନାହିଁ । ସେ ଥିଲା ଛ' ହାତ ଲମ୍ବ, ଢାମଣା କାଠରେ ତିଆରି, ତାର କଣ୍ଟା ବାଉଁଶିପାତିଆର ଗୁଣ । ସମ୍ବରର ଅନ୍ତ ବା ମଇଁଷି ଅନ୍ତରେ ଗୁଣର ଦୁଇ ମୁଣ୍ଡ ଧନୁରେ ଟାଣ କରି ବନ୍ଧା ହୋଇଥାଏ । ତୀର ହାଡ଼ର ବା କାଠର, ଅଗରେ ମୁନିଆ ଲୁହା, ଧନୁକୁ ପାଦରେ ମାଡ଼ି ଗୁଣକୁ ଓଟାରୁଥିଲେ । ଉତୁରେଙ୍ଗା ସେହି ଧନୁ ଧରୁଥିଲେ । ଏବେ ସାନ ସାନ ଧନୁ, ଅଧିକ ପ୍ରିୟ ବନ୍ଧୁକ ।

ଏବେବି ଦାନ୍ତ ଘଷା ନାହିଁ, ଛଞ୍ଚ ହେବା ନାହିଁ, ତା ପରିବର୍ତ୍ତେ ପତ୍ର । ସାମାଜିକ ରୀତିନୀତି ପୂର୍ବପରି ।

ବାହାରେ ଇତିହାସର ପୃଷ୍ଠାଏ ପୃଷ୍ଠାଏ ନାନା ପରିବର୍ତ୍ତନ । କେତେ ଯୁଦ୍ଧ, କେତେ ଦେଶଜୟ, ଆକ୍ରମଣ, ନାନା ଚଳଣିର ଆମଦାନି ରପ୍ତାନି । ମାଳ ମାଳ ପାହାଡ଼ ଟପି ଦୁର୍ଭେଦ୍ୟ ବଣ ଲଂଘି ଆସେ ନାହିଁ ସେସବୁ ଯେ କନ୍ଧମାଳ ଭିତରକୁ । କେତେବେଳେ ଅକାଳେ ସକାଳେ ଭସା ମେଘ ପରି ଆସି ଚାଲିଯାଏ କେଉଁ ରାଜାର ସୈନ୍ୟ ଥାଟ, ଯେ ହାବୁଡ଼େ ପଡ଼େ ସେ ଜୁଲୁମ୍ ସହେ ନ ହେଲେ ନାହିଁ । ପୁଣି ବଣରେ ବୋବାଏ କୁତ୍ରା । ବଣ ଉହାଡ଼ରୁ କନ୍ଧ ଉଙ୍କି ମାରି ଦେଖେ, ଆପଦ ଗଲା । ଆଉ କେତେବେଳେ କୁଆଡ଼ର କେଉଁ ତଡ଼ାଖିଆ ରାଜା ଆଶ୍ରୟ ଖୋଜି ଖୋଜି ଆସି ପଶେ ମାଳରେ ।

ଆସ୍ଥାନ ବଢ଼ାଏ, ପୁଣି ଆଉ କେବେ ଓପଡ଼ା ହୋଇ ଆଉ କୁଆଡ଼େ ଯାଏ । ଏମିତି କେତେ ଇତିହାସ କାହାଣୀ ହୋଇଛି ।

ସୋପାଙ୍ଗାଡ଼ା ପୁରାଣ ନାଁ ଧରି କହେ ବିଭିନ୍ନ କନ୍ଧ ବଂଶର ନାଁ, - ଯେଉଁମାନେ ଆଗ ଜନ୍ମ ହୋଇଥିଲେ, ପୁଣି ପ୍ରତି ବଂଶରେ ଗୋଟି ଗୋଟି କରି ଆଦିପୁରୁଷମାନଙ୍କ ନାଁ । ସେମିତି ସେ କହେ ଆଦି ରାଜବଂଶମାନଙ୍କ ନାଁ । ସେମାନେ କନ୍ଧ ବଂଶମାନଙ୍କ ଉପ୍ତତ୍ତି ଉତାରୁ ଜନ୍ମ ହେଲେ ଅର୍ଥାତ୍ ଆସିଲେ, - ''ୱେଡ଼ା ରାଜି, କୋଡ଼ା ରାଜି । ଇନିଂ ଦେଉ, ବିନିଂ ଦେଉ, ଟାଟା ରାଜି, ବେତା ରାଜି, ଗସପତି, ଦଳପତି, କିରା ପାଇକା, ଗଣ୍ଡ ପାଇକା'' । କିଏ ସେମାନେ, କେଉଁଠି କେତେକାଳ ରାଜୁତି କଲେ, କଣ କଣ କଲେ ତା ସେ କହେ ନାହିଁ । ଉଡୁରେଙ୍ଗା ଓ ଗୁଞ୍ଜିନାଳ କାହାଣୀରେ କହେ ଜଣେ ଗଣ୍ଡ ରାଜା କଥା, ସୋପାଙ୍ଗାଡ଼ା ଉପତ୍ୟକା ଅଧିକାର କରିବା ପାଇଁ ସେ ରାଜା ଉଡୁରେଙ୍ଗା ସଙ୍ଗେ ଯୁଦ୍ଧ କଲା । ସେ ରାଜା ଗୁମାରେ କିଛିଦିନ ରହିଲା । ଉଡୁରେଙ୍ଗା ସେଠି ଗୁଞ୍ଜିନାଳ ଉପରେ ବନ୍ଧ ବାନ୍ଧି ତୋଟା, କଦଳୀବାଡ଼ି, ଫୁଲବଗିଚା ଲଗାଇଥିଲେ । ରାଜା କିମିଆଁ ଜାଣିଥିଲା । ଗୁଞ୍ଜିନାଳ ପାଣିକି ଗୋଟିଏ ଫୁଲ ଫୋପାଡ଼ି ଦେଲା ଯେ ସେ ହେଲା ନାଲି କଇଁ, ତା ଅଇଁଠା ଭାତ ପାଣିକି ଫୋପାଡ଼ି ଦେଲା ଯେ ସେ ହେଲା ମାଛ, ଅଇଁଠା ପିଆଜ ପାଣିକି ଫୋପାଡ଼ି ଦେଲା ଯେ ସେ ହେଲା କଂକଡ଼ା, ଲୁଣ ପକାଇଦେଲା ଯେ ସେ ହେଲା ଫେଣ, ଖାଇବା ଦନା ପାଣିରେ ପଡ଼ି ହେଲା କଇଁଛ, ଛଚିନ୍ଦା ହେଲା ସାପ, ଲଂକାମରିଚ ହେଲା ଚୁଙ୍ଗୁଡ଼ି, ସାରୁ ହେଲା ବେଙ୍ଗ, ଆମ୍ବଟାକୁଆ ହେଲା ସାନ କଇଁଛ, ବିରି ଡାଲି ହେଲା ପାଣିରେ ଶିଉଳି, ହଳଦୀଗୁଣ୍ଡା ହେଲା ପାଣିର ରଂଗ । ସେ ରାଜା ସଂଗେ ଉଡୁରେଙ୍ଗାଙ୍କର ସନ୍ଧି ହେଲା । ଉଡୁରେଙ୍ଗା ରାଜାକୁ ଦେଲା କୋଟଗଡ଼, ରାଜା ଉଡୁରେଙ୍ଗା ମୁଣ୍ଡରେ 'ଗଣ୍ଡିଆ' ବା ଶାଢ଼ି ବାନ୍ଧିଲା, ଗୁମା ଓ ସୋପାଙ୍ଗାଡ଼ା ଉଡୁରେଙ୍ଗାର ହୋଇ ରହିଲା ।

କିମ୍ବଦନ୍ତୀର ଅନ୍ଧାର ଭିତରୁ ବାହାରି ଇତିହାସ ଏଠି ଅନ୍ତତଃ କୁହୁଡ଼ିର ରୂପ ଘେନି ଦିଶେ ଓଡ଼ିଶାରେ ଗଂଗବଂଶର ଅବସାନ ସମୟରେ । କନ୍ଧ ନାଁ ଧରେ 'ଗଂଗବଂଶ - ଚକ୍ରବଂଶ'ର । ଚକ୍ରବଂଶ କିଏ ତା ଜଣା ନାହିଁ । ଗଂଗବଂଶର ଶେଷ ରାଜଧାନୀ ଗୁଡ଼ାରି-କଟକ କୋରାପୁଟ୍ ଜିଲ୍ଲାର ଗୁଣୁପୁର ସବ୍‌ଡିଭିଜନ୍‌ରେ ବଂଶଧାରା କୂଳରେ ଆଧୁନିକ ଗୁଡ଼ାରି ଦକ୍ଷିଣକୁ ନଈ ଆରପାରି ପୁରୁଣା ଗୁଡ଼ାରି ଡିପ ଉପରେ ଥିଲା । କୋଟିଆକନ୍ଧ ମାଳ ଛେଦରେ ସେ ସ୍ଥାନ । କୋଟିଆ ଅଧ୍ୟୁଷିତ ପାହାଡ଼ମାଳ ସେଠୁ ଲାଗିଛି । ସୋପାଙ୍ଗାଡ଼ାର ଦକ୍ଷିଣ ପଶ୍ଚିମକୁ ଚାଲିଲେ କୋଡ଼ିଏ ପଚିଶ କୋଶରୁ ସେ ସ୍ଥାନ ବେଶି ଦୂର ନୁହେଁ । ବାଟରେ ପଡ଼ିବ କୋରାପୁଟ ଜିଲ୍ଲାର କୋଟିଆ ଅଞ୍ଚଳ, ଚନ୍ଦ୍ରପୁର, ରାଇବିଜି ଆଦି ।

ଚନ୍ଦ୍ରପୁରରୁ ଦିଶେ 'କଟାଂଗି ସେରୁ' ପର୍ବତ, ତାହାରି ଉପରେ ଥିଲା 'ରୁକ୍ମିଣୀ କଟକ', କନ୍ଧ କହେ ସେଠି ଥିଲା 'ଗଙ୍ଗବଂଶ ଚକ୍ରବଂଶ'ର ରାଜା । ପର୍ବତ ଉପରେ ଓସାର ସମତଳ, ବଡ଼ ପୋଖରୀ, ଜଂଗଲତଳେ ରାଜନଅରର ଧ୍ୱଂସକୁଡ଼ । କହେ ରାଜା ସେଠୁ ଚାଲିଗଲା, ବାଟରେ ଗୋଲ୍‌ଡେକା ପର୍ବତ ଉପରେ ରାଜାର ସ୍ତ୍ରୀ ମଲା, ରାଜା ତାକୁ ସମାଧି ଦେଇ ସେଠି ପଣସଗଛଟିଏ ପୋତିଲା, ସେ ଗଛ ଏବେବି ଫଳୁଛି ।

ଯାଉ ଯାଉ ଗାଡ଼ାବାଗିରି ଗାଁରେ ଆମ୍ବଗଛରେ ଦିଶିଲା ପୋଷା ମୟୂରଟିଏ, ରାଜା ତାକୁ କନ୍ଧ ମାଝିକୁ ମାଗି ନେଲା । ମାଝିକୁ ଦେଲା ମଣିଷ ହାଡ଼ରେ ତିଆରି ସାତଟି ତୀର, ଗାଡ଼ାବାଗିରି ଲୋକେ ତାକୁ ସାଇତି ରଖିଛନ୍ତି । ବୁଡୁବେଲି ଗାଁର କୋଟିଆ କନ୍ଧଙ୍କୁ ରାଜା ଦେଇଗଲା ତାର ବୀର କାହାଳୀ, ଗୋଲ୍‌ଡେକା ଗାଁର କନ୍ଧଙ୍କୁ ଦେଲା ଘଣ୍ଟ, ଗିଲମ୍ବୁକୁପୁଡ଼ାର କୋଟିଆ କନ୍ଧଙ୍କୁ ଦେଲା ମୁଣ୍ଡା ସୁନା, ବଳଦ ବେକରେ ବନ୍ଧା ହେବା ଘଣ୍ଟି, ବଳଦ ଅଡ଼େଇବା ବାଡ଼ି, ସମ୍ବର ଚମଡ଼ାରେ ତିଆରି ଜୋତ ଦଉଡ଼ି । ସେମାନେ ସେସବୁ ସାଇତି ରଖିଛନ୍ତି ।

ସୋପାଙ୍ଗାଡ଼ାଠୁ ଉତ୍ତର ପଶ୍ଚିମକୁ ପନ୍ଦର କୋଶ ଦୂରରେ ସଡ଼କ କରରେ ଲଂକାଗଡ଼ । ବଡ଼ ଅଣ-ଆଦିବାସୀ ଗାଁ । ସେଠୁ ଦୁଇକୋଶ ଦକ୍ଷିଣକୁ କନ୍ଧ ଗାଁ ସିର୍କି ଟପିଲେ ଉଚ ଡିମ୍ବୁଲ୍ ପର୍ବତ, ସେଠି ବି ଥିଲା କେଉଁ ରାଜା ନଅର । ପର୍ବତ ଉପରେ ସମତଳ, ସେଠି ପୋଖରୀ, ଜଂଗଲ ଭିତରେ ଧ୍ୱଂସ କୁଡ଼, କେବେ ତାଷ କ୍ଷେତ ଥିଲା ଯେ ଏବେବି ହରଡ଼, ଧୂଆଁପତ୍ର ମନକୁ ମନ ହୁଏ, ଫଳ ବଗିଚା ଜଂଗଲ ହୋଇ ବଢୁଛି । କହନ୍ତି ଗୋଟିଏ ସେଓ ବଗିଚା ବି ଅଛି, କନ୍ଧ ସେ ଫଳକୁ କହେ 'ରାଇଜାମ୍' ।

କୋଟିଆ କନ୍ଧ ଅଞ୍ଚଳଯାକ ନାନା ସ୍ଥାନରେ ପୁରୁଣା 'ପାତ୍ର' ବା 'ମୁଠାଦାର୍' ଘର । ସେମାନେ ଗୋଟିଏ ଗୋଟିଏ ପରିବାର କେତେଖଣ୍ଡ କନ୍ଧ ଗାଁ ଉପରେ ଅଧିକାର ଜାରି କରୁଥିଲେ । ନାନା ପ୍ରକାର 'ମାମୁଲ' ଅସୁଲ୍ କରୁଥିଲେ । ସେମାନେ ସାଧାରଣତଃ ଗଂଗବଂଶୀ କ୍ଷତ୍ରିୟ ଅଥବା ନଳବଂଶୀ ଗଣ୍ଡ । ବେଶି ଗଂଗବଂଶୀୟ । ଗଂଗର ଚିହ୍ନ ତା'ର ଇଷ୍ଟଦେବୀ 'ମାଣିକେଶ୍ୱରୀ' ଠାକୁରାଣୀ, ବିଗ୍ରହ ନ ଥିଲେ ତାଙ୍କର ସନ୍ତକ କେଉଁଠି ପଥର, କେଉଁଠି 'ପାଟଖଣ୍ଡା', କେଉଁଠି ଭୂଇଁରେ ପୋତା ହୋଇଥିବା ଖମ୍ବ ।

କଳ୍ପନା କରି ହୁଏ ନାହିଁ ଚୋଡ଼ଗଙ୍ଗ, ଅନଙ୍ଗଭୀମ, ନରସିଂହଙ୍କ ବଂଶଧରମାନେ କୋଟିଆ କନ୍ଧ ମାଳ ଭିତରେ ସାଧାରଣ 'ପାଇକ', 'ପାତ୍ର' କିଛି କିଛି କେଉଁଠି ଆଦିବାସୀର ଜମି ଦଖଲ କଲେ ବି ଅନେକ ସ୍ଥାନରେ ଆଦିବାସୀଠୁଁ ବେଶି ଭିନେ ଦିଶନ୍ତି ନାହିଁ, ଅନେକେ ଦରିଦ୍ର, ନିରକ୍ଷର, ସେମାନେ ବି ଆଦିବାସୀର ଅନେକ ଧର୍ମବିଶ୍ୱାସ, ଦେବତା, ପୂଜା ଓ ରୀତିନୀତିକୁ ଆଦରି ନେଇଛନ୍ତି । ତାଙ୍କ ବସ୍ତିରେ ବି ଗାଁରେ କି ମେରିଆ ଖୁଣ୍ଟ ଅଛି । ଆଗେ ନରବଳି ପଡୁଥିଲା, ଏବେ ଚଳେ ମଇଁଷିବଳି । ମାଣିକେଶ୍ୱରୀଙ୍କ ପାଖରେ

ନରବଳି ପଡୁଥିଲା, ମଇଁଷିବଳି ପଡ଼େ, କନ୍ଧ ସେଥିରେ ଅଂଶ ଘେନେ । ଗଂଗବଂଶର ଲୋକେ ଠାକୁରାଣୀଙ୍କି ଅନେକ ନାଁରେ ପୂଜା କରନ୍ତି । ବଣ ଭିତରେ ନାନା ସ୍ଥାନରେ ତାଙ୍କର ପୀଠ, କେଉଁଠି ସହରରେ କି ବଡ଼ ଗାଁରେ, ଯେପରି ବିଷମକଟକରେ ମାର୍କମା, ମୁହାଣରେ ଡୁକ୍ରୀ, ଗଦାପୁରରେ କନକଦୁର୍ଗା, ଜଗଦଲପୁରରେ ମାନଶିରୀ ଓ କର୍ଲାସ୍ୱନୀ, କେଉଁଠି ପୁକୁର୍‌ବନ୍ଧରେ ହୀରାନୀଳା, ଶ୍ରୀରାମପୁରରେ ମାନ୍‌ଶିରୀ, କେଉଁଠି ବନସ୍ତରେ, ଯେମିତି କୋଟଗଡ଼ ପାଖରେ ହଳଦୀଗୁଣ୍ଡ, କନ୍ଦରକୁଣ୍ଡୀ, ସିନ୍ଦୂରଖୁଣ୍ଟି, ଓ୍ୱାମନୀ, ଗୁମାରେ ଦୁଆର୍‌ଶାନୀ, କପାଟ୍‌ଶାନୀ, ଠାକୁରାନୀ, ପର୍ଡାବୁଲି, ଘଣ୍ଟବୁଲୀ, ଶିଂଗାର୍‌ବୁଲୀ, ଗୁମ୍ମାଠୁଁ ତିନିମାଇଲ୍ ଦୂରରେ ବାକିକୁକୀ, କଜଲ୍‌କୁଣ୍ଡୀ । ଅନେକ ପର୍ବତରେ ଦେବୀଙ୍କର ଆସ୍ଥାନ ଅଛି ବୋଲି ସେମାନେ ସେସବୁ ପର୍ବତକୁ ପୂଜା କରନ୍ତି । ଘରେ ଘରେ ତନ୍ତ୍ର ପ୍ରତି ସଂଭ୍ରମ, କେହି କେହି ତନ୍ତ୍ର ପୋଥି ରଖିଛନ୍ତି । ବିଶେଷତଃ 'ଭାରସମ୍ଭାର', କହନ୍ତି ତା'ର ବିଶା ଶହେ ଖଣ୍ଡ ବିଭିନ୍ନ ବିଭାଗ, ସମୁଦାୟ ବାରଶହ ପୃଷ୍ଠା । ଆଉ ନାଁ ଧରନ୍ତି 'ମୁଣ୍ଡମାଳା ତନ୍ତ୍ର'ର ।

କେହି କେହି ଗୁଣିଗାରଡ଼ି କରନ୍ତି ବୋଲି କୁହାଯାଏ, ମନ୍ତ୍ର ବୋଲି ନିଆଁରେ ଚାଲନ୍ତି, ତୁଟୁକାଟୁଟୁକି ଔଷଧପତ୍ର କରନ୍ତି । ନାନା ଆଚାର ପାଳନ୍ତି, ବିଚିତ୍ର ପ୍ରକାରେ ପୂଜା କରନ୍ତି । ପାଟଖଣ୍ଡା ପାଖେ ଭୂଇଁରେ ଧାନ କୁଡ଼୍‌ହେଇ । ତା' ଉପରେ ମଦଠେକି ରଖି ତା' ଉପରେ ଭାଗବତ ପୋଥି ଥୋଇ ସେଠି ମଦ ଢାଳି କୁକୁଡ଼ା ବଳି ଦେବାର ବି ଉଦ୍ଭଟ ପୂଜା ଦେଖାଯାଏ । ସମ୍ଭବତଃ ତାଙ୍କ ପୂର୍ବପୁରୁଷ ଥୋଉଥିଲେ ଜଗନ୍ନାଥ ଦାସଙ୍କ ଭାଗବତ ନୁହେଁ, ସାରଳା ଦାସଙ୍କ ଚଣ୍ଡୀ ଭାଗବତ ।

ଅତୀତରେ କେବେ କନ୍ଧର 'ଧରଣୀ' ଓ ହିନ୍ଦୁର 'ଦୁର୍ଗା' ହେଲେ ଏକ, ମେରିଆବଳି ମନ୍ତ୍ରରେ କନ୍ଧ ନାଁ ଧରିଲା ଦୁର୍ଗାଙ୍କର, ପାଇକ ଦେଲା ଧରଣୀମୁଣ୍ଡା ପାଖେ ବଳି, ବଳିଯାତ୍ରା ମହାସମାରୋହରେ କରାଇଲା । ଦୁହେଁ ମିଶି ବଳି ଦେଇ ଦେଇ ଭୂଇଁକୁ କଲେ ମଣିଷ ରକ୍ତରେ ଜୁବୁବୁବୁ । ପୁରୁଣା ରାଇବିଜିରେ ଯେଉଁ ତିନି ପୁରୁଷ ଉଚ୍ଚ ପ୍ରକାଣ୍ଡ ଧରଣୀ ପଥରି ଗଦା ଅଛି, ଯେଉଁଠି ଅସଂଖ୍ୟ ମଣିଷ ବଳି ପଡ଼ିଥିଲେ ସେଠିକି କନ୍ଧ ଓ ପାଇକ 'ପାତ୍ର' ମିଶି ବଳି ଦେଉଥିଲେ । ଯାତ୍ରା କରାଉଥିଲା ପାତ୍ର । ଶେଷ ବଳି ପଡ଼ିଥିଲା ସେହି 'ଦଶରାକୁପା'ରେ । ସେଠି ଅଛି ଆଉ ଗୋଟିଏ ଦେବତା, ଗୋଟିଏ ନିରୀହ ବାସୁଆବଳଦ, ସିନ୍ଦୂର ବୋଳା ହୋଇ ସେ ବି ହୋଇଥିଲା ବଳିଭୋଗୀ । ତାର ମୂଳ ଆସ୍ଥାନ ସେଠି ନୁହେଁ । ସେଠୁ କୋଶେ ଦୂରରେ ବାଉଁଶବଣ ଶାଳବଣ ଭିତରେ ଯେଉଁ ଶିବମନ୍ଦିର ଭାଙ୍ଗିପଡ଼ିଛି ସେଇଠି । ସେଠୁ ଶିବଲିଙ୍ଗଟି ଉଠି ଚାଲିଗଲା ବଂଶଧାରା ନଇ

ଭିତରକୁ ମିନାଝୋଲାକୁ । ଏବେବି ପୂଜା ହୁଏ, ବାସୁକୁ କନ୍ଧ ଆଣିଲେ ଦଶରାକୁପା । ସେମାନେ ସଂହାରିଣୀ ରୂପ ଛଡ଼ା ଅନ୍ୟ ରୂପରେ ଦୁର୍ଗାଙ୍କୁ ଧ୍ୟାନ କରନ୍ତି ନାହିଁ । 'ମା' ବୋଲି ଡାକିଲାବେଳେ ଭୟରେ ତାଙ୍କ ତଣ୍ଟି ଥରେ, ନ ହେଲେ ରକ୍ତପାତର ଉନ୍ମାଦନାରେ । କିନ୍ତୁ ଦୁର୍ଗାଙ୍କର ନାନା ସ୍ମୃତି ସେମାନେ ନାନା ସ୍ଥାନ ସହିତ ଯୋଖନ୍ତି, ତା ସହିତ ନାନା କିମ୍ବଦନ୍ତୀ । ସେ କୁଆଡ଼େ ଡାଙ୍ଗମୁରୁଡ଼ାରେ କେଉଁ କୋଟିଆକନ୍ଧ ଘରେ ଜନ୍ମ ହୋଇଥିଲେ । ଡାଙ୍ଗମୁରୁଡ଼ାର ପର୍ବତ ଉପରେ ବଣ ତଳେ ଅଛି ଦେବୀ ପୀଠ । ସେଠୁ ଛ' କୋଶ ଉତ୍ତରରେ ପୁରୁଣା ରାଇବିଜି ଓ କୁଲିବାଲି ଟପି ଗୋଟିଏ ସ୍ଥାନ ଅଛି । ସେଠି 'ବିଶ୍ରାମ ନାଳା' ନଇ ଆସି ଫଳଫଲିଆ ନଇରେ ପଡ଼ିଛି । ବିଶ୍ରାମନାଳା ଉପରେ ଆଉ ଗୋଟିଏ ପଥରକୁଡ଼, ସେ ବି ଦୁର୍ଗାପୀଠ, ଦେବୀ ସେଠି ପଥର ପାଲଟିଗଲେ । ସେ ଉତ୍ତରମୁହାଁ ହୋଇ ବାଟ ଚାଲିଥିଲେ । ବଣ ଭିତରେ ଗୋଟିଏ କୋଟିଆ କନ୍ଧ ତାଙ୍କୁ ଦେଖିପକାଇଲା, ପରିଚୟ ପଚାରିଲା । ଦେବୀ ନିଜ ପରିଚୟ ଦେଲେ, ପଥର ପାଲଟିଲେ, କନ୍ଧ ବି ପାଖ ପାହାଡ଼ର ପଥରଟିଏ ହୋଇ ରହିଗଲା । ପୁଣି ଗୁମ୍ମାରୁ ତୁମୁଡ଼ିବନ୍ଧ ଆଡ଼କୁ ଯାଉ ଯାଉ ମଝିରେ ଅଖାପଲମ୍ ପର୍ବତ ଦୁର୍ଗାଙ୍କର ଆଉ ଗୋଟିଏ ଜନ୍ମସ୍ଥାନ ମୁନିଗୁଡ଼ାରୁ କୋଟଗଡ଼ ସଡ଼କରେ ଦୁର୍ଗାପଙ୍ଗା ତ ସହଜେ ଆଉ ଗୋଟିଏ ।

ହିନ୍ଦୁର ଦୁର୍ଗା କନ୍ଧର ଦୁର୍ଗା କି ଧରଣୀ ଖାଲି ନୁହନ୍ତି, ସେ 'ଠାକ୍‌ରାଣୀ', 'ବୋବାନୀ' (ଭବାନୀ), ଟୋକୀ (କୁମାରୀ) । ହିନ୍ଦୁର ସୀତାଦେବୀ କନ୍ଧର 'ଚିତାଗୁଡ଼ି' ବା 'ସୀତା ଠାକୁରାଣୀ', ସେ ତାର ଫସଲର ବିହନ-ଦେବତା, ସେଠି ବି କୁକୁଡ଼ା ବଳି ପଡ଼େ । ବ୍ରାହ୍ମଣ ଆଚାରର ନିଷ୍ଠା ଏଠି ଭଜନ ମୋହର ମାରିଗଲା କନ୍ଧର 'ବୋବାନୀ' ହୋଇ ।

# ହସ

ସମସ୍ତେ ନିଜ ହାତରେ ଚଉଦପା, ସମସ୍ତିଙ୍କ ମୁଣ୍ଡ ଉପରେ ସତେ ଯେମିତି ଗନ୍ଧମାଦନ । ସବୁ ପିତା ଲାଗୁଛି, ମୁହଁ ନେଫେଡ଼ି ରହିଛି, ହସିବା ବାହାନାରେ ଗୋଟାଏ ବିକଟ ମୁଖବ୍ୟାଦାନ । ଥୋଡ଼ାଏ ବିସ୍ଫୋରକ ଶବ୍ଦ । ହସର ଛଳନା ଶୁଣିଲେ ଭୟଙ୍କର ଲାଗେ ।

ହସର ଅସଲ ବସ୍ତୁ ମଣିଷ ନିଜ ପ୍ରତି ନିଜେ ହେବା କଥା ଆଗ । ତା'ହେଲେ ବୋଧହୁଏ ସେଥିରେ ନାହୁଡ଼ ନ ଥିବ । ସେମିତି ତାରି ପ୍ରସାରଣ, ତାରି ଭିତରେ ନିଜକୁ ଦେଖିବା । କିନ୍ତୁ ହସ ନାଁରେ ଆସେ ପରପ୍ରତି ନାହୁଡ଼ ମରା, ରାଗ ଲଙ୍କା ବଟା ପରଠି ବୋଲିଲେ ବି ନିଜ ହାତ ଜଳେ । ତେବେ, ତହିଁରେ ଯଦି ସହାନୁଭୂତି ଓ ବୁଝାମଣା ଥିବ, ସଂକୀର୍ଣ୍ଣତା, ରୋଷ, ଆପଣା ତମ ଓ ବଡ଼ପଣ ଭଲପଣ ପ୍ରଚାର ନ ଥିବ, ସେ ବି ହସ ।

ଶୁଦ୍ଧ ହସ ଏଠି ମହଙ୍ଗା ଜଣାପଡୁଛି । ହେରେସାମି, ହିଙ୍ଗିଡ଼ିଆମି ଅକଥା କହି ରହସ୍ୟ ଉପୁଜାଣ, ଏସବୁ ବି ହସ ନୁହେଁ ।

ହସବିହୀନ କଳା କିଟିକିଟି ମୁହଁ ନେଫେଡ଼ା, ମୁହଁ ଆମ୍ବିଳା, ମୁହଁ ଶୁକୁଟା ରୋଗରୁ ମୁଁ ନିଜେ କଣ ମୁକ୍ତ ? ତା ହୋଇଥିଲେ ତ ମୁଁ ଭଗବାନ୍ ହୋଇଥାନ୍ତି । ମୁକ୍ତି ପାଇଁ ପ୍ରୟାସ-ଚେତନାର ଚିହ୍ନ ବର୍ଣ୍ଣ କିଛି ଥିଲେ ତା'ହେଲେ ବି ବୋଧହୁଏ ଭାବିହେବ । - ବାଟ ଠିକ୍ ।

# ଏକକ

ଜଣେ,- ।

ଏକରୁ ଦୁଇ ନାହିଁ । ସାରା ସଂସାର ଭିତରେ । ''ଉଁ ହୁଁ ! ସାରା ସଂସାର ?'' ଜୟନ୍ତ ଆଖି ବୁଜି ଭାବିହେଲା । ''ସଂସାର କହିଲେ କିଛି ବୁଝେ ନାହିଁ । ସେ ସତ ହେଲେ ମୁଁ ମିଥ୍ୟା । ନା, ସେ ନାହିଁ । ମୁଁ ଅଛି । ଏକା ।''

# ମହାଶ୍ମଶାନ

ଘର ନାହିଁ । ଭଙ୍ଗା କାନ୍ଥ ବି ନାହିଁ । ପାଚିରି ନାହିଁ, ବାଡ଼ ନାହିଁ । ଗଛଟାଏ ବି ନାହିଁ । ମଣିଷ ନାହିଁ । ଗୋରୁ ଗାଈ ବି ନାହାନ୍ତି । ଗୋଟାଏ ଅଛିଣ୍ଡା ଦଣ୍ଡା । ସେଠି ଖାଲି ପୋଡ଼ାଜଳା, ଭଙ୍ଗାତଡ଼ା ଦାଗ ଗୁଡ଼ାଏ । ଧ୍ୱଂସର ଖଣ୍ଡବିଖଣ୍ଡ । ଫମ୍ପା ପବନ ହାଉଳି ହୁଏ । ଖରା ପିଟେ । ମେଘ ଦିନେ ଗଳ ଗଳ ଅଜାଡ଼େ । ଆଶ୍ରା ନାହିଁ ।

କେତେଠି ସେ ମଶାଣିରେ ଲୋକେ ଅରାଏ ଅରାଏ ଫୁଲବଗିଚା ଲଗାଇଥାନ୍ତି, ଆଉ କେଉଁ ପ୍ରକାରେ ହେଲେ ତାକୁ ସଜେଇଥାନ୍ତି । ମଣିଷର ମାଟି କବର ଉପରେ କେଉଁଠି, ବିଶେ କାରୁକାର୍ଯ୍ୟମୟ ଅଟ୍ଟାଳିକା । ସେ କଣ ତାଜ୍‌ମହଲ ? ସେ କଣ ଛତିଆ ଗାଁର କେଉଁ ଦେଉଳ ?

ଟିକିଏ କିଏ ମନେ ପକାଇଦେଲେ ସବୁ ମନଭୁଲା ରୂପଭେକ ତା'ର ମୁହୂର୍ତ୍ତକେ ଉଭେଇଯାଏ । ସାମ୍ନାରେ ଲମ୍ୱେ ହାଉଁଆ ଫୁଙ୍ଗା ଦଣ୍ଡାଟା । ଦୂରରେ ହଜିଯାଏ ।

ମନେ ନ ପଡ଼ିଲେ ସେ ଖାଲି ଗୋଟାଏ ଦଣ୍ଡା, ସେହି ବାଟେ ଆର ଗାଁକୁ ବାଟ । ଖାଲି ଗୋଟିଏ ବଗିଚା, ସେଠି ଫୁଟେ ବଉଳ କି ଲୁରୀଅନା, ଗୋଲାପ କି ଚମ୍ପା । ଖାଲି ଗୋଟିଏ ସୁନ୍ଦର କୋଠା, ହୁଏତ ଖୁବ୍ ଦାମୀ । ଖାଲି ଗୋଟିଏ ସୁନ୍ଦର କାହାଣୀ । ଉତ୍ତେଜକ ଇତିହାସ, ତାକୁ ଈର୍ଷା କରିହେବ ।

ସେମିତି ଗୋଟିଏ କାହାଣୀହିଁ ଭେଟିଥିଲି । କେବେ କେତେ ସାଲରେ କି ତାରିଖରେ ସେଥିରେ ପ୍ରୟୋଜନ ନାହିଁ । ସତେ ଯେମିତି ଆଜି ଦି' ପହରେ ।

ଦାଉ ଦାଉ ଖରାରେ ଦିଶୁଛି କେତେ ଦୂରକୁ ବୋଲି ଧାନ କ୍ଷେତ । ସେଠି ଶୁଖିଲା ମୂଳିର ଖୁଣ୍ଟା । ତାହାରି ମଝିରେ ସଡ଼କ । ସାଇକଲ ଚଢ଼ି ଆମେ ଦିହେଁ ଯାଉ ଥାଉଁ । ''ଯେ ସବୁଯାକ ନରି ମହାଜନଙ୍କ ଧାନ କ୍ଷେତ ଆଜ୍ଞା,'' ନବୀନ ମତେ କହିଲା । ନବୀନ ମୋର ସ୍ଥାନୀୟ ସହକାରୀ । ''ସବୁ କେତେ ?'' ''ଚାରିଶ ଏକରରୁ କମ୍ ହେବ ନାହିଁ ପରା, ସେ କଣ ସାମାନ୍ୟ !''

ଚୁପ୍‌ଚାପ୍ ଚାଲିଥାଏଁ । ପବନ ଉଜାଣି ।

ଆଉ ଖଣ୍ଡେ ବାଟ ପରେ, ନବୀନ କହିଲା ''ଆଉ ଦେଖନ୍ତୁ ଯେ ଆମ୍ବ ତୋଟାମାଳ ଆଜ୍ଞା । ଅନ୍ଧାରୁଆ ଦିଶିବାଯାକେ ଲାଗିରହିଛି । ହେଇ ସେଠି ଜଙ୍ଗଲ ପରି ନଡ଼ିଆ ତୋଟା । ଦେଖନ୍ତୁ, ଯେ ଟି, ଏ ଏକର ଏକର ସବୁ ଭୁଷାଓ୍ୱଲ୍ କଦଳୀ, ଦେଖିଲେ କେଡ଼େ ଚମତ୍କାର । ସବୁ ନରି ମହାଜନଙ୍କର ।''

ପୁଣି ଚୁପ୍‌ଚାପ୍ ।

''ହେଇ ତାଙ୍କ ପୋଖରୀ ହେଲା ଆଜ୍ଞା'', କହୁ କହୁ ପ୍ରକାଣ୍ଡ ପୋଖରୀରେ ବଡ଼ ରୁପା ଛୁରୀ ପରି ଡେଇଁଲା ଗୋଟାଏ ମାଛ, ''ଏମିତି ବହୁତ ପୋଖରୀ ନରି ମହାଜନଙ୍କର। ଖବରକାଗଜରେ ନିଲାମ ଇସ୍ତାହାରରୁ ଅଧେ ତାଙ୍କର ।''

ଗାଁ ପାଖ ହୋଇଗଲା । ମୋର ମନେ ପଡୁଥାଏ ଆମ ଗାଁ, ଆଗେ ଆମ କ୍ଷେତବାଡ଼ି ଆମ ଘର ବୋଲି ଯାହା ଥିଲା, କ୍ରମେ କେତେବେଳୁ ମୁଁ କେବେ ନ ଦେଖିଥିବା ନରି ମହାଜନଙ୍କ ସଙ୍ଗରେ ନିଜର ଆର୍ଥିକ ଅବସ୍ଥାକୁ ତୁଳନା କରୁଥାଏଁ । ଏସବୁ ତାଙ୍କର । ସେ ଜଣେ ଗାଁ ମହାଜନ । ଏ ଅଞ୍ଚଳର ବହୁ ଲକ୍ଷପତି । ମୋ ପରିବାରର ଏକମାତ୍ର ସମ୍ବଳ ମାସକୁ ମାସ ମିଳୁଥିବା ମୋର ଚାରିଶ ଟଙ୍କା ଦରମା । ଆମେ ସେତିକିରେ ସହରରେ ରହି କିଣିଖିଆ । ଯେଉଁଦିନ ତା ସରିଯିବ କି ମୁଁ ଆଉ ନ ଥିବି, ପିଲା ସାତଟି ଓ ତାଙ୍କ ମା' କେମିତି ଚଳିବେ ? ବଡ଼ଟି ଲାଗି ଯାଇଥିବ ବୋଧହୁଏ । କିଏ ଜାଣିଚି ? ଲାଗିଥିଲେ ବି, ଯଦି ମୋରି ପରି ତା ଭାଗ୍ୟ ବି ହେବ । ମାସକୁ ଚାରିଶ ପାଉ ପାଉ ତାକୁ ବି ଲାଗିଯାଇଥିବ ପନ୍ଦର ବର୍ଷ । ଆଉ ନରି ମହାଜନ !

ନବୀନ କହିଲା ''ଏଇ ଘର ଆଜ୍ଞା ।''

ସାମ୍ନାରେ ବଡ଼ ଦୋମାହାଲା କୋଠା । ଆମେ ପଢ଼ିଥିବା କଲେଜ୍ କୋଠାର ଗଢ଼ଣ, ତା'ର ଅଧା ।

ତା ସାମ୍ନାରେ ଏମୁଣ୍ଡୁ ସେମୁଣ୍ଡଯାକେ ବାଟ ଲମ୍ବିଛି । ଫରଚା ସିମେଣ୍ଟ୍ ଛୁଆଣି ହୋଇ ଅଗଣା ପରି । ତା' କରେ କରେ ଗୁହାଳଗୁଡ଼ିକ, ବହୁତ, ମହାଜନ ଗୋରୁମାନଙ୍କୁ ଆପଣା ଆଖି ଆଗରେ ରଖନ୍ତି । ଗୁହାଳ ସରିଲେ ଲମ୍ବ ହୋଇ ପକ୍କା ଧାନ ଅମାରଗୁଡ଼ିକ ।

ମୋ କାମ ଥିଲା ସେହି ଧାନ ଅମାରମାନଙ୍କରେ କେତେ ଧାନ ଥିବ ତାକୁ ଦେଖି ଅନ୍ଦାଜ କରିବା, ତହିଁରୁ କେତେ ଅଂଶ ମାଲିକଙ୍କ ନିଜ ବ୍ୟବହାରରେ ଲାଗିବ ଅନ୍ଦାଜ୍‌ରେ ତାକୁ ହିସାବ କରିବା । ସେତିକି ଅଲଗା କରିଦେଇ ବାକିତକ ସରକାରୀ ନିର୍ଦ୍ଦେଶ ଅନୁସାରେ ବିକ୍ରି କରିବେ ବୋଲି ସରକାରୀ ହୁକୁମ୍ କାଗଜ ପୂରଣ କରିଦେଇ ତାଙ୍କ ଉପରେ ଜାରି କରିଦେବା ।

କଳା, ସରୁ, ଡେଙ୍ଗା, ଚନ୍ଦା, ବୁଢ଼ାଲୋକଟିଏ । ଅଳ୍ପ ବଙ୍କା, ସାନ ମୁହଁ, କେମିତି ବଳା ବଳା ଶାନ୍ତ ଆଖି । ଦୃଷ୍ଟିର ଭଙ୍ଗୀ ଖାଲି ଅପେକ୍ଷା କରି ରହିଲାଭଳି । ସେହି ନଗରି ମହାଜନ ।

ଶୁଣିଲେ ।

ଅମାର ଦେଖାଇବାକୁ ଆପତ୍ତି କଲେ ନାହିଁ ।

ସେ କାମ ସରିଲା । ହିସାବ କରି ଟିପିଲି । ଦୋ ଦୋ ପାଞ୍ଚ ହେଲାପରି କହିଲି- "ଆପଣଙ୍କର ଏଡ଼େ ବଡ଼ କୋଠା, ଟିକିଏ ଦେଖନ୍ତି ଆଜ୍ଞା ।"

ସେଥିରେ ବି ଆପତ୍ତି ନାହିଁ ।

ପିଣ୍ଡାଏ ପିଣ୍ଡାଏ ତଳ ମାହାଲା ବୁଲି ଦେଖାଗଲା । କିଏ ସବୁ ଅଛନ୍ତି ତେଣେ । ଗଲି ନାହିଁ । ତା'ପରେ ଉପର ମାହାଲା । ମୁଁ ନ କହୁଣୁ ସେ ପ୍ରତି ବଖରା ଖୋଲି ଦେଖାଉଥାନ୍ତି । ମଣିଷ ନ ଥିଲେ । କେଉଁଠି କେଉଁଠି ଖଟ ସିନ୍ଦୁକ ଏଣୁ ତେଣୁ । କେତେ ଘର ଖାଲି । ସବୁ ଘରେ ଅଳନ୍ଧୁ ଅଳିଆ, ଯେପରି କେଉଁକାଳୁ ଓଳିଆ ହୋଇ ନାହିଁ ।

"କ୍ଷମା କରିବେ ପଦେ କହିବି ଆଜ୍ଞା, " ଆଖି ଯୋଡ଼ିକ ସେମିତି ଅପେକ୍ଷା କରି ମୋ ମୁହଁକୁ ଅନାଇଁ ରହିଲା । କହିଲି "ଆପଣ ଏତେ ବଡ଼ ୍କ । ଏଡ଼େ ସୁନ୍ଦର ଏଡ଼େ ବଡ଼ କୋଠା, ଆଜିକାଲି ତୋଳିଲେ ଅଢ଼େଇ ଲକ୍ଷ ଟଙ୍କାରୁ କମ୍‌ରେ ହେବ ନାହିଁ । କିନ୍ତୁ କଣ ହୋଇ ପଡ଼ିରହିଛି ଏ ଘର ! କେବେ ଖୋଲା ବି ହେଉ ନାହିଁ । ଓଳିଆ ହେବା ତ ଦୂର କଥା !"

ସେହି ସତୁରି ପଚସ୍ତରି ବର୍ଷର ଦେହ ହଠାତ୍ କୋହରେ ଝାଙ୍କି ହୋଇଗଲା । ମୁହୂର୍ତ୍ତକେ ସବୁ ଗଲା ବଦଳି । ସେ ପିଲାଙ୍କ ପରି କାନ୍ଦିଲେ । କହିଲେ– "ଆଉ କାହା ପାଇଁ ଆଜ୍ଞା ? କାହା ପାଇଁ ଘର ଓଳିଆ ହେବ, ସଜା ହେବ । ଗୋଟି ଗୋଟି ହୋଇ ଛ' ପୁଅ ଗଲେ, ଛ' ବୋହୂ ଗଲେ, କୋଡ଼ିଏଟି ନାତିନାତୁଣୀ ଗଲେ । ରହିଛି ତିନି ବର୍ଷର ନାତି ପିଲାବକଟେ, ଡରରେ ତା ମାମୁଘରେ ଥୋଇଛି । ତାକୁ ସମସ୍ତେ କଲ୍ୟାଣ କରନ୍ତୁ ଆପଣମାନେ । ତାକୁ ଅବା କି ଆଶା କି ଭରସା ରଖିଛି ମୁଁ । ସମସ୍ତେ ତ ଗଲେ, ମୁଁ ଚଉକିଆ ହୋଇ ସମ୍ପତ୍ତି ଜଗିଛି କାହା ଲାଗି ।"

ମୋ ନିଶ୍ୱାସ ବନ୍ଦ ହୋଇ ଆସିଲା ।

ତୁନି ହୋଇ ପଳାଇ ଆସିବାକୁ ତର ସହିଲା ନାହିଁ ।

# ଦଉଡ଼

ସମୁଦ୍ରର ବାଲିପନ୍ତା ଉପରେ ସେ ଗୋଟାଏ ଲମ୍ବ ଲଟା, ତା ଚେର ପାଇଁ ମାଟି ନାହିଁ, ଖାଲି ଘୁଙ୍ଗା ବାଲି, ମିଠା ପାଣି ନାହିଁ । ସମୁଦ୍ରର ଉଛୁଳା ଲୁଣିପାଣି, ତଥାପି ସେ ବି ଗୋଟିଏ ଶାଗୁଆ ଛନଛନିଆ ଉଦ୍ଭିଦ । ନାଁ ତା'ର ଗୁଡ଼କଙ୍କ ।

କିଏ କାହିଁକି ତାକୁ ଚାହୁଁ ଚାହୁଁ ଗୁଡ଼ କଥା ଭାବିଥିଲା ତା ଜଣା ନାହିଁ, ଝିଙ୍କକାଠି ପରି ଠିଆ ଠିଆ ଲମ୍ବ ଲମ୍ବ, ଶୁଖିଲା ବାବୁଲ୍ କଣ୍ଟା ପରି ସରୁ ସରୁ ଆଉ ନିରସ, ଆକୃତିରେ କଦମ୍ବ ଫୁଲ ପରି, ଆକାରରେ ଫୁଟ୍‌ବଲ୍, ସେହି ତା'ର ଫୁଲ, କେତେବେଳେ କଢ଼ ଧରେ କେତେବେଳେ ଫୁଟେ ଆଉ ଶୁଖେ, ତା'ପରେ ଗୋଟାଛାଏଁ ସେହି କଣ୍ଟାଳିଆ ପିଣ୍ଡୁଳା କେତେବେଳେ ବୃନ୍ତଚ୍ୟୁତ ହୁଏ, ଏଣେ ତେଣେ ଧାଇଁବୁଲେ, ଗୁଡ଼କଙ୍କ କହିଲେ ଆଖି ଆଗରେ ଉଭା ହୁଏ ସେହି ଶୁଖିଲା ଟାଆଁସିଆ ସରୁ ସରୁ କଣ୍ଟା କାଠିଖଞ୍ଜା ଫୁଲଟିମାନ । କଣ୍ଟାମୁନରେ ଭରାଦେଇ ଭୂଇଁ ଉପରେ ଠିଆ ହୋଇଥାନ୍ତି, କେତେବେଳେ ତାଙ୍କ ଦେହରେ ଲାଗେ ସାମାନ୍ୟତମ ପବନର ହାବୁକା, ହଠାତ୍ ଦୌଡ଼ନ୍ତି । ଟଳି ଟଳି ଦୌଡ଼ିଲାବେଳେ ଅନାଇଁଲେ ଲାଗେ ସତେ ଅବା ସେଗୁଡ଼ାକ କଣ ଜୀଅନ୍ତା ପ୍ରାଣୀ, ନିଜ ଇଚ୍ଛାରେ ନିଜ ନିଷ୍ପତ୍ତି ପ୍ରକାରେ ଦୌଡ଼ନ୍ତି ଅଥବା ବିଶ୍ରାମ କରନ୍ତି । ଏଠିକି ଯାଆନ୍ତି କି ସେଠିକି ଯାଆନ୍ତି, ପରାଧୀନ ନୁହନ୍ତି, ସ୍ୱାଧୀନ ।

ଦି'ପହର ଗଡ଼ି ଆସୁଥାଏ । ନିଛାଟିଆ ବାଲିପନ୍ତା । ଶାଗୁଆ ସମୁଦ୍ର ମଠେଇ ମଠେଇ ଗଡ଼େଇ ଲାଗିଥାଏ କାଚପରି ଢେଉ । ମୁଁ ଯେଉଁଠି ବସିଥାଏ ସେପଟେ ଚଢ଼େଇଟିଏ ବି ଉଡୁ ନ ଥାଏ । ଖାଲି ବାଲି, ପାଣି, ଉପରେ ଆକାଶ, ଦ୍ରଷ୍ଟା ଏକା ମୁଁ ।

ସେତିକିବେଳେ ମୁଁ ଲକ୍ଷ୍ୟକଲି ସେମାନଙ୍କୁ । ବାଲିବନ୍ତ ଉପରେ ଧାଡ଼ି ହୋଇ ସାତଟି ଗୁଡ଼କଙ୍କ ଫୁଲ । ସେମାନେ ସତେକି ନିଶ୍ୱାସ ରୋଧି ଉତ୍ସୁକ ହୋଇ ଅପେକ୍ଷା କରିଥିଲେ ସେଉଠୁ କାହା ନିର୍ଦ୍ଦେଶ ପାଇଲେ କେଜାଣି ଦୌଡ଼ିବାକୁ ଆରମ୍ଭ କଲେ । ଭାରି ଉତ୍ସାହ ଲାଗୁଥାଏ ସେ ଦଉଡ଼ ଦେଖିବାକୁ । ଏକା ସମୟରେ ଏକାଠି ସେମାନେ ବାହାରିଛନ୍ତି, ସତେ ଯେମିତି ଏକା ଦିନ ଏକା ମୁହୂର୍ତ୍ତରେ ଏ ସଂସାରରେ ଜନ୍ମ ହୋଇଥିବା ସାତଟି ଛୁଆ । ଏକା ଜୀବନ-ଦ୍ୟୋତନାରେ ପ୍ରତ୍ୟେକେ ପରିଚାଳିତ, ସତେ ଅବା ସମାନ

ସୁଯୋଗ ସୁବିଧା ସମସ୍ତିଙ୍କର । ସେମିତି ସମସ୍ତଙ୍କ ସାମ୍ନାରେ ପଟା ପରି ବାଲି ଲମ୍ବିଛି, ଅଟକାଇବାକୁ କିଛି ନାହିଁ ।

ଅଳ୍ପ ବାଟ ଯାଇ ଗୋଟାଏ ମାଦଳ ହୋଇ ପଡ଼ିରହିଲା । ଆଉ ଟିକିଏ ଗଲାରୁ ଦି'ଟା ଅଲଗା ଅଲଗା ହୋଇ ଗଡ଼ି ଗଲେ ସମୁଦ୍ର ପାଣିକି, ଆଉ ଖଣ୍ଡେ ଆଗରେ ଆହୁରି ଗୋଟାଏ ଅଟକିଗଲା । ଆହୁରି ଚାଲିଥାନ୍ତି ତିନିଟା, ହଠାତ୍ ଗୋଟାଏ ଉପରକୁ ଉଠିଗଲା ଆଉ ଶୂନ୍ୟେ ଶୂନ୍ୟେ କୁଆଡ଼େ ଉଡ଼ି ଉଡ଼ି ଚାଲିଗଲା । ଦଉଡ଼ୁଥାନ୍ତି ଦି'ଟା, ଗୋଡ଼ିଆଗୋଡ଼ି, ଆଗ ପଛ, ଜଣେ ଆଉ ଜଣକୁ ଛୁଏଁ ନ ଛୁଏଁ । ଆଗଟାର କଣ ବିଗିଡ଼ିଗଲା ସେ ଅଟକିଗଲା । ଚାଲିଥାଏ ପଛଟା ଟଳିଟଳିକା, ସାତଜଣ ବାହାରିଥିଲେ, ଚାଲିଛି ସେ ଏକୁଟିଆ । କେହି ତା'ର ପ୍ରତିଦ୍ୱନ୍ଦ୍ୱୀ ବି ନାହାନ୍ତି ।

ହଠାତ୍ ପଛରୁ ବିଜୁଳି ବେଗରେ ଧାଇଁ ଧାଇଁ ଆଇଲା ଆଗେ ଅଟକି ପଡ଼ିଥିବା ଭିତରୁ ଗୋଟାଏ । କି ପରିବର୍ତ୍ତନ ତା'ଠିଁ । କଳ୍ପନାତୀତ । ଅଳ୍ପ ସମୟ ପରେ ଆଗର ଗୁଡ଼କଙ୍କୁ ଟପି ଆଗେ ଆଗେ ଦୌଡ଼ିଲା ।

କେଉଁଠି ଏ ଦଉଡ଼ା ଦଉଡ଼ିର ଶେଷ ମୁଁ ଜାଣିପାରିଲି ନାହିଁ । ଆଜି ଆଗ କାଲି ପଛ, ଆଜି ତଳେ କାଲି ଉପରେ ।

ଚାହିଁ ରହିଥିଲି । ସମୁଦ୍ର ଫୁଲସ୍ତରା ମାରି ଉଠିଲା, ଲହଡ଼ି ଗଡ଼େଇଲା । କୂଳ ଉପରକୁ, - ଆହୁରି ଉପରକୁ । ଗୁଡ଼କଙ୍କମାନଙ୍କ ଦଉଡ଼ ଖେଳର ବାଲି ବି ଗଲା ବୁଡ଼ି ।

ଗୋଟାଏ ଯୁଗ ଶେଷ ହେଲା ।

# ତତ୍ତ୍ୱ

ଦାଉ ଦାଉ ଖରାରେ ଛୁରିଟା ଝକ୍ କଲା, ତା'ପରେ ଗୋଟାଏ ଛାତିଫଟା ଚିତ୍କାର । ପିଚ୍ ପିଚ୍ ରକ୍ତ । ସଙ୍ଗେ ସଙ୍ଗେ ସମବେତ ଜନତା ଗର୍ଜନ କରି ଉଠିଲେ । ସବୁ ବାଜା ବାଜି ଉଠିଲା । ମଣିଷ ଖୁବ୍ ସ୍ୱଷ୍ଟ ପରିଷ୍କାର ଭାବରେ ପ୍ରକଟ କଲା ନିଜ ସ୍ୱରୂପକୁ, ଜଙ୍ଗଲଯାକ ଯେତେ ପ୍ରକାର ଜନ୍ତୁ ଅଛନ୍ତି ମନ କଲେ ସମସ୍ତିଙ୍କଠୁଁ ଆହୁରି ହିଂସ୍ର ଆହୁରି ଟାଣୁଆ ଜନ୍ତୁ ସେ ମଣିଷ । ସେଇଥିପାଇଁ ସେ ସମସ୍ତିଙ୍କୁ  ଜିତି ଦୁନିଆର ରାଜା ହୋଇଛି । ଖାଲି ଏତିକି, - ତାର ବଳ ମେଣ୍ଟରେ । ମନ କଲେ ମେଣ୍ଟ ସେ ଗଢ଼ି ପାରେ ।

ସେମାନେ ଦେଲେ ତାଙ୍କ ସମାଜର ପ୍ରଥମ ନରବଳି । ସର୍ଦ୍ଦାର ଉଡୁରାଙ୍ଗା ନିଜର ବାର ବର୍ଷର ଝିଅକୁ ନିଜ ହାତରେ ବଳି ଦେଲେ ଧରିତ୍ରୀ ଦେବୀଙ୍କୁ ସନ୍ତୋଷ କରିବେ ବୋଲି । ପ୍ରଥମ ଚୋଟ ତାଙ୍କରି ।

ଢେଉ ପରି ପାହାଡ଼ ଦିଗନ୍ତକୁ ଲାଗିଛି । ତା ଏକରେ ନିବିଡ଼ ଶାଳବଣ । ବଣ ଭିତରେ ପାହାଡ଼ର ଉପତ୍ୟକାରେ ଅରାଏ ଖୋଲା ଜାଗା । ନଈ କୂଳ । ସେଇଠି ପୋତା ହୋଇଛି ମେରିଆ ଖୁଣ୍ଟ । ଖୁଣ୍ଟରେ ବନ୍ଧା ହୋଇଛି ନିଙ୍ଗୁଲୀର ଶରୀର ।

ପ୍ରଥମ ଚୋଟ ପରେ ସବୁ ଗୋଳମାଳ ହୋଇଗଲା । ସମସ୍ତେ ଚାହାନ୍ତି ସେହି କଅଁଳ ଶରୀରରୁ ଛେଲାଏ କାଟିନେବାକୁ । ସେ ସମୁଦାୟଟା ଭୋଗ, ଦେହର ପ୍ରତ୍ୟେକ ଅଂଶ । ସେମାନେ ତାକୁ ଘରେ ପୋତିବେ, ଜମିରେ ପୋତିବେ, ଭଲ ମାଡ଼ିଯିବ ।

ଗୋଳମାଳ ସରିଗଲା । ଖାଲି ଖୁଣ୍ଟ; କିନ୍ତୁ ଲହୁଲୁହାଣ ହୋଇ ଦେହର ଖଣ୍ଡେ ଖଣ୍ଡେ ଦୂରରେ ପଡ଼ିରହିଛି । ଜାଗାଟା ଚକଟାଚକଟି, ଯେମିତି ହାତୀପଲ, ବାଘ୍ହାପଲ ଚାଲିଯାଇଛନ୍ତି । ଏଠି ସେଠି ପଡ଼ିଛି ରକ୍ତ, ଫୁଲ, ହଳଦୀ, ଆଉ କେତେ ସ୍ମାରକ । ଦୂରରୁ ଜଙ୍ଗଲ ଭିତରୁ ଏପଟୁ ସେପଟୁ ବାଜା ଆଉ ହର୍ଷ ଚିତ୍କାର ଶୁଭୁଛି । ନିଜ ନିଜ ଗାଁରେ ଓ ଗାଁକୁ ଯାଉ ଯାଉ ସେମାନେ ଉତ୍ସବ ପାଳୁଛନ୍ତି, କାରଣ ସେମାନେ ଘେନି ଯାଇଛନ୍ତି ମେରିଆ ବଳିର ଶରୀରର କୌଣସି ଅଂଶ । ସାନ ହେଉ କି ବଡ଼ ହେଉ ।

ଉଡୁରାଙ୍ଗା ପ୍ରକୃତିସ୍ଥ ହେଲା ସଞ୍ଜ ପହରେ । ସେ ଆଉ ସମାଜପତି ନୁହେଁ, ପୁରୋହିତ 'ଜାନି' ନୁହେଁ, କ୍ଳାନ୍ତ ଦର୍‌ହବୁଢ଼ା ମଣିଷ, ଗୋଟିଏ ବାପ । କାନ୍ଦଣା ଶୁଭୁଛି । ନିଙ୍ଗୁଲୀ

ନାହିଁ । ସେ ବି ବାହୁନିଲା । କେତେ ଘରେ ବାହୁନା । କେତେଠିଁ କେତେ ଫେରି ନାହାନ୍ତି । ଜହ୍ନ ଉଇଁଛି ।

ଚିର୍ଚ୍ଚିରେଇ କାନ୍ଦିଲା - ''ନିଙ୍ଗୁଲୀ-''

ଘଞ୍ଚବଣ ଠିଆ ହୋଇଛି, ହାଲୁକା କୁହୁଡ଼ିଆ ରାତିରେ ତା ଛାଇ ଦିଶୁଛି ଆହୁରି ବଡ଼ । ଛାଇଛାଇଆ ପାହାଡ଼ ଠିଆ ହୋଇଛନ୍ତି ।

ତା'ର କାନ୍ଦଣାର ପ୍ରତିଧ୍ୱନି ବିକୃତ ହୋଇ ବଡ଼ ହୋଇ ଚାରିଆଡୁ ଲେଉଟି ଆସିଲା ତା'ରି ପାଖକୁ ।

ଟିକିଏ ବେଳ ଗଲା । ଗୋଟିକିଆ କୁତ୍ରାଟିଏ ବୋବେଇଲା । ପୁଣି ତୁନି ହେଲା ।

ବକ ପରି ଉତ୍ତୁରଙ୍ଗା ଦୂରକୁ ଅନାଇଁ ରହିଲା ।

ସତେ ଯେମିତି ସେ ତଥାପି ଆଶା କରିଛି ଯାହା ସେ ନିଜେ ନିଜ ହାତରେ ଧ୍ୱଂସ କରି ସାରିଛି, ଆଉ କିଏ ତାକୁ ଜୀଆଇ ଦେଇଛି ସେ ପୁଣି ଲେଉଟି ଆସିବ ।

ଦାଣ୍ଡରେ ପଡ଼ି ହାଟରେ ଗଡ଼ଗଡ଼ୋଉଛି ଜୀବନର ତତ୍ତ୍ୱମାନ,ହଜାର ହଜାର ମଣିଷ ହଜାର ହଜାର ଥର ଲେଖି ଯାଇଛନ୍ତି, କହି ଯାଇଛନ୍ତି ତତ୍ତ୍ୱ କଥା, ଏ ଜୀବନ କଣ, କାହିଁକି ଯାର ସୃଷ୍ଟି, କଣ ଯାର ପରିଣତି, - ଏମିତି କେତେ କଥା । ଗଲାଣି ବିତି ଅକଳନ ସମୟ ।

ସେମାନେ ନିଶ୍ଚୟ ଜାଣିଥିଲେ ସେସବୁ ତତ୍ତ୍ୱ ଠିକ୍ । ଜାଣିଥିଲେ ମାନେ ଜାଣିଥିଲେ ।

ସେମାନେ ଲୋଡ଼ିଥିଲେ ଏ ଦୁନିଆର ମଙ୍ଗଳ ହେଉ । ତେଣୁ କହିଦେଇଗଲେ, ଲେଖିଦେଇଗଲେ, ଯେପରି ସେମାନେ ନ ଥିଲେ ବି ତାଙ୍କ କଥା ରହିଥିବ । ଜଗତକୁ ଆଲୁଅ ଦେଉଥିବ ।

ସେମାନେ ଗଲେ । ବହି ବହି ହୋଇ ରହିଲା । ତତ୍ତ୍ୱ ରହିଲା ଅବୁଝା । ପାଣି ଖୋଜିଲା ତଳ ପଉନ, ବୋହିଗଲା ।

ମଣିଷ ଏବେ ବି ଭୁଲ୍ କରନ୍ତି, କଳି କରନ୍ତି, ନିଜକୁ ଆଉ ପରକୁ କଷ୍ଟ ଦିଅନ୍ତି, ଜୀବନର ତତ୍ତ୍ୱ ଖୋଜନ୍ତି, ଆଲୋଚନା କରନ୍ତି, ଲେଖନ୍ତି ।

# ମହାନାଟକ

ବଡ଼ ସହର । କେଠା, ଗହଳି, ଗତି, ଶବ୍ଦ । ସତେ ଯେମିତି ସବୁବେଳେ ଏକା ପରି । ବେଶି ଭାଗ ଲୋକଙ୍କ ମୁହଁ ଭଙ୍ଗୀରେ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ । ସେମାନେ କୌଣସି ଧନ୍ଦାରେ ଲାଗିଛନ୍ତି ବା ଚାଲିଛନ୍ତି । ସଞ୍ଜରେ ଆମୋଦାଳୟ କି ସଭାଘରକୁ ଯିବା ବାଟରେ ବି ମୁହଁର ଛାଇଆଲୁଅ ଉଦ୍ଦେଶ୍ୟରହିଁ ପ୍ରତୀକ । ବେଳେ ବେଳେ ରାସ୍ତାରେ କେଉଁ ଘଟନା ଘଟିଯାଉଛି । ଲୋକଗହଳି । ପୁଣି ଫାଟିଯାଉଛି । ଚାଲିଛି ସୁଅ ଅବ୍ୟାହତ । ଗଢ଼ା ଲାଗିଛି, ଭଙ୍ଗା ଲାଗିଛି । ମଣିଷ ଜୀବନର ସବୁ କାମ ଲାଗିରହିଛି । ସେହି ଦୋକାନ ବଜାର ଶରୀର ଘର ସଜାସଜି, ନାନା ପ୍ରକାର ଶ୍ରମ । ପରିବର୍ତ୍ତନ ନାହିଁ ବୋଲି ଜଣାପଡ଼େ । କାରଣ ଏଠି ବ୍ୟକ୍ତିର କଳନା ଦି'ଦିନିଆ । କଳନା କରନ୍ତି ବ୍ୟକ୍ତି ନିଜେ, ତା' ଚାରିକରେ ତା'ର ଚିହ୍ନା ଲୋକମାନେ, ନିଜେ ସେମାନେ ଆଉ କୁଆଡ଼େ ହଜିଯିବାଯାକେ ।

ମଝିରେ ଉଚ୍ଚ ଗମ୍ବୁଜ ଉପରେ କେଉଁ କାଳର ବଡ଼ ଘଣ୍ଟାଟିଏ, କିଏ ତାକୁ ମରାମତ କରି ଠିକ୍ ରଖେ ଜଣା ନାହିଁ । ଠିକ୍ ଚାଲିଥାଏ । କଣ୍ଟା ଯେତେବେଳେ ଆଗେଇଯାଏ ସେ ଆଗେଇଯାଏ, ଅଣବାହୁଡ଼ା । ପାଞ୍ଚଠିଁ ପାଞ୍ଚ ପ୍ରକାର ପାଞ୍ଚଟି ଘର । ବହୁତ ହାତ ହେଲାଣି ଶହେ ବର୍ଷରେ, କିନ୍ତୁ ଆମର ଧେୟ ଖାଲି ଦଶଟି ବର୍ଷ । ବିଭିନ୍ନ ପରିବର୍ତ୍ତନ, ତଳ ଉପର ହୋଇ, କିଏ କଣ ହୁଏ, ପୁଣି କୁଆଡ଼େ ଯାଏ । ମଣିଷ ଜାତି ଆପଣାର ସ୍ୱରୂପ ପ୍ରକଟ କରେ. ଚରିତ୍ରରେ, ଆଚରଣରେ, ଅବସ୍ଥାରେ । ଭଲ ମନ୍ଦ, ସୁଖ ଦୁଃଖ, ନୀତି ଅନୀତି । କାର୍ଯ୍ୟ ଅନୁସାରେ ଭାଗ୍ୟର ଠିକ୍ ଖିଅ ମିଳେ ନାହିଁ । ଯାହା ଯାହାର ହେଉଛି ବୋଲି ଆଖିରେ ପଡ଼େ, ସେହି ହିସାବରେ ତାର ଭବିଷ୍ୟତ୍ ଘଟେ ନାହିଁ । ଲୋକ କାମ କରୁଥାଏ, ନୀତି ଅନୀତି, ଭଲ ଅସାର, ଫଳ କଣ ପାଏ ତା ଛବି ହୁଏ ଭିନେ ।

କିନ୍ତୁ ଫାଙ୍କା ପଡ଼େ ନାହିଁ କେଉଁ ସ୍ଥାନ, ବ୍ୟକ୍ତି ଭିନେ, ସହର ସେହି ଏକା ।

ମଣିଷର ପୁରୁଣା ପ୍ରକୃତି, ଦୋଷ ଗୁଣ, ସ୍ୱାର୍ଥ ଲାଗି ପରର ତଣ୍ଟି ଚିପା, ରିପୁ ତାଡ଼ନାରେ କେତେବେଳେ ଅନ୍ଧାରେ ଅନ୍ଧାରେ କେଉଁ କାମ, ସୁଖ ଖୋଜି ମିଳେ ସାମୟିକ ଉତ୍ତେଜନା, ମଦ, ଗଞ୍ଜେଇ, ପହିଜ ଦେଖାଣିଆଁ ଗପ ଓ ଭେକ, ନାନା ପ୍ରକାର ଆସକ୍ତି, କାମନା, କାହାର କେତେବେଳର କେଉଁ ପ୍ରକାରର ଭକ୍ଷ୍ୟ ହୋଇ କିଏ କି ଦଶା ଭୋଗେ । କେତେ କଢ଼ ଗୋଡ଼ରେ ଦଳା ହୁଏ ।

ଯେ ବା ଉଠୁଥାନ୍ତି ହାବେଳି ପରି, ହଠାତ୍ କାହାର କେଉଁ ଦୁଃଖ ପଡ଼େ । ଛୁଆଦିନେ, - ପିତୃମାତୃ ବିୟୋଗ, ଘରର ଧ୍ୱଂସ, ନିଜର ଚେର ଓପଡ଼ା ।

ଯୌବନ ଦିନରେ - ସେହିପରି, ପୁଣି, -ପ୍ରେମରେ ନୈରାଶ୍ୟ, ସାଫଲ୍ୟର ଧ୍ୱଂସ, ରୋଗଲାଗି ଅଳସପଣ ।

ବଡ଼ ଦିନେ - ସନ୍ତାନ, ପତ୍ନୀ, ପ୍ରିୟଜନ ପୋଷକ, ଏମାନଙ୍କୁ କାହାରି କାହାରିକି ବିପତ୍ତି, କାହା ବିୟୋଗ, ସ୍ୱାର୍ଥହାନି, ନିରାଶ୍ରୟତା ।

ସବୁଦିନେ, - ରୋଗ, ଅପମୃତ୍ୟୁ, ହଠାତ୍ ଓଲଟପାଲଟ, ଦୁର୍ନାମ, ଅର୍ଥାଭାବ, ଅକ୍ଷମତା ଇତ୍ୟାଦି ।

ପାଞ୍ଚଜଣଙ୍କ ତୁଳନା କଲେ ପରସ୍ପର ତୁଳନାରେ କିଏ ଭଲରେ ଅଛି କିଏ ଦୁଃଖରେ ଅଛି ଏ ଅବସ୍ଥା ସବୁବେଳେ ବଦଳୁଥାଏ, କାହାର କେଉଁ ଦୁଃଖ । ସୁଖ ଅତ୍ୟନ୍ତ ସାମୟିକ । ଯେ ନଗଣ୍ୟ ଥାଏ ଏପରି ହୁଏ ହଠାତ୍ ସେ ମଣିଷରେ ଗଣା ହୁଏ, ଲୋକେ ତାଙ୍କୁ ଖୋଜିବାକୁ ଆସନ୍ତି । ଯେମିତି ଗୁଡ଼ିଏ ଚଢ଼େଇ ଉଡ଼ିବୁଲୁଛନ୍ତି କେଉଁ ଗଛରେ ବେଶି ଫୁଲ ଫଳ ଖୋଜି ଖୋଜି ସେଇଠି ବସୁଛନ୍ତି, ତା'ପରେ ଗଛ ଶୁଖିଯାଉଛି କି ମୁର୍କୁଟି ଯାଉଛି ସେମାନେ ଉଡ଼ିଯାଉଛନ୍ତି ।

ସବୁବେଳେ ଲାଗେ, ଏଇ ପଟ୍ଟଭୂମି ହିଁ ବଡ଼ । ମଣିଷ କିଛି ନୁହେଁ ।

ଏହାରି ଭିତରେ ଗତି କରି ଆସିଥିଲା କୁଆଡ଼ର କାହୁଁ ଅଇଲା ମଣିଷଟିଏ । ସତେକି ଘାଇଜଗା ଟୋକା କପିଳେନ୍ଦ୍ର । କୁଲି, ଦୋକାନୀ, ବ୍ୟବସାୟୀ, ରାଜନୀତି ନେତା, ନିନ୍ଦନୀୟ ପତୁର୍, ଘର ଧ୍ୱଂସ; କିନ୍ତୁ ପୁଣି ସେ ଖାପି ଗଲା । ଏହାରି ଭିତରେ କଳିନେଲା ସେ ବହୁତ ମଣିଷଙ୍କୁ । ବହୁତ 'ମୂଲ୍ୟକୁ' ।

# ଅନାବନା

ଗୋଟିଏ ଲୋକ । ଏକରୁ ଦୁଇ ନାହିଁ । ସାରା ସଂସାର ଭିତରେ ଖାଲି ସେହି ଜଣେ । ଆର୍‌ସିରେ, ସ୍ଥିର ପାଣିରେ, କାହା କାଚ କବାଟରେ, ଆଉ କାହା ମଟରଗାଡ଼ି ଦେହରେ ଯେତେଠି ରୂପ ପ୍ରତିଫଳିତ ହୁଏ ସେ ତ ତାକୁହିଁ ଦେଖେ ସେଠି, ଆଉ ଯେଉଁଠି ରୂପ ପ୍ରତିଫଳିତ ନ ହୁଏ, ଯେମିତି ମସିଆ ପଡ଼ିଥିବା ଚୂନବୋଳା କାନ୍ଥରେ, ଘାସରେ, କି ଆକାଶରେ, ସେଠି ବି ସେ ।

ଏଇ ଯେମିତି, କାନ୍ଥରେ ଝୁଲୁଛି ଯେଉଁ କ୍ୟାଲେଣ୍ଡରର ଛବି, ତା'ର ଅଧଲଙ୍ଗଳା ଦେହରେ । ବହୁତ ବେଳୁ ଆଖି ଚରୁଥିଲା ତା'ରି ଉପରେ ।

ଅବନିର ଚିନ୍ତା ଭାଙ୍ଗିଗଲା । କପାଳର ଝାଳ ପୋଛିଲା । ହାତକୁ ଦି' ପଟକୁ ଫଡ଼କେଇ ଟାଙ୍କିଲା, ନା ସେ କିଛି କୁଣ୍ଢେଇ ଧରିବାକୁ ଚାହେଁ ନାହିଁ । ଭିଡ଼ିମୋଡ଼ି ହେଉଛି । ହାତରେ କଲମ । ସାମ୍ନାରେ କାଗଜ, ଗାରଟିଏ ବି ପଡ଼ି ନାହିଁ ।

ସେତିକିବେଳେ ମନେ ପଡ଼ିଗଲା -''ଗୋଟିଏ ଲୋକ-'' ବାଃ ! ଏଇ ତ ମିଳିଗଲା ଗୋଟାଏ ଦର୍ଶନ । ମଣିଷ ଜୀବନଯାକ ଚାରିଆଡ଼େ ଖାଲି ନିଜକୁ ଦେଖୁଛି, ନିଜକୁ ଖୋଜୁଛି, ନିଜ ପଛରେ ଧାଉଁଛି । ତା ପକ୍ଷରେ ସେହି ଗୋଟିଏ ଲୋକର ନାଁ ଶ୍ରୀ ଅବନୀନ୍ଦ୍ର ନାଥ ତ୍ରିପାଠୀ ।

ମନେ ପଡ଼ିଗଲା, ତା'ର ଚିରାଚରିତ ଭୀଷ୍ମ ପ୍ରତିଜ୍ଞା, ଲେଖିବି । ସାହିତ୍ୟ ତିଆରି କରିବି । ଉପନ୍ୟାସ । ଗଳ୍ପ । ଛାଞ୍ଚରେ ଢାଳି ଦେଇଯିବି ମୋର ଜୀବନଯାକର ଅନୁଭୂତି ।

ତାଚ୍ଛିଲ୍ୟ କଲା ପରି ନିଜ ଭିତରେ ତା'ର ଜବାବ୍ ଦେଲା, -କି ଅନୁଭୂତି ? କାହା ବିଷୟରେ କଣ ଅବା ନୂଆ କଥା ।

ଗଦା ଗଦା ଲେଖା ହୋଇଛି, ପାହାଡ଼ ପାହାଡ଼ । ଏକା କଥା କେତେ ଥର କେତେ ଢ଼ଙ୍ଗରେ କେତେ ଭାଷାରେ କେତେ ଯୁଗରେ ପୁଣି ସେଇଆ । ସେ କଣ ସୃଷ୍ଟି ?

ପୁଣି ପୁଣି ଜନ୍ମ ହୋଇଛନ୍ତି ମଣିଷ, ପ୍ରତିଥର ଲୋକେ ଭାବିଛନ୍ତି - ନୂଆ ଏଇଟି, ଏକଦମ୍ ନୂଆ । ଝରକା ସେପାଖେ ଦିଶୁଛି ନୂଆ ଜାମା ପିନ୍ଧି ନାଚି କୁଦି ଚାଲିଗଲେ

ସାନ ସାନ ଝିଅଗୁଡ଼ିଏ । ସେମାନେ ଆଖିରୁ ଅନ୍ତର ହେବାଯାକେ ଅବନି ଅନାଇଁ ରହିଥାଏ । ଚିହ୍ନେ ନାହିଁ । କାହିଁକି ଅନେଇଛି ଜାଣେ ନାହିଁ । କ୍ଷୀଣ ହୋଇ କେତେବେଳେ ଲାଗୁଥାଏ, ତାଙ୍କ ସଙ୍ଗରେ ଚାଲିଛି ସାନ ଅବନିଟିଏ । ଆଜି ସେମାନଙ୍କର ରଜ, ନା ନା, ରଜପର୍ବର ସକାଳ ନୁହେଁ, କୁଆଁର ପୂନେଇଁ ସଞ୍ଜ । କେତେବେଳେ ଲାଗୁଥାଏ, ସେମାନେ ଟିକି ଟିକି ନୁହନ୍ତି, ବଡ଼ ବଡ଼, କଲେଜ୍ ହଷ୍ଟେଲକୁ ଆସିଛନ୍ତି ନୂଆ ଝିଅମାନେ । ବର୍ଷା ଛାଡ଼ିଛି, ମୁହଁ ସଞ୍ଜବେଳେ ସେମାନେ ପଢ଼ିଆରୁ ଲେଉଟୁଛନ୍ତି, ଅଙ୍କ ଛାଡ଼ି ସେ, ପଛେ ପଛେ, ଅନ୍ୟମନସ୍କ ହୋଇ ଓଟାରି ହୋଇ ବୁଲୁଛି ।

ଧ୍ୟାତ୍ । ବିରକ୍ତ ହୋଇ ସେ ଟେବୁଲ୍ ଉପରେ ଆସ୍ତେ ଥାପୁଡ଼ାଏ ମାରିଦେଲା । ଭାବିଲା, ନୂଆ କିଏ ? ଏଇ ସାନ ପିଲା ? କେଡ଼େ ଚଞ୍ଚଳ ସେମାନେ ପଡ଼ିଯାଆନ୍ତି ପୁରୁଣା ଫର୍ମାରେ !

କାଗଜରେ ଗାର ପଡ଼ି ନାହିଁ ।

ଲେଖିଲା, ''ଶ୍ରୀ-''

ତା'ପରେ ମୋଡ଼ି ଥୋଇ ଦେଲା ।

# ମାଧବ

ରାସ୍ତାକୁ ରିକ୍ସା ପାଇଁ ଗଲେ ମନେ ପଡ଼ିଯାଏ ମାଧବ,- ପ୍ରକୃତରେ ମାଧବ ରାଓ, ଇଚ୍ଛାପୁରଆଡ଼ର ତେଲୁଗୁ ଲୋକଟିଏ ସେ, ଯଦିଚ କ୍ୱଚିତ୍ କେହି ତା ସମ୍ପର୍କରେ ବା ଭାଷା କଥା ଭାବେ । ଶ୍ୟାମଳ ବର୍ଣ୍ଣ, ଛ' ଫୁଟ୍ ଉଚ୍ଚ ସାଧାରଣ ସ୍ୱାସ୍ଥ୍ୟର ମଣିଷଟିଏ ସେ । ବୟସ ପଇଁତିରିଶ କି ପଇଁଚାଳିଶ ଅନୁମାନ କରି ହୁଏ ନାହିଁ, ଦେଖା ହେଲେ ଆକୃଷ୍ଟ କରେ ତା'ର ଉଦାର ହସ ହସ ମୁହଁ, ତା'ର ମିଟିମିଟି ଆଖି ଓ ତା'ର ସ୍ନେହୀ ସମ୍ଭାଷଣ,- "କୁଆଡ଼େ ଯିବ କି ବାବୁ ?" ଏପରି ନୁହେଁ ଯେ ସେ ଗରାଖ ସଂଗ୍ରହ କରିବାକୁ ବ୍ୟସ୍ତ,- ବହୁ ବର୍ଷର ଅଭିଜ୍ଞତାରୁ ସେ ବୋଧହୁଏ ବୁଝିଛି ଯେ ଯାହାର ଦରକାର ସେ ଆସିବହିଁ । କିନ୍ତୁ ଚିହ୍ନା ଥିଲେ ସେ ପଦେ ପଚାରେ । ଯଦି ଦେଖେ, ସେ ଥାଉ ଥାଉ ଅନ୍ୟ କୌଣସି ରିକ୍ସାବାଲା ତା ଚିହ୍ନା ଗରାଖ ପାଖକୁ ଆଗ ବଳି ପଡ଼ି ରିକ୍ସା ନେଇ ଯାଉଛି, ସେ କିଛି କହେ ନାହିଁ, ଚୁପ୍‌ଚାପ୍ ହୋଇ ତା ରିକ୍ସାରେ ବସି ବିଡ଼ି ଟାଣେ । "ଆରେ ମାଧବ, ତୁ ଅଛୁ କି ? ମୁଁ ଏଇ ରିକ୍ସାବାଲାକୁ ଡାକିଦେଲି-" "ହଉ ବାବୁ, ସେଇଥିରେଇ ଯାଅ, ଯେ ହେଲେ ନେବ ତ ।" ତା ରିକ୍ସାରେ ବସିଲେ ସେ ରିକ୍ସାହିଁ ଟାଣେ, ବାଟରେ ଯାହା ଯାହା ମନକଥା ଉଗାଳି ଲାଗିଲେ ବି ସେ ଶୁଣୁ ନ ଶୁଣୁ ଟିକିଏ ଟିକିଏ ମୁରୁକି ମୁରୁକି ହସୁଥାଏ, ଆରୋହୀ ଯେଉଁଠି ଯେଉଁଠି ଅଟକି ଅଟକି ଡେରି କଲେ ବି ସେ ଆପତ୍ତି କରେ ନାହିଁ, ଆଗରୁ ଦର ଛିଣ୍ଡାଏ ନାହିଁ, ଓହ୍ଲେଇ ଗଲେ ଭଡ଼ା ବଢ଼େଇ ଦେଲାବେଳେ ଯୁକ୍ତିତର୍କ ପାଟିତୁଣ୍ଡ ତ କେବେ କରେ ନାହିଁ, ଅଳ୍ପ ହେଲା ଭାବିଲେ କହେ "ଏତିକି ଦେଲ ?"ଓ ହସିଦେଇ ଏମିତି ଅନାଇଁ ରହେ ଯେ ସେ ଜାଣେ, ଆରୋହୀଟି ଆହୁରି କିଛି ଦେବହିଁ, ତା'ର ସେହି ବିଶ୍ୱାସର କିମିଆଁ ଅପରର ପକେଟରୁ ଆପେ ଆହୁରି ପଇସା ବାହାର କରେ । ତା'ର ବ୍ୟବହାର ସବୁବେଳେ ଭଦ୍ର ଓ ମଧୁର । ରିକ୍ସା ଚାଳନାରେ ବି ତା'ର ନାନା ଭଲ ଗୁଣ ଫୁଟିଉଠେ । ସେ ସବୁବେଳେ ସତର୍କ ଥାଏ, ଯେପରି କୌଣସି ଦୁର୍ଘଟଣା ନ ଘଟିବ । ଅନ୍ୟ ରିକ୍ସାବାଲା, କେତେବେଳେ ସାଇକଲ, କି ସ୍କୁଟର, କି ଚାଲି ଚାଲି ଯାଉଥିବା ଲୋକ ତା ରିକ୍ସା ଆଗରେ ପଡ଼ିଲା ଭଳି ହୁଅନ୍ତି, ସେ ବାଟ କାଟେଇ ଚାଲିଯାଏ, କେତେବେଳେ ବା ଟିକିଏ ଅଟକିଯାଏ, ଅପର ଭୁଲ୍ କଲାବୋଲି ଅପରକୁ ଗାଳି ଦିଏ ନାହିଁ, କଜିଆ ସେ ମୂଳାଏ ନାହିଁ । ତେଣୁ ମୁଁ

ମନେ ମନେ ମାଧବକୁ ଖୋଜେଁ । ତା ରିକ୍ସାରେ ବସିଲେ ଲାଗେ, ଆପଣାର ଲୋକଟିଏ ଚଲାଉଛି ଓ ଯାତ୍ରାଟି ନିରାପଦହିଁ ହେବ ।

ସେ କେବେ ରୋଗରେ ପଡ଼ିବା ମୁଁ ଦେଖି ନ ଥିଲି । ବଳ ତାଠିଁ ଖୁବ୍ ଥିବ ମୋର ଅନୁମାନ, ଦେହଟି ମାଂସଳ ନୁହେଁ, କିନ୍ତୁ ବଡ଼ ବଡ଼ ଚଉଡ଼ା ହାଡ଼, ମାଂସପେଶୀ ଆବୁ ଆବୁ ଦିଶୁଥିଲା ଓ ବଡ଼ ବଡ଼ ଉଠାଣିରେ ବି ଅନେକ ବାଟ ଯାକେ ସେ ରିକ୍ସା ଚଲାଉଥାଏ, ମୁଁ ଓହ୍ଲାଇ ପଡ଼େଁ କହିଲେ ମନା କରେ । ତୋ ପୋଷାକ ସବୁଦିନେ ଏକାପରି, ଖଣ୍ଡେ ହାଫ୍‌ପ୍ୟାଣ୍ଟ, ଖଣ୍ଡେ ହାଫ ସାର୍ଟ, ଖଣ୍ଡେ ସାନ ଗାମୁଛା କେବେ କେବେ ମୁଣ୍ଡରେ ଗୁରେଇ ପକାଏ । ତା ସୁଖଦୁଃଖର କାହାଣୀ ସେ କେବେ ଗପେ ନାହିଁ, ତାର କିଛି ଅଭିଯୋଗ ନ ଥାଏ, ଜାଣିଥିଲି ରିକ୍ସାର ମାଲିକ ସେ ନୁହେଁ, ମାଲିକକୁ ପ୍ରତ୍ୟହ ସେ ତିନିଟଙ୍କା ଦିଏ କହୁଥିଲା । ଶୁଣିଥିଲି ମାଧବ ରହୁଥିଲା ଏ ସହରର 'ମାଳିସାହି' ବସ୍ତିରେ କେଉଁ କୁଡ଼ିଆ ଘରେ, ସେଠି ତାର ସ୍ତ୍ରୀ ଓ ପିଲାଏ ରହୁଥିଲେ, ସ୍ତ୍ରୀଟି ବି କ'ଣ ପରିଶ୍ରମ କରି କିଛି ରୋଜଗାର କରୁଥିଲା ।

ସେ କହୁଥିଲା, ଇଛାପୁର ଆଡ଼େ ଅର୍ଥାତ୍ ଆନ୍ଧ୍ରରେ ତା'ର ଭାଇମାନେ, ବନ୍ଧୁବାନ୍ଧବମାନେ ଅଛନ୍ତି । ସେମାନଙ୍କର ସେଠି ନିଜ ନିଜ ଜମିବାଡ଼ି ଅଛି, ଚାଷ କରନ୍ତି, ତା'ର ନାହିଁ, ତେଣୁ ତ ସେ ବହୁ ବର୍ଷ ତଳେ ଉଠି ଆସିଥିଲା ଏ ସହରକୁ ।

''ଫେରିଯାଇ ଗାଁରେ ରହିବାକୁ ମନ ହୁଏ ନାହିଁ ମାଧବ ?''

ସେ ହସିଦିଏ । କହେ-

''ଆଉ କି ପାଇଁ ? ଯୋଉଠି ପରିଶ୍ରମ କଲେ ଖାଇବାକୁ ମିଳିଲା ସେଇତ ଆମ ଗାଁ ହେଲା ।''

''ବ୍ୟାଙ୍କରୁ ଋଣ ନେଇ ନିଜର ରିକ୍ସା ଖଣ୍ଡେ କଲେ ହୁଅନ୍ତା ନାହିଁ ?''

''କାହାଠୁଁ ଋଣ ନେବା ଭାରି ଅଡୁଆ ବାବୁ, କାହିଁକି ସେସବୁ ?''

''ପ୍ରତିଦିନ ଯାହା ରୋଜଗାର କରୁଥିବୁ ତହିଁରୁ ଅଳ୍ପ ଅଳ୍ପ କରି ରଖି ସାତଦିନେ କି ମାସକେ ଶୁଝି ଶୁଝି ଦେଉଥିଲେ ତ ଆଦୌ ଜଣାପଡ଼ିବ ନାହିଁ ।''

''ସେକଥା କହ ନାଇଁ ବାବୁ, ଋଣକୁ ମୋର ଭାରି ଡର । ଋଣ ନ ଶୁଝିବାଯାକେ ବେକରେ ଫାଶ ଲାଗିଥିବ ନା ? ଏମିତି ଚଳି ଯାଉଛି ତ ।''

ସେଦିନ ଖରାବେଳେ ସଡ଼କ କରରେ ଠାଏ ଗଛ ଛାଇରେ ମାଧବ ତା ରିକ୍ସାଟି ଥୋଇ ରିକ୍ସାରେ ବସି ଅପେକ୍ଷା କରିଥିଲା । ଏତେବେଳେ ସେ ସଡ଼କରେ ବେଶୀ ଲୋକ

ଯା'ଆସ ହୁଅନ୍ତି ନାହିଁ, ତଥାପି କାଳେ କେତେବେଳେ ଆରୋହୀ ହେବାକୁ କେହି ଲୋଡ଼ିବ । ସଡ଼କ ପାଖେ ଗୋଟାଏ ଖୋଲା ଜାଗା, ସେଠି ଗୋଟାଏ ନଡ଼ିଆ ଗଛ, ତା ସେକରେ ଟିକିଏ ଛଡ଼ାରେ ଘରଟିଏ । ନଡ଼ିଆଗଛରୁ ଶୁଖିଲା ବାହୁଙ୍ଗାଟିଏ ଝୁଲୁଛି । ମାଧବର ହଠାତ୍ ମନେ ପଡ଼ିଗଲା ତା କୁଡ଼ିଆରେ ଜାଳେଣି ଅଭାବ ଯୋଗୁଁ ତା ସ୍ତ୍ରୀ ଓ ପିଲାର ପ୍ରତିଦିନ ହଇରାଣ ହେବା ଦୃଶ୍ୟ । ଏତେ ଦାମ୍ ଦେଇ ଜାଳେଣି କାଠ କିଣିବା କଷ୍ଟ, ଚାରିଆଡ଼େ ବୁଲି ବୁଲି ଡାଙ୍ଗ କାଠି ଆଦି ଗୋଟେଇ ଆଣିବାକୁ ପଡ଼େ । ନଡ଼ିଆ ବାହୁଙ୍ଗାଟା ସତେକି ତାକୁ ଡାକୁଛି, ''ଆ ଓଟାରି ନେ ମତେ ।'' ମାଧବ ଜାଣେ, ଏଇଟା ଝଡ଼ିବ ଓ ସେତେବେଳେ କୌଣସି ବାଟୋଇ ଯାକୁ ଗୋଟେଇ ନେଇଯିବ । ତା ଗାଁରେ ବହୁତ ନଡ଼ିଆଗଛ ଓ ନଡ଼ିଆଗଛରେ ଚଢ଼ିବା ସେ ତା ପିଲାଦିନୁଁ ଅଭ୍ୟାସ କରିଥିଲା । ଭାବୁ ଭାବୁ ମନରେ ଆସିଲା ଉଲ୍ଲାସ, ସେ ରିକ୍ସାରୁ ଓହ୍ଲେଇପଡ଼ି ନଡ଼ିଆଗଛରେ ଚଢ଼ିଲା । ଚାଲିଲା, ଉପରକୁ, ଉପରକୁ, ବାହୁଙ୍ଗାଟାର ତଳୁ ଧରି ଦେଲା ଝାଙ୍କେ । ବାହୁଙ୍ଗାଟା ଖସିପଡ଼ିଲା ଓ ତା ସଙ୍ଗେ ସଙ୍ଗେ ନଡ଼ିଆଗଛରୁ ଖସିପଡ଼ିଲା ମାଧବ ।

''କୁଆଡ଼େ ଗଲା ମାଧବ ? ଆଉ ଏ ଛକକୁ କାହିଁକି ରିକ୍ସା ଘେନି ଆସୁ ନାହିଁ ?''- ତା'ର ତିନିଦିନ ପରେ ରିକ୍ସା ଖୋଜିଲାବେଳେ ମୁଁ ଭାବୁଥିଲି ।

ସମ୍ବାଦଟା ସେଇଦିନ ପାଇଲି । ମାଧବ ଗଛରୁ ପଡ଼ିଲାବେଳୁ ଆଉ ତା'ର ସଂଜ୍ଞା ଆସି ନାହିଁ, ଡାକ୍ତରଖାନାରେ ଦିନେ ପଡ଼ିରହି ସେ ମରିଗଲା ଓ ତା'ର ଚିହ୍ନା ରିକ୍ସାଚାଳକ ବନ୍ଧୁ କେତେ ଜଣ ମିଶି ତା'ର ଶବସଂସ୍କାର କରିଦେଲେ ।

ତଥାପି ସଡ଼କରେ କେବେ କେବେ ଆଖି ଆଗରେ ଠିଆ ହୁଏ ତା'ର ସ୍ମୃତିରୂପ, ସେହି ହସ, ସେହି ମଧୁର ଆହ୍ୱାନ ।

''କୁଆଡ଼େ ଯିବ କି ବାବୁ ? ଆସ ବସ ।''

# ଉତ୍ସ

ବୃଥା ସମୟ ନଷ୍ଟ । କିଛି ଗୋଟାଏ ହେବ ଆନ୍ଧ ସେ ମୋରି ମୁଣ୍ଡରୁ ବାହାରି ମୋରି ହାତରେ ହେବ ବୋଲି ଶୁଭ ମୁହୂର୍ତ୍ତକୁ ଅପେକ୍ଷା କରି କରି । ଭାବିହେଉଛି, - ମନ ଭିତରର ହସ ମୁହଁ ଉପରର ହାଡ଼ମାନଙ୍କ ଦାଢ଼କୁ ଘୋଡ଼େଇ ପକାଇଛି ଟାଙ୍କି ଦେଲା ପରି ଢଳ ଢଳ ପାଲିସ୍ ଛାଲରେ । ଓଠ କଣରେ କ୍ଷୀଣ ବାଙ୍କ, ବାରି ହୁଏ କି ନ ହୁଏ, ଆଖି ଡୋଳା ଉପରେ ଆଖିପତା ଅଳ୍ପ ଢୁଳେଇ ପଡ଼ିଲା ପରି । ଡୋଳାରେ ଆଲୁଅ, ଯେମିତି ପୋଖରୀର ସ୍ଥିର ପାଣି ଉପରେ ପାହାନ୍ତି, ସେ ଶୋଇ ନାହିଁ, ସ୍ୱପ୍ନ ଦେଖୁ ନାହିଁ, ବିଶ୍ୱାସ କରି ତନ୍ମୟ ହୋଇଛି, ଆପଣା ରହସ୍ୟକୁ ଆପଣାଠି ଲୁଚେଇ ରଖିବାକୁ ଚେଷ୍ଟା କଲେ ସୁଦ୍ଧା ପାରୁ ନାହିଁ । ଯେମିତି କାନି ଉହାଡ଼ରେ ସଞ୍ଜବତି । ତା'ପରେ ଧ୍ୟାନରୁ ଉଠିପଡ଼ିଲାପରି ଉଠିପଡ଼ିଲେ କି ଆନନ୍ଦ, ଉତ୍ସାହ ! ଜୀବନ କେଡ଼େ ଭଲ ଲାଗିଛି ! ଦୁନିଆ କେତେ ସୁନ୍ଦର, କେଡ଼େ ବନ୍ଧୁ-ବନ୍ଧୁ ! କମି ମମତା ତାର ? ଓଁ ମଧୁ-ମଧୁ-ମଧୁ- ମଧୁବାତା ଋତାୟତେ ମଧୁକ୍ଷରନ୍ତି ତରବଃ ।

ସେତେବେଳେ ଭାବିଥିଲି, ଜୀବନର ତତ୍ତ୍ୱ ମୁଁ ଭାବୁଛି- ତା ନାଁ ଆନନ୍ଦ । ଏଭଳି କେବେ ଭାବି ନାହିଁ ଯେ ତତ୍ତ୍ୱଟା ମୋ ନିଜ ଭିତରର ଓ ତା ବି ସାମୟିକ, ମୋ ବାହାରେ ସେ ନାହିଁ । ସେଠି ପଥର ପଥର, ପାଣି ପାଣି, ଯେପରି ତା'ର ମୋ ସହିତ କୌଣସି ସମ୍ବନ୍ଧ ନାହିଁ, - ଅର୍ଥାତ୍ ମୁଁ ଅଛି, ପାଣି ବି ଅଛି, ଆମେ ପରସ୍ପରକୁ ଛୁଇଁଲେବି ମୁଁ ମୁଁ ଆଉ ପାଣି ପାଣି ।

କିନ୍ତୁ କିଏ ପୁଣି କହୁଛି ଏ କଥା ? ନା ନା, ମୁଁ ନୁହେଁ, ମୁଁ କଦାପି ସ୍ୱୀକାର କରିବି ନାହିଁ ଯେ କାହାର ମୋ ପାଇଁ ତତ୍ତ୍ୱ ନାହିଁ । ମୁଁ ପାଇଲାଭଳି ତତ୍ତ୍ୱ ନାହିଁ, କିଛି ନାହିଁ । ବଞ୍ଚିଥିବାଯାକେ କେଉଁ ତୁଣ୍ଡରେ କାହିଁକି ଏ କଥା ?

କହିଲେ ସହିପାରିବି ତ ?

କେବେ ଚେଷ୍ଟା କରି ନାହିଁ ସେଭଳି ଭାବିବାକୁ ବି, କହିବା ତ କାହିଁ ଦୂର ।

ସେହି ଉତ୍ସାହ କଥା କହେଁ । ସେଇଟା ବୋଧହୁଏ ପଦାରେ ନ ଥିଲା, ଥିଲା କି ନାହିଁ ଏତେ ଭାବି ନାହିଁ । କିନ୍ତୁ ଏକଥା ବି ଲକ୍ଷ୍ୟ କରିଛି, ସେମିତି କାଲୁଆ ପାଗରେ ଯେତେବେଳେ ଭୁରା ଝଡୁଛି, ହଲପା ପଟୁଛି, ଅନ୍ୟମାନେ କିଏ କୁଂକିରି କାଂକିରି ହୋଇ

ଓଳିତଳେ ଜକାଜକି, ମୁଁ ସେତେବେଳେ ଆବେଗ ଉତ୍ସାହରେ ସାଇକଲ ଛୁଟେଇ ଧାଇଁଛି ଖଇରିଆ ଆକାଶ ତଳେ । ଦେହ ମନ କେଡ଼େ ଫୂର୍ତ୍ତି । ମନ ହୋଇଛି, ବୋଲେଁ ଗୀତ, ଯାହା ମନକୁ ଆସୁଛି । ଭାଷାରେ କି ଯାଏ, ଅର୍ଥରେ କି ସ୍ୱରରେ କି ଯାଏ, ଗୀତ ବୋଲିବାକୁ ମନ ହେଲେ ଗୀତ ବୋଲିଲେହିଁ ମନ ଖୁସି । ଅଥଚ ପୁଣି କେବେ ଦେଖିଛି, ସେମିତି ପାଗରେ ମୁଁ ବି କତରାଲାଗି ବୁଢ଼ୀ ପରି ବିଛଣାରେ ଶେଯ ଘୋରି ହୋଇ ଶୋଇଛି, ପାଗକୁ ଶୋଧିଛି, ନିଜକୁ ବି, କିଛି ଭଲ ଲାଗି ନାହିଁ । ଆଉ ଖାଲି ସେ ପାଗ କଣ, ଶୁଖିଲା ପାଚିଲା ଦିନ, ସୁଲୁ ସୁଲୁ ପବନ, ଗୁଣୁଗୁଣୁ ମହୁମାଛି, ସେ ବି ଲାଗିଛି କେଡ଼େ ବିଷପିତା ।

ନାଃ, ଏ ଖୋଜାଖୋଜି ବଛାବଛିରେ କିଛି ମିଳିବ ନାହିଁ ମୁଁ ଜାଣେ । ବୃଥା ନିଜକୁ କଷ୍ଟ ଦେବା ଆଉ ତାଠୁଁ ବଳି ତୁମକୁ ଯେ ଉତ୍ସୁକ ହୋଇ ଅନାଇଁଛି କିଛି ସତ୍ୟ ଶୁଣିବ ବୋଲି ଯାହା ଆଗେ ଶୁଣି ନ ଥିଲ, କିଛି ଜାଣିବ ବୋଲି ଯାହା କେବେ ଜାଣି ନ ଥିଲ, ଅବିକଳ ମୋରି ପରି, ଯେମିତି ମୁଁ ବି ଧାଉଁଥିଲି କନ କନ ହୋଇ ଅନୋଉଁଥିଲି ଏପାଖ ସେପାଖ । ଅନେକ ଅନେକ ଧାଇଁ ଧାଇଁ ଖାଲି ବେଳ ଗଲା, ଧାଇଁବାଟାହିଁ ଯଦି ଆନନ୍ଦ ବୋଲି ଭାବୁଥାଅ ତେବେ ନ ପାଇଛି କହିବି ନାହିଁ । ବାଛି ବାଛି ନାଁ ସେମାନେ ଦେଇଥିଲେ ମୋର ।- 'ମହେଶ୍ୱର' । ଯେତେବେଳେ ତା' ମାନେ ଜାଣିଲି ସେତେବେଳେ ଗର୍ବିତ ହେଲି, ମତେ ନିଜକୁ ନିଜେ କେଡ଼େ ଅସାଧାରଣ ଆଉ ବଡ଼ ଜଣାଗଲା । କିନ୍ତୁ ସତେ କଣ ବାଛିଥିଲେ ? ବାପାଙ୍କ ନାଁ ଗଣେଶ୍ୱର ବୋଲି ନିଜ ନାଁ ସଙ୍ଗେ ପଡ଼ିବ ବୋଲି କଣ ସେ ନାଁ ଦେଇ ନାହାନ୍ତି ? ହଠାତ୍ ସେଥର ନାହା ବୁଡ଼ିରେ ସେ ଯଦି ଚଷାପଡ଼ା ଘାଟରେ ଅଦୃଶ୍ୟ ହୋଇ ନ ଥାନ୍ତେ ତାହେଲେ ସେ କହିଥାନ୍ତେ, ସମୟ ବି ତାଙ୍କର ଥାଆନ୍ତା, ପଁଷଠି ବର୍ଷରେ ବସି ବସି ଗପିବାକୁ ପରକୁ ବ୍ୟାଖ୍ୟା ବୁଝାଇବାକୁ ତ ମନ ହୁଏ ବା ସ୍କୁଲରେ ପଢ଼ିଲା ବେଳେ ଖୁବ୍ ଆନନ୍ଦ ଉଦ୍ଦୀପନାର ବେଳ କଟୁଥିଲା, କଲେଜରେ ବି । କେଉଁ କଥା ପାଇଁ ? ଖୁବ୍ ନାଁ ଡାକ ଛାତ୍ର କି ଖେଳାଳି କି ପିଲାଙ୍କ ସର୍ଦ୍ଦାର ବୋଲି ଆଦୌ ନୁହେଁ । ସେଭଳି ଧାରଣା ମୋର କେବେ ହୋଇ ନାହିଁ କି ମୁଁ ସେଥିପାଇଁ ଚେଷ୍ଟା କରି ନାହିଁ । ବୋଧହୁଏ ଏଥିପାଇଁ ଯେ ସେତେବେଳେ ଯେଉଁ ମୁହୂର୍ତ୍ତରେ ମୁଁ ଯାହା ହେବି କି ପାଇବି ବୋଲି ଅସ୍ପଷ୍ଟ ଭାବେ ବି ଭାବି ପାରୁଥିଲି 'କେଜାଣି କାହିଁକି' ମୋଠିଁ ବିଶ୍ୱାସ ଥିଲା ଯେ ସତରେ ମୁଁ ସେଇଆ ହେବି, ଆଗରେ ଲମ୍ବା ସମୟ, ସେ ଶୁଣିବ କି ଶୁଣିପାରେ ମୋର ଧାରଣା ନ ଥିଲା । ନ ହେଲେ ବୟସର ଜୁଆର, ଧୀରେ ଧୀରେ ମାଡ଼ି ମାଡ଼ି ଆସୁଛି ବଢ଼ିବଢ଼ିକା ।

ଚାକିରି ନ ପାଇ ଦୁଃଖ ହୋଇଥିଲା ଦି'ଦିନ । ଏଥିପାଇଁ ଯେ ଆମେମାନେ ମନ ଦୁଃଖ କରୁଥିଲେ । କିନ୍ତୁ ତା'ପରେ ଯେତେବେଳେ ଭୀମ, ନକୁଳ, ସହଦେବ ଏମିତି

ତିନି ଜଣ ବନ୍ଧୁଙ୍କ ସଙ୍ଗେ ବେପାର କରିବାକୁ ମୁଁ ମେଣ୍ଟ ବାନ୍ଧିଲି ସେତେବେଳେ ଆଦୌ ମନଦୁଃଖ ରହିଲା ନାହିଁ । ନ ହେଉ କିଛି, ହେବ । ମୋର ବିଶ୍ୱାସ ଥାଏ ନିଶ୍ଚୟ ହେବ । ଶ୍ୱଶୁର ଧନୀ ନ ହେଲେ ସୁଦ୍ଧା ଝିଅ ଜୋଇଁଙ୍କୁ ପୋଷିବାକୁ କେତେବେଳେ ମନା କରି ନାହାନ୍ତି, ମୁଁ ବି ଆପତ୍ତି କରି ନାହିଁ । ମୁଁ ବିଶ୍ୱାସ କରିଥିଲି ଦିନ ଆସିବ ଯେତେବେଳେ ମୁଁ ତାଙ୍କୁ ଏଭଳି ସାହାଯ୍ୟ କରିପାରିବି ଯହିଁରେ ତାଙ୍କର ପୁରୁଷ ପୁରୁଷର ଲୋକେ ସୁଖରେ ରହିବେ । ଗଲା ବିତି ୧୫ ବର୍ଷ, କେତେଥର ନୂଆ ନୂଆ ବନ୍ଧୁମାନଙ୍କ ସଙ୍ଗେ ମେଣ୍ଟ । ପୁରୁଣା ଯାଏ, ନୂଆ ଆସେ । ତା'ପରେ ମୋ ନିଜର ବେପାର ଠିଆ ହେଲା । କଣ୍ଟ୍ରାକ୍ଟରୀ ହିଁ କରେ, ମାଟି କାମ ନୁହେଁ, ଖାତା ପେନ୍‌ସିଲ କିଣି ବିଭିନ୍ନ ଅଫିସକୁ ଯୋଗାଇବା । କଲି ତ କିଛି । ସେ ବେପାରରେ ଆଗରୁ ପ୍ରତିଷ୍ଠିତ ହୋଇଥିବା ଅନେକ ବେପାରିଙ୍କୁ ମୁଁ ସେଥିରୁ ତଡ଼ି ଦେଇଛି । ସେହି ଗୋଟିଏ ଗୋଟିଏ ଲଢ଼େଇ ଗୋଟିଏ ଗୋଟିଏ ଚମକପ୍ରଦ କାହାଣୀ, ମୁଁ ସବୁ ସମାଜରେ ଖାତିରି ପାଇଛି, ଟଙ୍କା ବିଞ୍ଚିଛି । କାମ କରାଇଛି ।

କିନ୍ତୁ କଣ ହେଲା ପୁଣି ?

ଅର୍ଥାଭାବ ? ଆଦୌ ନାହିଁ ଆଉ । କିନ୍ତୁ ତଥାପି କିଛି ଦୁଃଖ ଲୁଚୁ ନାହିଁ, ସେହିକଥା କହେଁ ।

ପ୍ରଥମେ ଯେତେବେଳେ ଜଣକୁ ଛାଡ଼ି ଆଉ ଜଣେ ଡାକ୍ତରଠୁଁ ପରାମର୍ଶ ନେଇଥିଲି ସେତେବେଳେ ଦେହ ଦୁଃଖ ଭିତରେ ବି ଆଗପରି ମନରେ ଟିକିଏ ଆନନ୍ଦକର ଉନ୍ମାଦନା ଥିଲା ।- ଯେ ବି ଗୋଟାଏ ପ୍ରକାର ଯୁଦ୍ଧ, ଯେ ବି ଜଣା ହେବ, ଟଙ୍କା ଦରକାର ତ, ଅଛି । କିନ୍ତୁ ଲାଗୁଛି, ଟଙ୍କା ବି ନିରର୍ଥକ ।

# ପାଣି ଛାଡ଼ିଗଲା ପରେ

ଆମେ ବୁଲି ଚାଲିଥାଉଁ ବାଲିଏ ବାଲିଏ ସମୁଦ୍ର କୂଳେ କୂଳେ । ପୂର୍ବରୁ ପଶ୍ଚିମକୁ, ଶୀତ ଦିନ, ମଳିଚା ଖରା, ବେଳ ଚାରିଟା । ଆଃ ! ସମୁଦ୍ର ! ସମୁଦ୍ର ! ଯେ ଯେପରିକି ଜୀବନରେ ଶକ୍ତି ଓ ପୁଲକର ଅବତାର, ଅନନ୍ତ, ଅକ୍ଷୟ । ସେତେବେଳେ ଛାତି ଫୁଲେଇ ସମୁଦ୍ର ପବନ ଶୋଷି ଶୋଷି ଆନନ୍ଦରେ ଗୋଡ଼ ହାତ ଝାଙ୍କି ଝାଙ୍କି ବେପରୁଆ ହୋଇ ଚାଲି ଚାଲି ଗଲାବେଳେ ମୋ ମନରେ ଯେଉଁ ବର୍ଣ୍ଣ ଥିଲା ତହିଁରୁ ଚିପୁଡ଼ି ଚିପୁଡ଼ି ମନେ ମନେ ନିଜ ପାଖେ ନିଜେ ଭାଷାରେ କିଛି ପ୍ରକାଶ କଲାବେଳେ ଏମିତି ଗୋଟାଏ ଅଧେ ବାକ୍ୟ ହେଉଥିଲା, ନିଅଣ୍ଟ ଲାଗୁଥିଲା, ମଝିରୁ ଛିଣ୍ଡି ଛିଣ୍ଡି ଯାଉଥିଲା । ମନେ ପଡୁଥାଏ, କାଲି ରାତି ଅଧ ପରେ ସମୁଦ୍ର ଘୁ ଘୁ ଡାକୁଥିଲା, ଶୁଣୁଥିଲି ହୋଟଲ୍‌ରେ ମୋ ବଖୁରିରୁ । ନିଦ ଛୁଆଣି ଅଳସ ଚେତା ଅବସ୍ଥାରେ ଲାଗୁଥିଲା ଗୋଟାକ ପରେ ଆଉ ଗୋଟାଏ ହୋଇ ଦି' ପ୍ରକାର, ଏମିତି କେତେଥର, ନିଦ ପୂରା ଘୋଡ଼େଇ ପକାଇବାଯାକେ । ଥରେ ଲାଗୁଥିଲା ଅସଂଖ୍ୟ ବଡ଼ବାଜା ବଜେଇ ବଜେଇ ମୋ ସାଙ୍ଗମାନେ ଆଗେ ଆଗେ ଥାଇ ଥାଇ ଅକଳନ ମଣିଷଙ୍କ ପଟୁଆର ଉଲ୍ଲାସ ଚିତ୍କାର କରି କରି ମାଡ଼ିଆସୁଛି ମୋରି ପାଖକୁ, ମନ ଉଚାଟ ହେଲାଣି, ମୁଁ ବି ମିଶିବି, ମୁଁ ବି ଯିବି ଚାଲି ତାଙ୍କରି ସଙ୍ଗରେ, ଆମେ - ମାଡ଼ିଯିବୁଁ ମାଡ଼ିଯିବୁଁ । କଣ ବୋଲି କଣ ବାହାଦୁରି ଦେଖାଇବୁଁ, ଯେମିତି କହନ୍ତି - ପାହାଡ଼ ଓଲଟେଇବୁଁ - କଣ ? କଣ ? ସେ ଉଚ୍ଛ୍ୱାସ ସେ ବେଗ ମୁଁ ଅନୁଭବ କରିଥିଲି, କଣ କରିବୁଁ ବୋଲି ଧାରଣା ସ୍ପଷ୍ଟ ନ ଥିଲା କି ଧାରଣା ସ୍ପଷ୍ଟ ହେବା ଆବଶ୍ୟକ ବି ନ ଥିଲା । ବଳ, ଉଲ୍ଲାସ, ଉତ୍ତେଜନା, ସବୁ ମିଶି ଅନୁଭୂତିର ଝୁଙ୍କ । ମୁଁ ମାଡ଼ିଯିବି, ସେଇଟାହିଁ ସର୍ଜନୀ ଆବେଗର ଉଲ୍ଲାସ । ତହିଁରୁ କଣ ଫଳ ଫଳିବ ବୋଲି କେହି ଉଦ୍ଦେଶ୍ୟ ରଖି ନକ୍ସା କାଟି କରେ ନାହିଁ । ଖୁବ୍ ଶୀତ ପଡ଼ିଥାଏ । ଶେଯ ରେଜେଇ ଲାଗୁଥାନ୍ତି ଆରାମ, ଉଷୁମ, ନିବୁଜ, ଅନ୍ତରଙ୍ଗ, ଯେମିତି ମା'ର କୋଡ଼, ମା'ର ବାହୁବନ୍ଧନ, ଛଟପଟ ହେଲେ ଆହୁରି ଜାକି ଧରେ, କହେ ଶୋଇପଡ଼, ଶୋଇପଡ଼ । ଆଉ ମତେ ଲାଗୁଥାଏ ପିଲାଦିନେ ଯେମିତି ଦୁଷ୍ଟ ପିଲା ଥିଲି, ଅମାନିଆଁ, ଅକୁହାର, ମୁଁ ଯିବି, ଧାଇଁ ପଳେଇବି ସାଙ୍ଗମାନେ ଡାକିଲେଣି ।

ଆଉ ଠିକ୍ ତା'ପରେ ସମୁଦ୍ରର ଘୁ ଘୁ ଶୁଣୁ ଶୁଣୁ ଲାଗୁଥାଏ ଆଉ ଏକପ୍ରକାର । ପାଣି, ପାଣି କିଛି ନାହିଁ ଖାଲି ପାଣି । ପାହାଡ଼ ପରି ଡେଙ୍ଗା ହୋଇ ପୁଣି କଚାଡ଼ି ହୋଇ ରାଜ୍ୟଯାକର ପାଣି ମାଡ଼ି ଆସୁଛି ମୋରି ଉପରେ ଅଜାଡ଼ି ହେବ ବୋଲି, ମୋ ଡରୁଆ

ଉଁ ହୁଁ ବି ଶୁଭୁ ନାହିଁ ମୋ କାନକୁ ଏ କରାଳ ଘୋ ଘା ଶବ୍ଦରେ, ମାଡ଼ି ଆସୁଛି ଧ୍ୱଂସ, ମୃତ୍ୟୁ, ଆଉ ରକ୍ଷା ନାହିଁ । ସେହି ଶେଯ ରେଜେଇ ଖୋଲିଲେ ଆଶ୍ରା, ମା ପେଟରେ ଭୁସି ହୋଇ କୁଙ୍କିରି କାଙ୍କିରି ହେଲା ପରି, ''ବୋଉଲୋ, ଡର ମାଡୁଛି !''

ଚାଲିଥାଏ ଏମିତି, ଉଷୁମ କାକର, ଉଷୁମ କାକର, ଆଉ ସମୁଦ୍ର ଘୋଘା ଚଳେଇଥାଏ, ସେଉଠୁ ନିଦ ହେଲା ଆହୁରି ଗହୀର, ଘୋ ଘା ହେଲା ନିରର୍ଥକ, ଉଷୁମ୍ ନୁହେଁ କି କାକର ନୁହେଁ, ଖାଲି ଘୋ ଘା, ଯାହା ବିଷୟରେ ମଣିଷ ଭାବେ ନାହିଁ । ଏମିତି ତ ହେବ ବୋଲି ଧରିନିଏ । କଂସାରି ଘରର ପାରା । ଷ୍ଟେସନ ପାଖେ ରେଳଲାଇନ୍ ପାଖେ ଘରେ ଚଳୁଥିବା ମଣିଷ । ଘାଉ ଘାଉ, ରାଉ ରାଉ, ହାଉଳାଉ ସହରର ମଣିଷ । ଏଇ ନିରର୍ଥକ ଘୋ ଘା ଧାଁ ଦଉଡ଼ ହିଁ ତ ଜୀବନ । କାଲି ରାତିରେ ନିଦ ବାଉଳାରେ ଏତେ ଶବ୍ଦ ଫାନ୍ଦି ଫାନ୍ଦି ଭାବିଥିଲି କି ନାହିଁ ମନେ ନାହିଁ, ବୋଧହୁଏ ନୁହେଁ । କିନ୍ତୁ ନିଜ ଉପରେ ଆରୋପ କରିବାକୁ ଖୁସି ଲାଗୁଛି, ଯେ ହଁ ଭାବିଥିଲି । ମୁଁ ଦେଖିଛି କେତେ ବୟସ୍କ ଲୋକ ନିଜ ପଛ ଜୀବନର କଥା ଭାବି ଭାବି ଗପିଲାବେଳେ ନିଜ କ୍ରିୟାକଳାପର ଏଭଳି ଚିତ୍ର କହିଯାଇଥାନ୍ତି । ଝୁରି ଝୁରି ଶରଧାରେ କହିଯାଆନ୍ତି, ଯାହା ସେମାନେ ପଛ ଜୀବନରେ କେବେ ହୋଇ ନ ଥିଲେ । ଯେ ହକି ଷ୍ଟିକ୍ ହକି ବଲ୍ ଦେଖିଲେ ଛାନିଆଁ ହେଉଥିଲା କାଳେ ତା ହାଡ଼ଗୋଡ଼ ଭାଙ୍ଗିବ, ସେ ଉତ୍ସାହରେ କହି ଚାଲିଯାଏ ହକି ଖେଳରେ ତା ପ୍ରତିଭା ଓ ବୀରତ୍ୱ କଥା । ଯାହାର ଶୈଶବ, ବାଲ୍ୟ, କୈଶୋର ଅବସ୍ଥା ନାନା ଦୁଃଖକଷ୍ଟ ଲାଞ୍ଛନା ଉତ୍ପୀଡ଼ନ ପାଇ ପାଇ କଟିଛି । ସେ ବର୍ଣ୍ଣନା କରିବ କେଡ଼େ ମଧୁମୟ ଥିଲା ତା'ର ସେ ସମୟ । କେଉଁଟା ସତ ? ମଣିଷ ନିଜେ ବି ବୁଝିପାରେ ନାହିଁ ନିଶ୍ଚୟ । ମାଡ଼ି ମାଡ଼ି ଚାଲିଥିଲା ବେଳେ କେତେବେଳେ କଣ ପାଟିରୁ ବାହାରିଗଲା ଭଳି ବୋଧହୁଏ ।

କିନ୍ତୁ ଆମେ ଯେତେବେଳେ ବାଲିଏ ବାଲିଏ ଚାଲିଥାଉଁ ଓ ଆଗରେ ବାଁ ପଟେ ମୁଁ ସମୁଦ୍ରକୁ ଦେଖିପାରୁଥାଏଁ ମୁଁ ନିଶ୍ଚୟ ଭାବୁଥାଏଁ ଯେ କାଲି ରାତିରେ ସମୁଦ୍ର ମୋର ଚେତନାରେ ଯେତେବେଳେ ତା ଶବ୍ଦ ବାଟେ ରୂପ ଘେନିଥିଲା, ସେ ଥିଲା ପୂର୍ଣ୍ଣ । ନା, ପୂର୍ଣ୍ଣଠୁ ବଳି, ସେ ଉତୁରି ପଡ଼ି ମାଡ଼ି ଆସୁଥିଲା । ଅଥଚ ଏବେ ଯେ କଣ ! ପାଣି ଛାଡ଼ି ଯାଇଛି, କେତେ ତଳେ ! ଏମିତି ପାତାଳ ଆଡ଼କୁ ଢାଲୁ ହୋଇଥିବ ତା କୂଳ ! ଢାଲୁ ଏବେବି ଓଦା ଅଛି, ଢାଲୁ ତଳଭାଗ ପାଣି ଜୁକୁଜୁକୁ । କେଡ଼େ ଟାଣ ଏ ବାଲିର ଢାଲୁଆ ଚଟାଣ ପାଦକୁ ଲାଗୁଛି, ଅଥଚ କେଡ଼େ ନରମ !

ଆମେ ଚାଲିଛୁଁ ମହା ଉତ୍ସାହରେ । ବେଳେ ବେଳେ ଲାଗୁଛି, ଏଇ ସମୁଦ୍ରକୁ ଦେଖି, ଆମର ଖୁବ୍ ବଡ଼ ଜିତାଟାଏ ହୋଇଛି । ଏଡ଼େ ସମୁଦ୍ରକୁ ଆମେ ଉପରୁ ତଡ଼ି ତଡ଼ି ନେଇ କାହିଁ ତଳେ ଛାଡ଼ିଛୁଁ, ହେଇ, ତା ଇଲାକାକୁ ପାଦରେ ମାଡ଼ି ମାଡ଼ି ଆମେ ଚାଲିଛୁଁ, ଆମେ ଚାଲିଥିବୁଁ - ପିଚ୍‌କିନା ପାନ ଛେପ ମୁଁ ପକେଇଲି ସେ ନୂଆଜିତା ଇଲାକା

ବାଲିରେ । ହେଇ ମୋର ଚାଳିଶି ବର୍ଷଯାକ ପୁଷ୍ଟ ହୋଇ ହୋଇ ଏଡ଼େ ଗଣ୍ଡି, ଏତେ ବଳ, ନାନା କ୍ଷେତ୍ରରେ ସାଫଲ୍ୟ, ଶତ୍ରୁ ଘେରିଛନ୍ତି, ଘେର କାଟି ମୁଁ ଚାଲିଛି । ବାଧା ବିପଦ ଆସିଛି । ମାଡ଼ି ଦଳି ଫଟେଇ ମୁଁ ଏତେ ବାଟ ଆସିଛି । ଆହୁରି ଯିବି, ଆହୁରି, ସମୁଦ୍ର ହଟିଛି, ଜୀବନର ଜୟଗୀତିରେ ମୋ ଅନ୍ତର ପୂରି ଉଠୁଛି ।

ଏଇ 'ଜୟଗୀତି' ବୋଲି ଶବ୍ଦଟା ସବୁ ବିଗାଡ଼ି ଦେଲା । ମନରୁ ତାକୁ ତଡ଼ିବାକୁ ଚେଷ୍ଟା କଲିଣି । କାରଣ, ନାନା ଜୟଗୀତି ବୋଲା ହେବାର ମୁଁ ଦେଖିଛି, ସେସବୁ କୃତ୍ରିମ ଶୁଭେ । ତାଠୁଁ ଭଲ ଓ ଉପଯୁକ୍ତ ହେବ କୁହାଟ ବୋଲି କହିଲେ । କିନ୍ତୁ ମୁଁ ପାଟିରେ କୁହାଟ ଛାଡ଼ିଲି ନାହିଁ, ମୋ ଚାଲି, ମୋ ଦେହହଲା, ମୋ ମୁହଁଠାଣି ବଦଳା, ମୋ ଚର୍ମରେ ପବନର ଯେଉଁ ସ୍ପର୍ଶ, ମୋଠି ଯେଉଁ ସ୍ପନ୍ଦନ, ସବୁ । ସବୁ ମିଶି ମୋର ଜୀବନ ଉଲ୍ଲାସର କୁହାଟ । ଶାମୁକାଗୁଡ଼ାକ ପଡ଼ି ରହିଛନ୍ତି ମାଳ ମାଳ ହୋଇ । କିଏ ପଚାରେ ଏମାନେ ଦିନେ ଜୀଅନ୍ତା ଥିଲେ । ସମୁଦ୍ର ପାଣିରେ ଥିଲା ତାଙ୍କ ଘରକରଣା, ତାଙ୍କ ଜୀବନର ଖେଳ ? ଚାରିଆଡ଼େ ଏଠି ସେଠି ହୋଇ ପୁଳାଏ ପୁଳାଏ । ପଡ଼ିଥାଉ । ପଡ଼ିଛନ୍ତି ଅରାଏ ଅରାଏ ହୋଇ 'ଜେଲି' ଗୁଡ଼ାଏ, ଯେମିତି ଥଲ ଥଲ ପେଜ । ପଡ଼ିଥାନ୍ତୁ, ପାଣି ଛାଡ଼ିଯାଇଛି, ଆଉ ଭାସିବେ !

ଆରେ ! ଶାଗୁଆ ହଳଦିଆ ଟୋପି ଟୋପି ଏ ଚିତ୍ରଟି କ'ଣ ? ଏଇଟାତ ସମୁଦ୍ର ସାପଟାଏ ! ଆରେ ବାପ୍‌ରେ ! ବଂଚିଛି ! କହନ୍ତି ଯେ କାମୁଡ଼ିଦେଲେ ମୃତ୍ୟୁ ସୁନିଶ୍ଚିତ, ତେଣୁ ସମୁଦ୍ର କୂଳରେ ଚାଲିଲେ ୟାଙ୍କୁ ନିଘା କରି କରି ଯିବା ଉଚିତ । ପଳେଉ ନାହିଁ କାହିଁକି ? ଆଃ, ବାଲିରେ ଚାଲିପାରିବ ନାହିଁ, ପାଣିରେ ପହଁରିବା ଜୀବ । ମାରିବି । କିନ୍ତୁ କାହିଁରେ ? ବାଡ଼ି ତ ଆଣି ନାହିଁ, ଏଠି ବା ଢେଲା ପଥର କାହିଁ ? ଟିକିଏ ଛଡ଼ାରେ ଅଟକି ଠିଆ ହେଲି । ଅସୁସ୍ଥ ଅଛି ଏଇଟା ଜଣାପଡୁଛି । ନିସ୍ତେଜ ଆଖିରେ ସମୁଦ୍ର ଆଡ଼କୁ ଅନାଇଁ ମୁଣ୍ଡୁଳା ହୋଇ ଶୋଇଛି । ଲାଗିଲା, ୟାକୁ ମାରିବା ଦାୟିତ୍ୱ ମୋରି, ମାରିବାକୁ ଅସ୍ତ୍ର କି ଶସ୍ତ୍ର ନାହିଁ, ହାତରେ କି ପାଦରେ ଛୁଇଁବାକୁ ସାହସ ନାହିଁ । ଅଥଚ ଛାଡ଼ି ଯାଇ ବି ହେଉ ନାହିଁ । ସତେ ଯେମିତି ଡୋରି ଲାଗିଯାଇଛି ଆମ ଭିତରେ !

ରାଗ ଆସୁଛି, କେଡ଼େ ଭୟଙ୍କର ଏଇଟା ? ସଂସାରରେ କାହିଁକି ଏମାନେ ଅଛନ୍ତି ? ଜାଣିପାରୁ ନାହିଁ, ତା ଆଡ଼କୁ ଚାହୁଁ ଚାହୁଁ କେମିତି ଅଜଣାରେ ମନେ ମନେ ଖସିଗଲିଣି ମୁଁ ତା ଆଡ଼କୁ, ତା ଭିତରକୁ । ତା' ଚର୍ମର ବର୍ଣ୍ଣଛଟାକୁ ମୁଁ ପ୍ରଶଂସା କଲିଣି, ଭାବିଲିଣି, ଧନ୍ୟ ସେ ବିଚିତ୍ରକର୍ମା ଯେ ସାନଠୁଁ ବଡ଼ଯାକେ ନାନା ପଦାର୍ଥରେ ନାନା ଜୀବଜନ୍ତୁଙ୍କୁ ପ୍ରକାର ପ୍ରକାର ଚମତ୍କାର କରି ଚିତ୍ର କରେ ! ତା'ପରେ ସତେ ଯେମିତି ମୁଁ ହେଲିଣି ସେ ସାପ, ପଛେଇ ଯାଇଥିବା ସମୁଦ୍ର ପାଣିକୁ ବିକଳ ହୋଇ ଅନାଇଁ ରହିଛି, କାହାର ପ୍ରାଣ ନେବା ଭଳି ସାମର୍ଥ୍ୟ କି ପ୍ରବୃତ୍ତି ମୋଠି ଅଛି ତା ମୋର କଳ୍ପନାରେ ବି ନାହିଁ, ସମୁଦ୍ରକୁ

ଦେଖୁଛି ଆଉ ଭାବୁଛି ମୁଁ ଆଉ ସେ ପାଣିକି ଲେଉଟିପାରିବି ନାହିଁ । ସେଠି ଥାଇ ମୁଁ ବି ତ ଥିଲି ଜୀବନରେ ପରିପୂର୍ଣ୍ଣ । ମୋ ଦୁନିଆରେ ମୁଁ ବି ହୋଇଥିଲି ଜଣେ, ଧାଇଁଛି, ଧରିଛି । ଖାଇଛି, ଭୋଗ କରିଛି, ନାନା ସୁଖ ନାନା ଉତ୍ତେଜନା ଅନୁଭବ କରିଛି । କେତେବେଳେ ଦୁଃଖବି, କିନ୍ତୁ ସବୁ ଦୁଃଖକୁ ଘୋଡ଼େଇ ପକାଏ ଜୀଇ ରହିବାର ଆନନ୍ଦ । ଯେଡ଼େ ନିରାଶା ଆସୁ ତାକୁ ଓଲଟାଇ ଦିଏ ଆଶା । ସେହି ସାପ ହୋଇ ମୁଁ ଅନୁଭବ କରୁଛି ଆଉ ସେ ଦିନ ଆସିବ ନାହିଁ, ଆକାଶ ତଳେ ସମୁଦ୍ର ପାଣିରେ ଦେହ ସାପେଇ ସାପେଇ ସାଇଁ ସାଇଁ ପହଁରିଯିବା ଭାସିଯିବା ଦିନ, ନାନା ବର୍ଣ୍ଣର ନାନା ଆଲୁଅ ଆଖିରେ ଦେଖିବା ଦିନ । ସେମାନେ ତା ଉପଭୋଗ କରୁଥିବେ, ସେଠି ଯେ ଅଛନ୍ତି, ମୁଁ ନୁହେଁ । ପାଣି ଛାଡ଼ିଯାଇଛି, ମୁଁ ମରି ମରି ଆସୁଛି, ତା'ପରେ ଶେଷ ।

ଚମକି ପଡ଼ିଲି । ସାଙ୍ଗମାନଙ୍କୁ ଛାଡ଼ିଦେଇ ଏକୁଟିଆ ଏଠିଟାରେ କାହିଁକି ମୁଁ ଅଟକି ଯାଇଛି ! କେଡ଼େ ଅଦରକାରୀ କେଡ଼େ ଭୟଙ୍କର ଜିନିଷ ଏଇଟା ! ଯାହା ହେଉ, ମୁଁ ନ ମାରେଁ ପଛେ, ଆପେ ସେ ମରୁଛି, ମୁଣ୍ଡଟା ଟେକିବାକୁ ଚେଷ୍ଟା କରୁଛି ଯେ ଦେହଟା ଥରୁଛି । ଟେକୁ ଟେକୁ ମୁଣ୍ଡଟା ପଡ଼ିଯାଉଛି । ସତ, ଯେ ନ ମରୁଣୁ ଯେ ଯାକୁ ପାଦରେ ମାଡ଼ିବ ତା ଜୀବନ ଯେ ନେଇପାରେ, ଗୋଟାଏ କାମୁଡ଼ାରେ । କିନ୍ତୁ ମୁଁ କ'ଣ ସେଥିପାଇଁ ଲଗା ? ନା ସଂସାରରେ ଯେଉଁଠି ଯେତେ ବିଘଟନ ଘଟୁଛି ମୁଁ ତାକୁ ରୋକିପାରିବି ?

ଚାଲିଗଲି । ତଥାପି ମୋ ଭିତରୁ ବାହାରିଗଲା ଗୋଟାଏ ଦୀର୍ଘଶ୍ୱାସ ।

ସେମାନେ ଖଣ୍ଡେ ଦୂରରେ ଅଟକିଛନ୍ତି । ମୋ ପାଇଁ ନିଶ୍ଚୟ ଅପେକ୍ଷା କରିଛନ୍ତି । ମୋର ବନ୍ଧୁମାନେ, ମତେ ଛାଡ଼ି ଯାଇପାରିଥାନ୍ତେ ! ଏତିକି ଭାବିଲାକ୍ଷଣି ମୋର ଆନନ୍ଦ, ମୋ ପାଇଁ ପାଣି ଛାଡ଼ି ନାହିଁ, ମୋ ମନରେ ସେଭଳି ଚିନ୍ତାର ଛାଇବି ନାହିଁ । ମୁଁ ଅନୁଭବ କରୁଛି ଧାଇଁଗଲା ବେଳେ ମୋର ବଳ, ମୋର ଭଲ ସ୍ୱାସ୍ଥ୍ୟ, ଦେହରେ ମନରେ ତେଜ ।

ଦୌଡ଼ି ଦୌଡ଼ି ତାଙ୍କ ପାଖେ ପହଞ୍ଚୁ ପହଞ୍ଚୁ ଟିକିଏ ଧକେଇ ହେଲିଣି । ମନେପଡୁଛି, ଚାଳିଶ ସରିଛି, ଦେହରେ ମାଂସ ଛାଟି ଛାଟି ଦେହଟାକୁ ଦମ୍ଭିଲା କରିଛି ସତ, କିନ୍ତୁ ଲେସି ଯାଇଛି ଏଠି ସେଠି ବେଶ୍ ପୁଳାଏ ପୁଳାଏ ଥଲଥଲ ଚର୍ବି, ପେଟଟା ବଢ଼ିଛି । ଅଣ୍ଟା ମାପ ଆଉ ଛବିଶ ଇଞ୍ଚ ନାହିଁ, ଦିନେ ସିନା ଥିଲା, ହେଲାଣି ଅଠତିରିଶ ଇଞ୍ଚ୍ । କିଛିଦିନ ତଳେ ସୂର୍ଯ୍ୟାସ୍ତ ବେଳେ ଏଇ ସମୁଦ୍ରକୂଳେ ଭିକାରୁଣୀ ବୁଢ଼ୀଟିଏ ମୋ ପିଛା ଧରିଥିଲା, ପଇସା ମାଗୁଥିଲା, ମତେ ସମ୍ବୋଧନ କରି ପଛଆଡୁ ଡାକ ଛାଡୁଥିଲା- "ହେ ମୋଟାବାବୁ, ହେ ମୋଟାବାବୁ !" ତା ସ୍ୱର ବିକଳ ଶୁଭୁଥିଲା । ମତେ ପରିହାସ କଲାଭଳି ଆଦୌ ତ ନୁହେଁ । ସେ ବୋଧହୁଏ ମତେ ମୋଟା କହି ପ୍ରଶଂସା ଓ ଖୁସାମତ କରୁଛି ବୋଲି ଜଣାଇବାକୁ ଚାହିଁଥିଲା, ବୋଧହୁଏ ତା ଧାରଣାରେ ମୋଟା ଲୋକେ ଧନୀ ମାନୀ ମର୍ଯ୍ୟାଦା ଓ ଖାତିରି ଥିବା ଲୋକ । କିନ୍ତୁ ମୁଁ ତ ମାରେ ନ ମାରେ, ମୁଁ

ମୋଟା ହେଲି କାହା ବାପର କଣ ଗଲା ? କାହାର ଖାଏ ନା ଧାରେ ? ଭାକ୍ ଭାକ୍ । ସେ ତ ଡରି ପଳେଇଲା । କିନ୍ତୁ ପଛେ ମୁଁ ସେକଥା ମନେ ପକାଇଲି । ମୋ ମନରେ ଚାଉଁକିନା ଗଳି ଯାଇଥିଲା ଯେ ମୁଁ ମୋଟା ହୋଇଗଲିଣି । ମୁଁ ମୋଟା । ଖେଳ କସ୍‌ରତ୍ ଦଉଡ଼ା ତିଆଁରେ ମୋର ଦିନେ ନାଁ ଥିଲା । ଛାତିରେ ବି ଦମ୍ ଥିଲା ! ଟାଙ୍କି ଦେଲେ ଇସ୍‌ପ୍ରାଙ୍ଗ୍ ପରି ଅଙ୍ଗପ୍ରତ୍ୟଙ୍ଗ, କାମ ଉପରେ ଟିକିଏ ବି କ୍ଳାନ୍ତି ନ ଥିଲା, କେଡ଼େ ନହନହକା ଥିଲା ମୋ ଦେହ, ପଦାର୍ଥ ବୋଝ କି ମଣିଷ ବୋଝ ଫୁଲ ପରି ଟେକି ରଖୁଥିଲି, ଉପରତଳ କରି ନଚୋଉଥିଲି । ସେ ପାରଗତା ଚାଲିଗଲା କୁଆଡ଼େ ? କେବେ ଯାଇ ନ ଥିବ, ମନକୁ ମୁଁ ଆଶ୍ୱାସ ଦେଇଥିଲି, ଥିବ, ବଢ଼ିଥିବ, ଦେଖେଇ ହେବାକୁ ଆଉ ମନ ହେଉ ନାହିଁ । ତହିଁ ଆରଦିନ ସକାଳେ ମୁଁ ବହୁବର୍ଷ ତଳେ ଛାଡ଼ି ଦେଇଥିବା କସ୍‌ରତ୍ ଆରମ୍ଭ କରିଥିଲି, ମତେ ନକଲ କି ଟିକଲ କଲା ପରି ମୋ ପାଖେ ପାଖେ ମୋର ସାନ ସାନ ପାଞ୍ଚ ପୁଏବି ହୋହା କରି ସେହିପରି କରିବାକୁ ବିକୃତ ଅସଫଳ ଚେଷ୍ଟା କରିଥିଲେ । ତାଙ୍କ ମା ଠିଆ ହୋଇ ହସୁଥିଲେ । ମୁଁ ତାଙ୍କ ହସ ଦେଖି ଖେଳିଥିଲି । ପାଞ୍ଚମିନିଟ୍ କରି ବନ୍ଦ କରିଥିଲି । ସେଦିନ ମୋ ଦେହ ହାତ ଗୋଡ଼ ଦରଜ ହୋଇଥିଲା । ଭଲ ଲାଗିଲେ ପୁଣି ଆରମ୍ଭ କରିବି ଭାବିଥିଲି । କରି ନ ଥିଲି । ନିଜର ଯେକୌଣସି ନିଷ୍ପତ୍ତିକୁ ସମର୍ଥନ କଲାଭଳି ନିଜ ଭିତରୁ ସବୁଦିନେ ମୁଁ ନାନା ଯୁକ୍ତି ପାଇ ଆସିଛି, ତୁନି ତୁନି ଯୁକ୍ତିଟା ବାହାରେ, ତୁନି ତୁନି ବ୍ୟାପିଯାଏ ମନ ସାରା, ସେ ବିଷୟରେ ବି ସେଇଆ । ଭାବିଲି ଶରୀର ବେଶ୍ ତ ଅଛି, ଆଉ ଅଧିକା କଣ ଲୋଡ଼ା ? କାହିଁକି କରିବି କୃଚ୍ଛ ସାଧନା ?

ଛାତି ଦୁଲ୍ ଦୁଲ୍, ସତକୁ ସତ ମୁଁ ଧକେଇ ହେଉଛି, ମନେପଡୁଛି ସେ ଭିକାରୁଣୀ କଥା, ଆଉ ମୋର ଅତୀତର କଥା । ଆଉ ସେ ସାପଟା । ଆଉ କେତେବେଳେ ଚାଉଁକିନା କେତେ ଛବି କେତେ ମହକ କେତେ ଦୁର୍ଗନ୍ଧ ହଠାତ୍ ମୋ ଚେତନାକୁ ଛାଇଯାଏ ଓ ସଙ୍ଗେ ସଙ୍ଗେ ଉଡ଼ି ପଳାଏ, ଧରି ପକାଇ ଅଟକାଇ ରଖି ନିରେଖିଲେ ଆଖି ପାଆନ୍ତା ନାହିଁ । କିନ୍ତୁ ସେ ରହେ ନାହିଁ, ଆଉ ଭିନେ କିଛି ଆସେ, ତା ବି ଯାଏ । ସେହିପରି, ନିଜ କଥା ମନେ ପଡୁ ପଡୁ ମନକୁ ପାପ ଛୁଇଁଲା- ଆଉ କୋଡ଼ିଏ ପଚିଶି ବର୍ଷ ପରେ କେମିତି ଥିବି ? ଏତିକି ନା ଆହୁରି ଆହୁରି ଖରାପ ? ମୁଁ ବି କଣ ଅଥର୍ବ ରୁଗ୍ଣ ହେବି ? ନା, ଏ ଚିନ୍ତା ମୁହୂର୍ତ୍ତେ ବି ଅଟକି ରହି ନାହିଁ, ଉଭେଇ ଗଲା । ବରଂ ମୁଁ ଆହୁରି ଉଲ୍ଲସିତ ମୁଁ ଦୌଡ଼ି ଦୌଡ଼ି ଆଇଲି ବୋଲି । ସେମାନେ ବି ହସିଲେ, ଖୁସି ହେଲେ, ସମ୍ବର୍ଦ୍ଧନା ଜଣାଇଲେ, ମୁଁ ଦୌଡ଼ି ଆସିଲି ବୋଲି । ସେମାନେ ନିଶ୍ଚୟ କେବେ ଦୌଡୁ ନ ଥିବେ, ତାଙ୍କୁ ଦୟନୀୟ ବୋଲି ମୁଁ ଭାବିଲି । ଦୌଡ଼ିବାର ଉପକାରିତା ବିଷୟରେ ଗୋଟିଏ ଛୋଟ ବକ୍ତୃତା ଦେଲି । ଆଉ, ମୁଁ ଦୁଃଖ ପ୍ରକାଶ କଲି, ସେମାନେ ବି ଏକମତ ହେଲେ, ଯେ ବୃଥା ନିରର୍ଥକ ସଂସ୍କାର ଆମୁକୁ ଏଭଳି ବାନ୍ଧିଛି ଯେ ଆମେ ଯେଉଁମାନେ ପାଠ ପଢ଼ିଲାବେଳେ ଆନନ୍ଦରେ ଦୌଡୁଥିଲୁଁ, ଦୌଡ଼ିଲେ ଆନନ୍ଦ ପାଉଥିଲୁଁ, 'ଭଦ୍ରଲୋକ' ହେଲା ପରେ ଦୌଡ଼ିଲେ ଆମୁକୁ ଲାଜ ମାଡ଼େ, ଆମେ ଦୌଡୁ ନାହିଁ ।

ତା'ପରେ ଆମେ ସେଇଠି ବସି ଗୋଡ଼ ଲମ୍ବେଇ ଦେଇ ସମୁଦ୍ରକୁ ଅନାଇଁ ଗପ କଲୁ । ଆମ ଗପ ଭିତରକୁ ଆସିଗଲା ସମୁଦ୍ର କୂଳ ବୁଲା ଅଭିଜ୍ଞତାରୁ କୋଠାମାନଙ୍କ ଅବସ୍ଥା କଥା । କେଡ଼େ ସୁନ୍ଦର ପୁରୁଣା ଦାମୀ ଦାମୀ କୋଠା ଆମେ ଦେଖିଥାଉଁ, ବଡ଼ ବଡ଼ ସହରର ବଡ଼ଲୋକମାନେ କେବେ ସଉକରେ ତୋଳାଇଥିଲେ, ଲୁଣି ହାଓ୍ୱା ମାଡ଼ ଖାଇ ଖାଇ କି ଅବସ୍ଥା ତାର ହେଲାଣି, କେତେ ଭାଙ୍ଗିଲାଣି, ବାଲି ଉଡ଼ି ଅଧା ଅଧା ପୋତି ହେଲାଣି, କୁଆଡ଼େ ଗଲେଣି ଯେ ତାକୁ ତୋଳେଇଥିଲେ ! ତଥାପି ଅନବରତ ବାଜି ଲାଗିଛି, ଲୁଣି ହାଓ୍ୱା, ବାଲି ମାଡ଼, ବାଲି ଉଡୁଛି ଓ କେଉଁ ଅଜଣା କାଳରୁ ଗଡୁଛି ଏଠି ସମୁଦ୍ର, ଅନେଇଁ ଦେଲେ ନିଜକୁ ସଂପର୍କିତ କରିହୁଏ ସାରା ପୃଥିବୀର ସବୁ ମହାଦେଶ ସଙ୍ଗେ ଓ କେତେ ଜଣାଶୁଣା କି କଳ୍ପିତ ଇତିହାସର ଘଟଣା ଘଟିଯାଇଛି ଏ ସମୁଦ୍ର କୂଳରେ, କେତେବେଳେ କେମିତି ହୋଇଥିବ କେଉଁ ଘଟଣାର ରୂପ ଓ ଆମେ କ୍ରମେ ଆମ ଗପରେ ପହଞ୍ଚିଗଲୁଁ ଆମ ଜାଣତା ଅମଳଠିଁ, ଆସିଗଲା ରାଜନୀତିର କ୍ରମ କଥା, ଗୋଟାକ ପରେ ଗୋଟାଏ ହୋଇ ପ୍ରକାର ପ୍ରକାର ଚିତ୍ର, ସେମିତି ସମାଜ ଅବସ୍ଥା, ସେମିତି କେତେ କଥା ।

ଆମେ ଗପିଗଲୁଁ, ଯେମିତି ସମସ୍ତେ ବସି ଗପନ୍ତି, ଯେମିତି ଠିକ୍ ସେଇଠି ବସି ଆମ ଆଗରୁ ତା ଆଗରୁ ତା ଆଗରୁ ଗପିଥିବେ କେତେ କେତେ ଲୋକ, ସବୁ ଗପ ଶବ୍ଦ ଉଡ଼ିଯାଇଥିବ, ଲାଗି ରହିଥିବ ସମୁଦ୍ରର ଘୋ ଘା, ଏବେବି ଯେମିତି, ସେମିତି ଗପି ଗଲୁଁ । ଆମେ ଗପିଛୁଁ ବୋଲି ଆନନ୍ଦ ପାଇଲୁଁ ।

କେଡ଼େ ଚଞ୍ଚଳ ମୋ ଗୋଡ଼ କରରେ ଥୋଡ଼ାଏ ବାଲି ଜମା ହେଲାଣି, ପବନରେ ଉଡ଼ି ଲୁଣି ବାଲି ମୋ ଉପରେ ପଡ଼ିଲାଣି । ଆଃ ! ଏ ସାନ ପିଲାଙ୍କର କି ଆନନ୍ଦ, କି ଉତ୍ସାହ ! ବାଲିରେ ଘର, ପୋଖରୀ, ପାଚିରି କେତେ କଥା କଲେଣି । ବାଲିରେ କେତେ ଛବି ଆଙ୍କିଲେଣି, ଅକ୍ଷର ଲେଖିଲେଣି । ଆଉ ଥୋକେ ଡେଉଁଛନ୍ତି, ଧାଉଁଛନ୍ତି, ଆଉ- କେଡ଼େ ବିପଦ କଥା ! ଧାଇଁଯାଉଛନ୍ତି ଡାଲୁଏ ଡାଲୁଏ ଲେଉଟି ପଳେଉଥିବା ଲହଡ଼ି ପାଣି ପଛେ ପଛେ, ପାଣି ମାଡ଼ି ଆସିଲାବେଳେ ପଛକୁ ଦୌଡ଼ି ଆସୁଛନ୍ତି । ବିପଦ । ବିପଦ । କେତେବେଳେ ପଳେଇପାରିବେ ନାହିଁ, କେତେବେଳେ ପଛଆଡୁ ଉପରଆଡୁ ବୁଲି ଆସି ପାଣି ପେଲି ନେବ, ସମୁଦ୍ର ସଂଗରେ ଗେଲ ! ଏଁ !

ଆସରେ ପିଲେ, ଯିବା ଚାଲ । ଆମେ ଡାକୁଛୁଁ, ଆମେ ଧରୁଛୁଁ, ଓଟାରୁଛୁଁ, ଆମେ ଲେଉଟି ଯାଉଛୁଁ । ପିଲାଏ ଆମ ଆଗେ ଆଗେ ବାଲିରେ ଡେଇଁ ଡେଇଁ ଦୌଡ଼ି ଦୌଡ଼ି ଯାଉଛନ୍ତି, ଆମ ଉପରକୁ ଧୂଳି ଉଡୁଛି ।

ସୂର୍ଯ୍ୟ ଅସ୍ତ ଯାଇ ସୂର୍ଯ୍ୟାସ୍ତର ରଙ୍ଗ ନିଭି ନିଭି ଆସିଲାଣି, ମୁଁ ଆଉ ଗପୁ ନ ଥିଲି, ଗୁମ୍ ଥିଲି ।

ମନେ ପଡ଼ିଲା, ସାପଟା କ'ଣ ମରିବଣି ?

# ବନ୍ଦ ଝରକା

କେବଠୁ ତାଙ୍କୁ ଅଡୁଆ ଅଡୁଆ ଲାଗୁଥିଲା, କଣ ବିଗିଡ଼ିଛି ସେ ଜାଣିପାରୁ ନ ଥିଲେ, ପୁଣି ଭୁଲି ଯାଉଥିଲେ । ତା'ପରେ ଦି'ଦିନ ହେଲା ହଠାତ୍ ମନେ ମନେ ଗୋଟାଏ ଆବିଷ୍କାର, ଯେ ଝରକାଟା କେଜାଣି କେବଠୁଁ ବନ୍ଦ ଅଛି ।

ଲାଗୁଛି, ସତେ ଯେପରି ତାଙ୍କ ବସିବା ଘରର ଝରକା, ଯେଉଁ ଟେବୁଲ୍ ପାଖେ ସେ ବସନ୍ତି, ତାହାରି ସାମ୍ନା ଝରକା, ପୂର୍ବମୁହାଁ, ସେହି ଝରକା । ସେହି ବାଟେ ତ ତାଙ୍କୁ ସବୁ ଦିଶେ । ନିଜ ବାହାର ଆଉ ଭିତର । ବସୁ ବସୁ କେତେବେଳେ ଆଖି ବୁଜି ହୋଇଯାଏ, ତଥାପି ଭିତରେ କେତେ କଣ ଦିଶୁଥାଏ । କେତେବେଳେ ଚେଇଁଥାଇ ଆଖି ମେଲା କରି ଚାହୁଁ ଚାହୁଁ ନିଜ ଭିତରର କେତେ ଭାବ କେତେ ରଙ୍ଗ କେତେ ଛବି ବାହାରର ଦୃଶ୍ୟ ସହିତ  ମିଶି ଯାଇଥିବାର ସେ ଚମକିପଡ଼ି ଅନୁଭବ କରନ୍ତି, ପୁଣି ଭାବୁଥାନ୍ତି, ସବୁବେଳେ ବୋଧହୁଏ ସେଇଆ, ଭିତର ବାହାର ଏକାକାର, ତା ନ ହେଲେ ମଣିଷଟା ପଥର, ନିଶ୍ୱାସ ନେଇ ପ୍ରଶ୍ୱାସ ଛାଡ଼ି ତ ମଣିଷ ବଞ୍ଚେ ।

କିନ୍ତୁ ହେଇ ତ ସାମ୍ନାରେ, ସେ ଝରକା ବି ଖୋଲା ଅଛି । ଦଶହାତ ଦୂରରେ ଘରର ପାଚିରି । ତା ସେପାଖେ ସଡ଼କ । ଶରତ୍ ସରୁଛି ଶୀତ ଆସୁଛି, ଧୂଳି ଉଡ଼େଇ ଆଦ୍ୟ ଦ୍ୱିପ୍ରହରେ ଧାଉଁଛି ଟ୍ରକ୍, ସ୍କୁଟର, କାର୍, ରିକ୍ସା, ସବୁଦିନ ପରି । ତା' ସେପାଖେ ବଡ଼ ତିନି ମାହାଲା କୋଠା । ଭାଗ ଭାଗ ହୋଇ ଭଡ଼ା ଲାଗିଛି, ତଳେ ଗୋଟିଏ ଅଫିସ୍ । ନୂଆ କଣ ତାଙ୍କର ସବୁ ଘରର ସବୁ ଝରକା ତ ଖୋଲା ଅଛି, ଯେମିତି ସବୁଦିନେ ଥାଏ, କେଉଁଟିରେ ପର୍ଦ୍ଦା, କେଉଁଟିରେ ଲାଗି ନାହିଁ, ଆବଶ୍ୟକ ଅନୁସାରେ ।

କିନ୍ତୁ ତାଙ୍କ ମନ ସତେ ଯେପରି ଦୁଇ ଭାଗ ହୋଇଗଲା, ଭାଗେ ଯେ ଦେଖେ, ଅନୁଭବ କରେ ଯୁକ୍ତିରେ ସିଦ୍ଧ କରି, କିନ୍ତୁ ସେ ଅନୁଭବ ତାଙ୍କ ଚେତନାକୁ ଭେଦେ ନାହିଁ, ଆଖିରେ ଦେଖିଲେ ବି ସତ ବୋଲି ବିଶ୍ୱାସ ଉପୁଜାଇ ହୁଏ ନାହିଁ, ଯେପରିକି ନିଜର ଦେଖା ନୁହେଁ, ଆଉ କାହାର । ଆର ଭାଗଟା ଦେଖେ, ପ୍ରମାଣ ଓ ଯୁକ୍ତିକୁ ଏଡ଼େଇ ଦେଇ ଅନ୍ୟ କିଛି ଅର୍ଥ ନିଏ ଯାହା ତାର ଚେତନାକୁ ଭେଦେ । ସେହି ଆର ଭାଗଟା ଅର୍ଥ ଘେନିଥିଲା- ନା, ଏ ଝରକା ବନ୍ଦ ଅଛି, ଦେହର ଅଙ୍ଗ ହୋଇଥିଲା, ଯୁଆଡ଼େ ଗଲେ

ଥିଲା ସାମ୍ନାରେ, କେତେକାଳୁ ବନ୍ଦ ଅଛି, ତାଙ୍କୁ କଣ ଘୋଟିଛି କେଜାଣି, ତାକୁ ଖୋଲିଦେବା କି କାହାଦ୍ୱାରା ଖୋଲେଇ ଦେବା ତାଙ୍କ ଦ୍ୱାରା ସମ୍ଭବ ହେଉ ନାହିଁ ।

କିନ୍ତୁ ସେ ଭାବୁଥିଲେ, ବାକି ସବୁ ଠିକ୍ ଚାଲିଛି । ତାଙ୍କର ବୟସ ଚଉସ୍ତରି ଚାଲିଲାଣି । ତାଙ୍କ ସଙ୍ଗର କେତେଜଣ ଗଲେଣି, କେତେଜଣ ଅଚଳ ବି ହେଲେଣି, ଯଦିଚ କେବେ କେବେ ଏପରି କେତେକଙ୍କୁ ସେ ଦେଖନ୍ତି ଯେଉଁମାନେ ଏବେବି ବଳୁଆ କାମିକା ଅଛନ୍ତି । ତାଙ୍କ ଡେଙ୍ଗା ଦେହ ଟିକିଏ ନଇଁଥିବାର ସେ ଚାଲିଲାବେଳେ ଦେଖାଯାଏ । ବେଳେବେଳେ ଆଣ୍ଠୁର ଗଣ୍ଠି ଧରେ, ରହି ରହି ଧୀରେ ଧୀରେ ଚାଲନ୍ତି । ଶରୀର ମାଂସଳ ଥିଲା, ହୃଷ୍ଟପୁଷ୍ଟ ଥିଲା, ଗୋରା ଦେହରୁ ଝଲି ଫିଟୁଥିଲା, ଶୁଖିଶାଖି ଯାଇଛନ୍ତି, ଏଡ଼େ ମୁହଁ ସାନ ହୋଇଯାଇଛି, ରଙ୍ଗ ମଉଳିଯାଇଛି । ସେ ଯେଉଁ ସଦାପ୍ରସନ୍ନ ନିର୍ଭୀକ ଆଶାୟୀ ମୁହଁ ଅନ୍ୟଠି ସାହସ ବିଶ୍ୱାସ ସଞ୍ଚାର କରୁଥିଲା ସେ ଏବେ ହାଡ଼ ହାଡ଼ ଗାଡ଼ ଗାଡ଼ । ଦେହର ମନର ସେପରି ନାନା ପରିବର୍ତ୍ତନ ସେ ବୁଝି ବି ବୁଝନ୍ତି ନାହିଁ, ତାଙ୍କ ନିଜ ବିଷୟରେ ଅତୀତରୁ ଏକପ୍ରକାର ଅସ୍ପଷ୍ଟ ଧାରଣା ରହି ଆସିଛି, ସେ ଅତୁଟହିଁ ରହିଥାଏ । କେତେବେଳେ ବେମାର ପଡ଼ିଯାନ୍ତି, ଡାକ୍ତର ଦେଖାନ୍ତି, ଔଷଧ ଖାଆନ୍ତି, ବିଶ୍ୱାସ କରନ୍ତି ଯେ ଛାଡ଼ିଯିବ । ବେଶି ବେଶି କ୍ଲାନ୍ତ ଲାଗେ, ଅଳ୍ପ ଚାଲିଲେ ଥକିଯାନ୍ତି, ଦୁର୍ବଳ ଲାଗେ, ସେ ମାନି ନିଅନ୍ତି ଏସବୁ ହେବହିଁ, ବୟସ ଘେନି ଜରା ଆସେ, କିନ୍ତୁ ସେଥିପାଇଁ ନିରାଶ କି ବେଶୀ କାତର ହୁଅନ୍ତି ନାହିଁ, ଲାଗେ ନାହିଁ ଯେ ସେ ବିପନ୍ନ । ନିୟମିତ ଭାବେ ଖାଇପାରୁଛନ୍ତି, ଯଦିଚ ଆହାର ଅଳ୍ପ, ପ୍ରତିଦିନ ନିଦ ଠିକ୍ ସମୟରେ ଆସେ, ମଝିରେ ଭାଙ୍ଗେ ନାହିଁ, ଚଷମାଦିଆ ଆଖିରେ ଦେଖିହୁଏ, ପଢ଼ିହୁଏ । କରି ହୁଏ ନାହିଁ ତ ବହୁତ ବହୁତ କଥା, କିନ୍ତୁ ସେସବୁ କରିବାକୁ ପ୍ରବୃତ୍ତି ନ ଥାଏ କି ସେ ବାଧ୍ୟ ନୁହନ୍ତି । ଘରର ଜଞ୍ଜାଳ କି ପ୍ରୟୋଜନ ବିଷୟରେ ଭାବିବାକୁ ପଡ଼େ ନାହିଁ, ଚଉଷଠି ବର୍ଷରେ ତାଙ୍କ ସ୍ତ୍ରୀ ମନୋରମା ସେସବୁ କାର୍ଯ୍ୟରେ ଏବେବି ଲିପ୍ତ ଓ ଧୁରନ୍ଧର, ତାଙ୍କ ସାଙ୍ଗକୁ ଘରେ ପୁଅ ବନୁର ଓ ତା ସ୍ତ୍ରୀର ନିଘା, ବନୁଦ୍ୱାରା ମାଟ୍ରିକୁଲେସନ୍ ପାସ୍ ବି ହେଲା ନାହିଁ; କିନ୍ତୁ ଏବର ସଂସାରୀ ଚଳଣି ଗତରେ 'ବିଜ୍‌ନେସ' ହେଲା, ଧନ ଅର୍ଜନ, ନା ମଣ୍ଡଳିରେ ପ୍ରତିଷ୍ଠା, କେତେ ପ୍ରକାର ଦକ୍ଷତା କି କ୍ଷମତା ବି ତାକୁ ମିଳିଗଲା । ତାର ସେ ଯାହା କରୁ ସେ ମୁଣ୍ଡ ଖେଳାନ୍ତି ନାହିଁ, ଭଲରେ ଅଛି, ତାଙ୍କର ତତ୍ତ୍ୱ ନିଏ । ତା ଉପରର ଚାରି ଭଉଣୀ, ସ୍ୱାମୀ ସନ୍ତାନ ଘେନି ଆପଣା ଆପଣା ସଂସାରରେ ଭଲରେ ଅଛନ୍ତି । ଦୂରରେ ଥାଇ ବି ଝିଅ ଜୋଇଁ ଚାରିହେଁ ବାପା ବୋଉଙ୍କର ଖବର ବୁଝୁଥାନ୍ତି, ଯା ଆସ କରନ୍ତି, ଚିଠିପତ୍ର ନିୟମିତ ଭାବେ ଦିଅନ୍ତି ହିଁ । ସେ ନିଜର ବିଶ୍ୱାସ ଉପୁଜାଇ ଭାବିପାରନ୍ତି, ଆଉ କାହା ପାଇଁ ତାଙ୍କର କର୍ତ୍ତବ୍ୟ ବୋଲି ଜରୁରି କିଛି ନାହିଁ । ଖାଲି ନିଜ ମନରେ ଚଳି ଆସୁଥିବା ମାନ୍ଦା ଶାନ୍ତି ଅତୁଟ ରହିଥିବା ଦରକାର, ଯେମିତି ଟୁବି ଗାଡ଼ିଆର

ବହଳ ନେଳି ମିଶା ପାଣି ଉପରେ ଘିର ଅଛିଣ୍ଡା ସରଟିଏ, ଏମୁଣ୍ଡରୁ ସେମୁଣ୍ଡ । ତା'ତ ଥିଲା, ଅଳସ ଅବସର କଟିଯାଉଥିଲା ମନକୁ ମନ, ପଢ଼ିଲେ ବେଳ କଟିଲା, ସେତ ତା'ର ସାମାନ୍ୟ ଅଂଶ, ବେଶି ବେଳ ଚୁପ୍ ଚାପ୍ ବସି, ଚାହିଁ, ସେତେବେଳେ-ଦିଶିଯାଉଥିଲା କେତେ କଥା, ଦୂରକୁ ଦୂରକୁ, ଆହୁରି ଦୂରକୁ, କୁଆଡୁ ସେ ଆସେ, କେତେ ଲମ୍ବିଯାଏ, ସରେ ନାହିଁ, ତାର ପୁଣି ବିଶିଷ୍ଟ ସ୍ୱଭାବ, ତା ସ୍ମୃତି ମନରେ ରହେ ନାହିଁ, ଚାହୁଁ ଚାହୁଁ ନିଭିଯାଏ, ପୁଣି କଣ ନୂଆ ଆସେ, ଯାଏ, କ୍ଳାନ୍ତି ରହେ ନାହିଁ, ଘଣ୍ଟାର କଣ୍ଟା ଗଡ଼ି ଚାଲେ, ସେ କଣ କରୁଛନ୍ତି ସେ ଜାଣନ୍ତି ନାହିଁ ।

କିନ୍ତୁ ସେ ବାଟ ତ ବୁଜି ହୋଇଗଲା ଲାଗୁଛି, ଝରକା ବନ୍ଦ, ତା'ହେଲେ କଣ ହେବ !

ରଙ୍କମଣି ବିଶ୍ୱାଳ ସରକାରୀ ହାଇସ୍କୁଲରେ ଶିକ୍ଷକ ଥିଲେ, ନାନା ସ୍ଥାନରେ କାର୍ଯ୍ୟ କରିଥିଲେ, କାଳକ୍ରମେ ହେଡ୍‌ମାଷ୍ଟର ହୋଇଥିଲେ ଓ ସେହି ଅବସ୍ଥାରେ ବୟସ ହୋଇଯିବାରୁ ସେ ଚାକିରିରୁ ଅବସର ନେଇ ପେନ୍‌ସନ୍ ପାଇଥିଲେ । ତା'ପରେ ଡକରା ପାଇ ସାନ ମଫସଲୀ-ସହରରେ ଗୋଟିଏ ବେସରକାରୀ ହାଇସ୍କୁଲ୍‌ର ହେଡ୍‌ମାଷ୍ଟର ହୋଇ ଯାଇଥିଲେ, କିନ୍ତୁ ସେଠି ଖୁବ୍ ଉତ୍ସାହରେ କାମ ଆରମ୍ଭ କରି ଦେଇ ଏଭଳି ଅପ୍ରୀତିକର ଓ ଅସମ୍ମାନଜନକ ଅବସ୍ଥା ଦେଖିଲେ ଯେ ଇସ୍ତଫା ଦେଇ ଚାଲିଆସିଲେ । ସେ ଅନୁଷ୍ଠାନର ଶିକ୍ଷକ ସଂପ୍ରଦାୟ, ଛାତ୍ର ସଂପ୍ରଦାୟ, ସବୁଠି ବିଶୃଙ୍ଖଳା, ଅସୌଜନ୍ୟ, ଦଳ ଦଳ ହୋଇ ପରସ୍ପର ସଂଗେ ଶତ୍ରୁତା ଓ ଯୁଦ୍ଧ, ସେମାନଙ୍କ ପଛରେ ବିବିଧ ପରସ୍ପର ବିରୋଧୀ ସ୍ଥାନୀୟ ତଥାକଥିତ ରାଜନୀତିକ ମୁଖିଆ, ପାଠ ପଢ଼ାଇବା ପାଇଁ ଉପଯୁକ୍ତ ବ୍ୟବସ୍ଥା କି ଉପକରଣ ନାହିଁ କି ହେବାର ସମ୍ଭାବନା ନ ଥାଏ, ଯେଉଁମାନେ ହାଇସ୍କୁଲର ପରିଚାଳକ ମଣ୍ଡଳିର ସଭ୍ୟ ସେମାନେ ଖାଲି ଯେ ସ୍କୁଲ୍‌ର ସମସ୍ୟା ପ୍ରତି ଉଦାସୀନ ଜଣାପଡୁଥିଲେ ସେତିକି ନୁହେଁ । ତାଙ୍କ ଭିତରେ ବି ନାନା ମତାନ୍ତର ଓ ଦଳାଦଳି ଥିଲା ବୋଲି ଲାଗୁଥିଲା, ଦଳେ ଗୋଟିଏ ପ୍ରକାର କହିଲେ ଆଉ ଦଳେ ଭିନ୍ନେ ପ୍ରକାର କହୁଥିଲେ, ସେମାନେ ପରୋକ୍ଷରେ ସ୍କୁଲ୍ ଛାତ୍ର ଓ ଶିକ୍ଷକଙ୍କ ନାନା ଦଳକୁ ମତାଉଥିବାର ସାହସ ଦେଉଥିବାର ଖବର ମିଳୁଥିଲା, ଅଥଚ ସେମାନେ ସମସ୍ତେ ଚାହୁଁଥିଲେ ଯେ ହେଡ୍‌ମାଷ୍ଟର ନିଜର କି କୁହୁକ କି ଦକ୍ଷତା ବଳରେ ସ୍କୁଲଟାକୁ ଚଳାଇ ନିଅନ୍ତୁ, ସେଠି ସବୁ ଅଧିକରୁ ଅଧିକ ଭଲ ହେଉଛି ବୋଲି ସ୍କୁଲର ଯଶ ବ୍ୟାପୁ, ଦେଶ ନେତାମାନେ ବି ଦେଖନ୍ତୁ, ସ୍କୁଲ୍‌ର ପରିଚାଳନା ସମିତିର ସଭ୍ୟମାନେ କେଡ଼େ ପାରଙ୍ଗମ ।

ସେ ସେଠୁ ଫେରିଆସିଲା ପରେ ଅନ୍ୟ କେତୋଟି ବେସରକାରୀ ବିଦ୍ୟାଳୟରୁ ଡକରା ପାଇଥିଲେ, କିନ୍ତୁ ପ୍ରଥମଟିର ତିକ୍ତ ଅନୁଭୂତି ସେ ଧାରଣା ପ୍ରତି ତାଙ୍କୁ ସଂପୂର୍ଣ୍ଣ ବିମୁଖ କରି ଦେଇଥିଲା, ମନା କରିଦେଲେ ।

ସମୟ କଟାଇବାକୁ ଆପଣା ଘରେ ସକାଳଓଳି ପିଲାଙ୍କୁ ଟିଉସନ ପଢ଼ାଇବାକୁ ମନସ୍ଥ କଲେ । ଯାହା ପାରିଲେ ଦିନା କେତେ ବୁଲି ବୁଲି କେଉଁଠି କେଉଁଠି ସଂକୋଚରେ ନିଜ ଉଦ୍ଦେଶ୍ୟ ପ୍ରକାଶ କଲେ । କିନ୍ତୁ କେହି ଆସିଲେ ନାହିଁ । ଏଠି ସ୍କୁଲ୍ ଅନେକ, ଛାତ୍ର ଅସଂଖ୍ୟ, ଟିଉସନ୍ ବି ଅନେକେ ପଢ଼ନ୍ତି, କେଉଁ ଟିଉସନ୍ ମାଷ୍ଟରଙ୍କ ପାଖେ ଏତେ ଭିଡ଼ ଯେ ଘରେ ଦୁଇ ଓଳି କ୍ଲାସ୍ ଖୋଲି ରଖି ସ୍କୁଲ ଖୋଲିଲା ପରି ଏକାଠି ଅନେକ ଛାତ୍ରଙ୍କୁ ନେଇ ସୁଦ୍ଧା ଆହୁରି ଭିଡ଼ ହୁଏ । କିନ୍ତୁ ସେ ବି ଗୋଟିଏ ବ୍ୟବସାୟ କ୍ଷେତ୍ର, ତା'ର ଗତଗାତ ଭିନ୍ନେ, ବିଜ୍ଞାପନ, ପ୍ରଚାର ଓ ଆକର୍ଷଣର ସ୍ୱତନ୍ତ୍ର ମାର୍ଗ ଅଛି, ସେ କ୍ଷେତ୍ରରେ ସେ ଅଚିହ୍ନା ଓ ଅଲୋଡ଼ା ।

ସେ ଅନ୍ୟ ନିଯୁକ୍ତି ପାଇଁ ଚେଷ୍ଟା ନ କରି ଘରେ ବସିଲେ । ତାଙ୍କ ଆଖି ଆଗରେ ତାଙ୍କ ପୁଅ ବନୁର ଦୁଇ ପୁଅ କୁନୁ ଓ ଟୁନୁ ଓ ଦୁଇ ଝିଅ ଗୀତା ଓ ରୀତା ବଢ଼ିଉଠିଲେ, ଇସ୍କୁଲ ଗଲେ, କିନ୍ତୁ ଆଜୀବନ ଶିକ୍ଷକତା କରି ସେ ସେମାନଙ୍କୁ ନିଜେ ପଢ଼ାଇପାରିଲେ ନାହିଁ । ସେମାନଙ୍କ ଆଖିରେ ସେ 'ଜେଜେ', ମନ ହେଲେ ଯାହାଙ୍କ ସଙ୍ଗେ ଖେଳିହୁଏ, ସେ କିଛି ପଢ଼ାଇବାକୁ ଚାହିଁଲେ ସେମାନେ ହସରେ ଉଡ଼ାନ୍ତି, ଖେଳନ୍ତି, ସେ ମୁହଁ ଲଦିଲେ ପଳାନ୍ତି । ତାଙ୍କ ଆଖିରେ ସେମାନେ ଖାଲି ସ୍ନେହ ଆଦର ଯତ୍ନର ପାତ୍ର ପାତ୍ରୀ ଭଳି ଦିଶନ୍ତି, ସେମାନଙ୍କ ଉପରେ ଟାଣ ହେବା ତାଙ୍କ ଦେଇ ହୁଏ ନାହିଁ । ସେମାନଙ୍କ ପାଇଁ ବନୁ ଟିଉସନ ମାଷ୍ଟର ନିଯୁକ୍ତ କଲା, ଅଲଗା ଅଲଗା ବଖରାରେ ପାଠ ପଢ଼ନ୍ତି, ପଢ଼ାନ୍ତି କେଉଁ କେଉଁ ସ୍କୁଲ୍ ଶିକ୍ଷକ, 'ଜେଜେ' ସେଠିକି ଯାଆନ୍ତି ନାହିଁ, ଭାବନ୍ତି ଗଲେ ପିଲାଙ୍କ ମନ ଖଇଚା ହେବ ।

ବନୁର ପଢ଼ିବାକୁ ଝୁଙ୍କ ନ ଥିଲା, କିନ୍ତୁ ତାର ବୈଠକ୍‌ଖାନାରେ ରଖିବାକୁ ସେ ନାନା ପ୍ରକାର ପତ୍ରିକା କିଣୁଥିଲା । ସେ ଘର ଆଲମାରିରେ ମଝିରେ ମଝିରେ କିଣି ଆଣି ସେ କିଛି ବହି ରଖୁଥିଲା, କେତୋଟି ଦୈନିକ ଖବରକାଗଜ ରଖୁଥିଲା । ଯେ ଆସିବେ ସେ ଦେଖିବେ, ସେ ବି ଆଧୁନିକ ଓ ଶିକ୍ଷିତ, ଖାଲି ବ୍ୟବସାୟ କରେ ସେତିକି ନୁହେଁ । ନାନା ଧର୍ମଗ୍ରନ୍ଥ ପଢ଼ିବା ଛଡ଼ା ରଙ୍କମଣିବାବୁ ସେସବୁ ବି ପଢୁଥିଲେ । ପ୍ରତିଦିନ ଉପରଓଳି ସହରର ଯାନବାହନବହୁଳ ଧୂଳିଆ ସଡ଼କରେ ଖଣ୍ଡେ ବାଟ ବୁଲି ଆସୁଥିଲେ । ଏଠି ସାଙ୍ଗସାଥୀ ତାଙ୍କର ନାହାନ୍ତି, କିନ୍ତୁ ତାଙ୍କର ଚଳି ଯାଉଥିଲା । କେବେ କେବେ କେଉଁଠି କିଛି ଧର୍ମ କି ସଂସ୍କୃତି ବିଷୟରେ ସଭା ହେବାର ଅଛି ଶୁଣିଲେ ସେଠି ବି ପହଞ୍ଚି ଯାଉଥିଲେ । କେବେ ଓ କି ପ୍ରକାରେ ସେ ଧୀରେ ଧୀରେ ଏଥିରୁ ସଂକୁଚିତ ହୋଇଗଲେ, ସେ ଜାଣନ୍ତି ନାହିଁ ।

ଯେଉଁ ଶିକ୍ଷା କ୍ଷେତ୍ରରେ ସେ ତାଙ୍କ ଜୀବନର ସମୁଦାୟ କାର୍ଯ୍ୟକାରୀ ଓ ଅସଲ ଭାଗଟି କଟାଇଦେଲେ ସେ ସେହି କ୍ଷେତ୍ରକୁ ଚାହିଁଲେ ଆକାଶପାତାଳ ଭାବି ହୁଅନ୍ତି । ଏତେ ସ୍ୱପ୍ନ ଆଦର୍ଶକୁ ଆଖି ଆଗରେ ନିଷ୍ଠାପର ଭାବରେ ସେ ଯେଉଁ ଶିକ୍ଷାଦାନ କରି

ଆସିଲେ, ଶେଷରେ କଣ ବା ହେଲେ ତାକୁ ପାଇଥିବା ଛାତ୍ରଛାତ୍ରୀ ! ସମାଜରେ ସଂସାରରେ କାର୍ଯ୍ୟକ୍ଷେତ୍ରରେ କେଉଁଠି ଫୁଟିଲା ସେ ଶିକ୍ଷା, ନୀତି ଆଦର୍ଶ ସଦ୍‌ଗୁଣ ସଦ୍‌ବିଚାର ଆତ୍ମସଂଯମ ଶାନ୍ତିଶୃଙ୍ଖଳା ! କ'ଣ ଆଗେଇ ପାରିଲା ! ସଂସାରୀ ଯୁଦ୍ଧରେ ଜିତିବାକୁ, ସଂସାରୀ ମୂଲ୍ୟରେ ଦାମୀ ହେବାକୁ, କଣ କାଟୁ କଲା ତହିଁରୁ ? ଖବରକାଗଜ ଖୋଲିଲେ ନାନା ବିଭୀଷିକାର ସମ୍ବାଦ, ନାନା ଅପ୍ରୀତିକର ଭୟଙ୍କର ଅଶୋଭନୀୟ ଘଟନାର କଥା. ଆତଙ୍କ ଆଉ ଅଶାନ୍ତି, ନୈରାଶ୍ୟ ଆଉ ବିଷ । କାନ ଡେରିଲେ ମିଛ ଆଉ ଉତ୍ତେଜନା ଆଉ ଆଶଙ୍କା, ବିଷ, ବିଷ, ବିଷ । ଚାରିଆଡ଼େ ସତେକି ପ୍ରତାରଣା ଆଉ ଅବିଶ୍ୱାସ, ଯେଉଁ ବାଗରେ ହେଉ, ପ୍ରକାର ପ୍ରକାର ଶୋଷଣ ପାଇଁ ଫନ୍ଦି: ସ୍ୱାର୍ଥ, ଲୋଭ, ହିଂସାର ଦୁନିଆ, କେହି ନିଜକୁ ରୋକିବାକୁ ବଦଳିବାକୁ ଚାହେଁ ନାହିଁ, ସମସ୍ତେ ଚାହାନ୍ତି ସଂସାରକୁ ସବୁ ଭଲ ମାଡ଼ିଯାଉ । ଯେ ଧର୍ମ କଥା ପରକୁ ବୁଝାଏ ସେ ନିଜେ ଧର୍ମ ଆଚରଣ କରେ ନାହିଁ, ଯେ ନାନା ନୀତି ଆଦର୍ଶ କଥା ବକ୍ତୃତା ଦିଅନ୍ତି, ସଭାରେ ଭାବ ଗଦ୍‌ଗଦ ହୁଅନ୍ତି ସେ ନିଜେ ତାର ନମୁନା ନୁହନ୍ତି ।

କ୍ରମେ ତାଙ୍କ ଶାସ୍ତ୍ର ପଢ଼ା ବି ଧିମେଇ ଆସିଲା, ବାରମ୍ବାର ମନ ଭିତରେ ଅମେଣ୍ଟା ପ୍ରଶ୍ନ ଉଠିଲା, କାହିଁକି ଏସବୁ ? ଇହକାଳ ପରେ ସ୍ୱର୍ଗଭୋଗ ? ସୁଖ ଆନନ୍ଦ ଐଶ୍ୱର୍ଯ୍ୟମୟ ପରଜନ୍ମ ? ସତ କି ମିଛ ମତେ ଗୋଚର ନୁହେଁ, ଯଦି ସତ ବି ହୋଇଥିବ ତେବେ ଏ ଜନ୍ମର ଅନୁଭୂତିରୁ ମୁଁ ଜାଣେ ଯେ ଅନ୍ୟ କେଉଁ ଜନ୍ମରେ ମୋଠି ଏ ଜନ୍ମର 'ମୁଁ' 'ମୋର' ବୋଲି ଚେତନାରୁ କାଣିଚାଏ ବି ନ ଥିବ, ମୋର 'ମୁଁ'ର ଶେଷ ହୋଇଥିବ ଏ ଜନ୍ମ ଶେଷ ହେବା ସଙ୍ଗେ ସଙ୍ଗେ । ମୋର ସବୁ ସ୍ମୃତି ମୋ ସଙ୍ଗେ ସଙ୍ଗେ ଲୋପ ହେବ । ତା'ପରେ ଆଉ ଯେ ତା ଜନ୍ମରେ ଯେପରି ହେଉ ଆଉ କି ଯାଏ ?

ଶାସ୍ତ୍ରର ତତ୍ତ୍ୱ ଓ ଦର୍ଶନ ଆଡ଼କୁ ଆଉ ତାଙ୍କର ମନ ଗଲା ନାହିଁ, ଭାବିଲେ- କଣ ହେବ ଏଥିରୁ ଗୁଡ଼ିଏ ଜାଣି କି ମନେରଖି ? ଜ୍ଞାନ ପାଇଁ ? ଜ୍ଞାନର ସୀମା କାହିଁ ? ଜ୍ଞାନ ଜାଣି କଣ ମଣିଷ-ଜନ୍ମର ଜନ୍ମଗତ ଅବସ୍ଥା ବଦଳାଇ ହେବ ? ଯାହା ଘଟିଛି ଘଟୁଛି ତାକୁ ବଦଳାଇ ହେବ ? ଜରା ବ୍ୟାଧି ମୃତ୍ୟୁକୁ ରୋକିହେବ ? ଈଶ୍ୱରଙ୍କୁ ଦେଖିହେବ ?

ଈଶ୍ୱର ବିଶ୍ୱାସ ତାଙ୍କର ସବୁ କାଳେ ଥିଲା, ତହିଁରେ ପରିବର୍ତ୍ତନ ହେଲା ନାହିଁ । ଭାବନ୍ତି ନିଶ୍ଚୟ ସେ ହିଁ ସ୍ରଷ୍ଟା, ସେ ହିଁ କର୍ତ୍ତା, ସବୁ ସେ । ତାଙ୍କ ନିଜର କି ନିଜ ପରିବାରର କାହାରି ଏପର୍ଯ୍ୟନ୍ତ କିଛି ଶୋଚନୀୟ ଅମଙ୍ଗଳ ଘଟି ନ ଥିଲା, ଭାବୁଥିଲେ- ସବୁତ ତାଙ୍କରି ଦୟା । କିନ୍ତୁ ସେ ଦେଖୁଥିଲେ, ସଂସାରରେ ଦୁଷ୍ଟ ଦୁରାଚାର ଲୋକେ ବି ଅନେକେ ବହୁତ ବଢ଼ତି କରୁଥିଲେ, ଯେଉଁମାନେ ନିର୍ଦ୍ଦୋଷ ନିରୀହ ବୋଲି ଭାବିବା ଛଡ଼ା ଆଉ କିଛି ବୋଲି ଭାବିବାକୁ ସେ କାରଣ ପାଆନ୍ତି ନାହିଁ ସେପରି ଅନେକେ ନାନା ଦୁଃଖ ନାନା ଅତ୍ୟାଚାର ଭୋଗୁଥିଲେ, କିଏ କେତେବେଳେ ଅକାଳରେ ଅନହୁତି ମରୁଥିଲେ,

କାରଣ ଘେନି ଫଳ ଫଳୁ ନ ଥିଲା । ଅଥଚ ଈଶ୍ୱର କେବେ ଅନ୍ୟାୟ ଅତ୍ୟାଚାର ଉତ୍ପୀଡ଼ନ ବା କ୍ରୂରତା କରାଇପାରନ୍ତି ସେ ଭାବିପାରୁ ନ ଥିଲେ । ସେ ସବୁବେଳେ ମଙ୍ଗଳମୟ, ନ୍ୟାୟଦାତା । ତା'ହେଲେ ସଂସାରରେ ଓଲଟା ଓଲଟା ଘଟିଯାଏ କାହିଁକି ? ସମାଧାନ କରି ନ ପାରି ସେ ଭାବୁଥିଲେ ଯେ ଈଶ୍ୱର ନିଜେ ଯେପରି ଅଜ୍ଞେୟ, ଯାହା ଯେତେବେଳେ ଘଟେ ତାର ପ୍ରକୃତ କାରଣ ବି ସେପରି ଅଜ୍ଞେୟ, ମଣିଷର ବୁଦ୍ଧି ବିଚାରବାଟେ ବୁଝିବା ସମ୍ଭବ ନୁହେଁ ।

ଈଶ୍ୱରଙ୍କୁ ଭକ୍ତି କରିବା ନିଜର ପରମ କର୍ତ୍ତବ୍ୟ ବୋଲି ସେ ଭାବୁଥିଲେ । କିନ୍ତୁ ସେଥିପାଇଁ ନାନା ମନ୍ତ୍ର ଓ ଶାସ୍ତ୍ର ଆବୃତ୍ତି କରିବା, ଯାହା ସେ ପୂର୍ବେ କରୁଥିଲେ, ଆଉ ତାର ଆବଶ୍ୟକ କି ଉପକାରିତା ଅନୁଭବ କରୁ ନ ଥିଲେ । ସେ ଭାବୁଥିଲେ, ଯେ ଅସୀମ, ଅନନ୍ତ, ଯେ ଅସଂଖ୍ୟ ସୌରଜଗତ୍ ନୀହାରିକା ଓ ଅନନ୍ତ ମହାକାଶକୁ ଆବୋରି ରହିଛନ୍ତି, ପୁଣି ପ୍ରତି ଅଣୁ ପରମାଣୁରେ ବି ଅଛନ୍ତି । ସମଗ୍ର ଚେତନାରେ ସର୍ବତ୍ର ଅଛନ୍ତି । ସମଷ୍ଟିଙ୍କୁ ପାଳନ୍ତି, ସବୁ ଦେଖନ୍ତି ଜାଣନ୍ତି, ପ୍ରାଣୀର ଅନ୍ତର ଭିତରେ ବି ରହିଥାନ୍ତି ପୁଣି ଧୂଳିକଣାରେ ବି, ସବୁ ଘଟରେ ସବୁ ରୂପରେ ଯେ ବିଦ୍ୟମାନ, ଏକାଧାରରେ ସଗୁଣ ପୁଣି ନିର୍ଗୁଣ, କି ଭାଷା ଅଛି ତାଙ୍କୁ ବର୍ଣ୍ଣନା କରିବାକୁ ? ଈଶ୍ୱର ଧ୍ୟାନ, ଈଶ୍ୱର ଭକ୍ତି ଏକନିଷ୍ଠଭାବେ ନିଜ ସ୍ମରଣ ଭିତରେ ରଖି ପାରିଲେ ହିଁ ପୂଜା, ନିଜ କାର୍ଯ୍ୟରେ ଫୁଟାଇପାରିଲେ ହିଁ ତାଙ୍କ ପୂଜା, ତହିଁରୁ ଅଧିକା ସେ କଣ କରିପାରିବେ ? ସେତିକି ବା ସହଜ କାହୁଁ ? ସେ ନିଜ ଯୁକ୍ତିରେ ବୁଝନ୍ତି, ସଂସାରରେ ସମୃଦ୍ଧି କହିଲେ ଯାହା ଯାହା ମନେପଡ଼େ ବେଶୀ ଅଂଶରେ ତାହା ନାନା କ୍ଷେତ୍ରରେ ଅନ୍ୟମାନଙ୍କୁ ପଛରେ ପକାଇ ଟପିଯିବା, ତଳେ ପକାଇ ଉପରକୁ ଚଢ଼ିଯିବା, ଏହିଭଳି ଅର୍ଥ ବୁଝାଏ । ସେ ମନେ ମନେ ଯୁକ୍ତି କରନ୍ତି, - ଯେଉଁ ପରମେଶ୍ୱର ସାରା ସୃଷ୍ଟିର କୋଟି କୋଟି ପ୍ରାଣୀଙ୍କ ମଙ୍ଗଳଦାତା, ସେ ଅନ୍ୟମାନଙ୍କୁ ନ ପଚାରି କେଉଁ ନଗଣ୍ୟ ଜଣକର ସ୍ୱାର୍ଥର ସୁବିଧା କରିଦେବେ କାହିଁକି ? ତଥାପି ସେ ପ୍ରତ୍ୟହ ମନେ ମନେ ଈଶ୍ୱରଙ୍କୁ ପ୍ରାର୍ଥନା କଲାବେଳେ ଆପେ ଆପେ ନିଜର ଓ ନିଜ ପରିବାରର ପ୍ରତ୍ୟେକର ସୁଖ ଓ ମଙ୍ଗଳ କାମନା କରନ୍ତି, ମନେ ମନେ ସବୁ ଅସୁବିଧା ଅଭିଯୋଗ ଜଣାଇ ସବୁ ଭଲ ହେଉ ବୋଲି ଗୁହାରି କରନ୍ତି । ବିଶ୍ୱାସ କରିବାକୁ ଇଚ୍ଛା କରନ୍ତି, ଗୁହାରି ଶୁଣା ହେବ । କିନ୍ତୁ ଈଶ୍ୱରଚିନ୍ତାରେ ତାଙ୍କର ଅତି ଅଳ୍ପ ସମୟ ହିଁ କଟିଥାଏ, ଦିନକୁ କେତେ ମିନିଟ୍, ଦୁଇ ଓଳି ମିଶି ଅଧଘଣ୍ଟାଏ ବି ହୁଏ କି ନ ହୁଏ ।

ତଥାପି ଆପଣା ଆପେ ଚୁପ୍‌ଚାପ୍ ଚେଇଁବା ବେଳତକ କଟେଇବାକୁ କ୍ଳାନ୍ତ ଲାଗୁ ନ ଥିଲା, ବସିଥାନ୍ତୁ ବା ଚାଲୁଥାନ୍ତୁ, ଘରେ ବା ପଦାରେ । ଆଖିରେ ଯାହା ଦେଖୁଥିଲେ, କାନରେ ଯାହା ଶୁଣୁଥିଲେ, ଏପରିକି ଦେହରେ ଯେଉଁ ପବନ ବାଜୁଥିଲା, ନିଜ

ଜାଣତାରେ ତା ସହିତ କିଛି ସଂପର୍କ ନ ଥାଉ ପଛେ, ସେସବୁ ଥିଲା ତାଙ୍କ ଅଭ୍ୟସ୍ତ ଜୀବନର ଆବଶ୍ୟକ ଅଙ୍ଗ ଭଳି, କିଛି ବାରି ନ ପାରି ବି ଲାଗୁଥିଲା ତାର ବି ତାଙ୍କ ଅନ୍ତର ପ୍ରତି କଣ ଗୋଟିଏ ଆବେଦନ ଅଛି, କିଛି ଅର୍ଥ ଯେପରିକି ନୀରବରେ ତହିଁରୁ ଚାଲିଆସୁଛି ତାଙ୍କ ଭିତରକୁ । ତାହା ସଙ୍ଗେ ସଙ୍ଗେ ମନ ଭିତରେ ସବୁ ସହଜ ହୋଇ ଖାପିଯାଉଛି, ସବୁ ସହି ହୋଇ ଯାଉଛି, ଉଦ୍‌ବେଗ ନାହିଁ, ପ୍ରଶ୍ନ ନାହିଁ, ସମୟର ସ୍ରୋତ ଚାଲିଛି କି ଅଟକିଛି ଖିଆଲ ନାହିଁ ।

କିନ୍ତୁ କେବଳ ଏତିକିରେ ତାଙ୍କ ଅନୁଭୂତି ସୀମିତ ଥିଲେ ତହିଁରେ ସ୍ୱାଦ ନ ଥାଆନ୍ତା, ଅଥଚ ସ୍ୱାଦ ଥିଲା । ଏ ଅନୁଭୂତି ହୋଇଥିଲା ଏକପ୍ରକାର ଶୂନ୍ୟତାର ପଟ୍ଟଭୂମି । ଆପେ ଆପେ ସେ ଶୂନ୍ୟତାରେ ଫୁଟି ଉଠୁଥିଲା ହୃଦୟ ଭିତରୁ କେମିତି ଏକପ୍ରକାର ଶ୍ରଦ୍ଧାର ବର୍ଣ୍ଣାଳି, କେତେବେଳେ ସିନ୍ଦୂରା ଫାଟିବା ପୂର୍ବର ହାଲୁକା ନାଲିଚା ଆଭା, କେତେବେଳେ ଶାନ୍ତ ନୀରବ ହାଲୁକା କୁହୁଡ଼ିମିଶା ଜହ୍ନ ଆଲୁଅ ଓ ଅଜାଣତରେ, ବାହାରକୁ ଚାହୁଁ ଚାହୁଁ ବାହାରର ଦେଖିଲା ଦୃଶ୍ୟକୁ ଭରା ଦେଇ ଦିଶି ଯାଉଥିଲା ଅତୀତର କେଉଁ ସ୍ମୃତି, ତା'ପରେ ଆଉ କେଉଁ ସ୍ଥାନର, ଆଉ କେଉଁ ସ୍ଥାନର, ଦିଶୁ ଦିଶୁ ରୂପ ଉଭେଇଯାଇ ରହିଯାଉଥିଲା କିଛି ଭାବ, କିଛି ଏପରି ଅନୁଭୂତି ଯାହା ଅନୁଭବରେ ଅଳପେ ଛୁଇଁ ହେଉଥିଲା, ମନେ ମନେ ଭାଷା ଦେଇ ଆଙ୍କି ହେଉ ନ ଥିଲା, ତାହା ବି ରହୁ ନ ଥିଲା ବହୁତ ବେଳ, କିନ୍ତୁ ତା ଜାଗା ଖାଲି ପଡୁ ନ ଥିଲା, ପୁଣି ଆସୁଥିଲା ଆହୁରି କିଛି, ପୁଣି ଆହୁରି କିଛି ।

# ମୁଁ ସତ୍ୟଗୋପାଳ ନାଏକ

ଉଣେଇଶିଶହ ତିରିଶ ।

ସେତେବେଳେ କଟକ ସହରରେ ବିଜୁଳିର ସେତେ ଝଲକ ନ ଥିଲା । ରାସ୍ତାର ମୁହଁ ପିଚ୍ଚଳ ହୋଇ ନ ଥିଲା । ଅନ୍ଧାରି ଗଳି, ଧୂଳିଆ ରାସ୍ତା, ଗହଳ ଚହଳ ନାହିଁ । ନିଦୁଆ କଟକ, ମଠୁଆ ଜନତା ସୁଖ । ବାଟ କରରେ ଠିଆ ହୋଇ ଦୁଇ ବନ୍ଧୁ ପରସ୍ପର ପ୍ରତି ବିନୟ ପତ୍ରିକା ପାଠ କରୁଥିଲେ ବହୁତ ବେଳ । କାହା ଘରକୁ ବୁଲିଗଲେ ଦୁଇଥର ପାନ ଆସୁଥିଲା । ଗପିବାକୁ ଲୋକ ମିଳୁଥିଲେ, ଦୁଇଘଣ୍ଟା ରହି 'ଯାଉଛି' କହି ବୁଲିପଡ଼ିଲା ବେଳକୁ ପଛଆଡ଼ୁ  ଅନୁନୟ ଶୁଭୁଥିଲା ରଇଥା, ରଇଥା, ଏଡ଼େ ଚଞ୍ଚଳ କଣ ମ । ତୁମ ଆଇମାଙ୍କ ଆଣ୍ଠୁ ଧରିଥିଲା କଣ ହେଲା କହିଗଲ ନାହିଁ ଯେ- ''ସେତେବେଳେ ଖଲିଫା ଘର ପିଣ୍ଡା ଆଗରେ ଲୋକେ ନଡ଼ିଆ ଲଢ଼େଇ ଦେଖୁଥିଲେ । ବାଦୁଡ଼ିଂକ ଚିକ୍ରାର ମାଙ୍କଡ଼ଙ୍କ ଦୁଷ୍ଟାମିରୁ କୌତୁକ ଅନୁଭବ କରିବାକୁ ମନରେ ଜାଗା ଥିଲା ।

ସେତେବେଳେ ପଥରବନ୍ଧ ପରି ଅପରିବର୍ତ୍ତନୀୟ ଥିଲା କେତେଗୁଡ଼ାଏ ସଂସ୍କାର, କେତେଗୁଡ଼ାଏ ଭିତ୍ତି । ନେତା ଦେଖିଲେ ଦେବତା ମନେ ପଡୁଥିଲେ । ଅଦିନିଆ ବକ୍ତୃତା ଶୁଣିଲେ ସବୁ ସତ ପରି ଲାଗୁଥିଲା । ଶିକ୍ଷକ ଅଧ୍ୟାପକ ବା ଗୁରୁଜନ ଦେଖିଲେ ଭାବିବାକୁ ପଡୁଥିଲା ସେ ପୂର୍ଣ୍ଣାଙ୍ଗ । ସେ ସଂସ୍କୃତିର ଭଣ୍ଡାର ତେଣୁ ନମସ୍ୟ । ବେକ ଭାଙ୍ଗି ଦଣ୍ଡବତ କରି ସାରି ବି ପଛେଇ ପଛେଇ ଦୂରେଇ ଦୂରେଇ ଖଣ୍ଡେ ଦୂର ଗୋଡ଼େଇଯିବାକୁ ଇଚ୍ଛା ହେଉଥିଲା । ସହରରେ ପ୍ରତ୍ୟେକ ଲୋକର ମାଉସୀ ପିଉସୀ ଅପା ଭାଇ ହୋଇ ବହୁତ ଥିଲେ । ଲୋକେ ମହାପ୍ରସାଦ ବସୁଥିଲେ, ସଂଗାତ ବସୁଥିଲେ ।

ସେତେବେଳେ ବିଶ୍ୱାସ ଥିଲା ଠାକୁରଙ୍କ ଫୁଲ ସିନ୍ଦୂର ମୁଣ୍ଡରେ ଛୁଇଁଲେ ପରୀକ୍ଷାରେ ପାସ୍ ହୁଏ, ନାମ ଜପିଲେ କାମ ହାସଲ ହୁଏ । ବୃହତ୍ତର ମଫସଲ, -କଟକ ସହର, ଧୂଳିଆ ମସିଆ ଓଡ଼ଣୀ ଗତ ।

କିନ୍ତୁ ସେ ଧୂଳିରେ ବିଶ୍ୱାସ ଥିଲା, ଆତ୍ମସମ୍ମାନ ଥିଲା । ବାରବାଟୀର ଭଙ୍ଗା ତୋରଣ ପୋତା ଖାଇ କେବଳ ମନେ ପକାଇ ଦେଉଥିଲା ଓଡ଼ିଶାର ଗୌରବୋଜ୍ଜ୍ୱଳ ଅତୀତ, କାଠଯୋଡ଼ି ବନ୍ଧର ହାତୀଗଡ଼ା ଘାଟକୁ ଚାହିଁ ଲୋକେ ଗଜପତିଙ୍କ ହାତୀକଥା ଭାବୁଥିଲେ ।

କଟକ ତଥାପି ବିଶ୍ୱାସ କରୁଥିଲା, ଲେଖା ଇତିହାସ ସତ ନୁହେଁ । ବାରବାଟୀ ଅବରୋଧ ବେଳେ କଟକଚଣ୍ଡୀ ନିଜେ ଯୁଦ୍ଧ କରିଥିଲେ ଏବଂ ଶତ୍ରୁ ଯଦି ଗୁଳିବାରୁଦ ଛାଡ଼ି ପିଚିକାରିରେ ଗୋରୁରକ୍ତ ପୂରାଇ ତାଂକ ଉପରକୁ ମାରି ନ ଥାନ୍ତେ ତେବେ କଟକର ସ୍ୱାଧୀନତା ଯାଇ ନ ଥାନ୍ତା କେବେ ।

ସେହି ଊଣେଇଶିଶହ ତିରିଶ । ଧୂଳିରେ ମୁଣ୍ଡପୋତି ସେ ସ୍ୱପ୍ନ ଦେଖୁଥିଲା ।

# ହଲ୍‌ପା

ସମ୍ଭବତଃ ଅଣୁ ଧ୍ୱଂସର ଭୟାବହ କଳ୍ପନାରେ ଅନ୍ଧାର ଘୋଟିଥିବା ଚିଦମ୍ବରରେ ବକଟେ ଆଲୁଅ ଫୁଟିଛି, ଗୋର୍ବାଚୋଭ୍-ରେଗାନ୍ ଚୁକ୍ତି ସ୍ୱାକ୍ଷରିତ ହୋଇଛି, ମହାନ୍ ରୁଷ ଦେଶ ତା'ର କଳା ପର୍ଦ୍ଦା ଟେକି ଦେଇଛି ଆମେରିକାନ୍ ଟେଲିଭିଜନ୍‌ର ଶହେ ଚେୟାଳିଶଟି ଚ୍ୟାନେଲ୍ ଆଡ଼କୁ । ତାମିଲନାଡୁର ବିଧାନସଭା ଭିତରେ ଆନ୍ନା ଡି ଏମ୍‌କେ ଦଳର ଦୁଇ ପରସ୍ପର ବିରୋଧୀ ଗୋଷ୍ଠୀ ପିଟାପିଟି ଲହୁଲୁହାଣ ହୋଇଛନ୍ତି । ତା' ଉପରେ ପଡ଼ିଛି ଶାନ୍ତି ରକ୍ଷକ ପାଇକମାନଙ୍କ ଲାଠିର ପ୍ରହାର, -ପେଟ୍ରୋଲ ଦର ଭାରତରେ ହେଲାଣି ମାତ୍ର ଏକ ଲିଟରକୁ ପାଖାପାଖି ନଅ ଟଙ୍କା, କଟକ ସହରରେ ଘର ଖଣ୍ଡେ ଥିଲେ ନଗରପାଳିକା ଟିକସ ଏଥର ପନ୍ଦର ଗୁଣ ହୋଇ ଧାର୍ଯ୍ୟ ହେବ ଶୁଣାଯାଉଛି, ଠାକୁରେ କରନ୍ତୁ ମିଛ ଗୁଜବ ହୋଇଥାଉ, - ଏ ବର୍ଷର ମରୁଡ଼ିର କାମୁଡ଼ା ତା ଉପରେ ଏ ପର୍ଯ୍ୟନ୍ତ ଖୋଲପା ବାନ୍ଧି ନାହିଁ, କଞ୍ଚା ଅଛି, - ସହରମାନଙ୍କରେ ଆକାଶଚଂଛା କୋଠା ସବୁ ଠିଆହେବ ଉଇ ହୁଙ୍କା ପରି, ଶୁଣାଯାଉଛି, କୋଡ଼ିଏ ମାହାଲା, ତିରିଶ ମାହାଲା- କେବେ ଥିଲା ଯେ ଯେତେବେଳେ ହେଲେ ମହାତ୍ମା ଗାନ୍ଧିଙ୍କ ମୁହଁକୁ ଚାହିଁଦେଲେ ବାରିହୋଇ ପଡୁଥିଲା ସେତେବେଳେ ଦେଶର ଅଗଣିତ ମଳିମୁଣ୍ଡିଆଙ୍କ ଦେହ ମନର ଅବସ୍ଥା କିପରି ଅଛି, - ସେହିପରି ଦାସେ ଆପଣଙ୍କ ମୁହଁକୁ ଚାହିଁଦେଲେ, ଗୋପବନ୍ଧୁ ଚୌଧୁରୀଙ୍କ ମୁହଁକୁ ଚାହିଁଦେଲେ, - ଏବେ ଆଉ ତା ଦିଶୁ ନାହିଁ, ସତେଅବା ବାପ ମା ଛେଉଣ୍ଡ ଦେଶ, କିଏ ସେ କାହୁଁ ଅମଲାମାନେ ଡିଆଁ ମାରୁଛନ୍ତି ତାଙ୍କୁ ଚିହ୍ନି ହେଉ ନାହିଁ, ସେମାନେ ଶାନ୍ତନୁ ଆଚାର୍ଯ୍ୟଙ୍କ ଉପନ୍ୟାସର ନର ଅବା କିନ୍ନର, ମାଙ୍କଡ଼ ମଣିଷ କି ବାଘ ମଣିଷ, - ଧୂଳି ଓ ହାଉଯାଉରେ ପୋତି ହୋଇପଡ଼ିଛି ସହରଗୁଡ଼ିକ, ତାହାରି ଭିତରେ କେତେ ଛୁଣୁକା ବସନ୍ତ ଆସିଲା ଚାଲିଗଲା, ଛାଡ଼ି ଦେଇଗଲା ମୋ ଝରକା ସେକର ଆମ୍ବଗଛରେ ଧୂଳିଗୋଳା ବଉଳ- ମନେପଡ଼େ ସେ ଆମ୍ବଗଛଟି ଯେଉଁଦିନ ସରକାରୀ କୃଷି ବିଭାଗର ଦୋକାନରୁ କିଣି ଆଣି ଲଗାଇଥିଲି, ତହିଁରେ ଲେବଲ୍ ଉପରେ ଆମ୍ବର ଜାତି ଲେଖା ହୋଇଥିଲା, 'ଆଲଫୋନ୍ ଜୋ' - ଅତି ପ୍ରସିଦ୍ଧ ସେ ନାଁ, ତେଣୁ ତ ଦଶଟଙ୍କା ଦେଇ କିଣିଥିଲି, - ଯତ୍ନରେ ସାଇତିଲି ବଢ଼ାଇଲି, ଫଳିଲା- ଆଗ୍ରହରେ ପାଚିଲା ଆମ୍ବ ଖାଇଲି, - ପ୍ରକାଣ୍ଡ ଟାକୁଆ, ଅତି ପାକଳ ମାଂସ, ଯଦିଚ ମିଠା, -ନା ନା ଯେ ଆଲ୍‌ଫୋନ୍‌ସୋ ନୁହେଁ, ଯେ ଖାଣ୍ଟି ଓଡ଼ିଶୀ ଝାଡ଼ ଗୁରୁଡ଼ି । ଅସ୍ତୁ । ସେପରି ତ ହୁଏ ହିଁ ।

ଘଟିଥିଲା କୃଷି ବିଭାଗର ଦୋକାନରୁ 'ବାମନ' ଅମୃତଭଣ୍ଡା ଚାରା ଆଣି ଲଗାଇବାରୁ, ବାମନଟି ଅଧାତାଳଗଛ ହୋଇ ଠିଆହେଲା, ମ୍ୟାଗ୍ନୋଲିଆ ଫୁଲଗଛଟିକୁ ଟପି ସଜନାଗଛ ସଙ୍ଗେ ପ୍ରତିଦ୍ୱନ୍ଦ୍ୱିତା କଲା, ତାପରେ ଫଳିଲା, - 'ସିଲୋନ୍' ନୁହେଁ 'ୱାଶିଂଟନ' ନୁହେଁ, ଫଳ କଖାରୁ ଆକାର ନୁହେଁ, ଲାଉ ଆକାର ନୁହେଁ, -କମଳାଲେମ୍ବୁ ଆକାର ନିଶ୍ଚୟ, -କିନ୍ତୁ ମିଠା, ଭଲ, -ହେଉପଛେ ଛେଳି ଆକାରର ଗାଈଟିଏ, ଓଳିକେ ଦି' ଛଟାଙ୍କି ଲେଖାଁ ଦୁଧ, - ଓଡ଼ିଶୀ, -ମିଠା, -ସର ପଡ଼େ,- ବାସେ, ବିଶେଷତଃ ଯଦି ମାଟିହାଣ୍ଡିରେ ପୂରାଇ କାଠଚୁଲିରେ ଆଉଟିବ ତେବେ, -ହଁ, ବସନ୍ତ ଚାଲିଗଲା, ତାଉ ବଢ଼ୁଛି, ଭାଉ ବଢ଼ୁଛି, ଖରା କାଟୁଛି, ଝୋଲା ମାରୁଛି। ଆସୁଛି ଆହୁରି ଦିନ, ତାଉ ତେଜିବ ଜଳିବ, ଭାଉ ତେଜିବ ଜାଳିବ,- ତଥାପି ତା ବି ଧିଏ ଧିଏ ଯିବ, ଆସିବ ବରଷା- ଆସିବ ବରଷା, ତା ପରେ ଶରତ୍, - ଏ ଧୂଳି ଧୂଆଁ ରହିବ ନାହିଁ, ''ମଧୁବାତା ଋତାୟତେ ମଧୁ କ୍ଷରନ୍ତି ସିନ୍ଧବଃ'', ଓ 'ତ୍ୱଂ ଜୀବ ଶରଦଃ ଶତମ୍' - ତ୍ୱଂ ଜୀବ' - 'ତ୍ୱଂ ଜୀବ', - କିନ୍ତୁ ଯେଉଁମାନେ ଗଲେ ଭାରି ! ଯାଇଥିଲେ ଅଖିଲ୍‌ବାବୁ, ଶାନ୍ତିରେ ଲମ୍ବ ହୋଇ ଶୋଇପଡ଼ିଲେ- ଗଲେ ମୋର ବାଲ୍ୟବନ୍ଧୁମାନେ ପାଟ୍‌ନାର ରବି ସିନ୍‌ହା ପରେ ସେଠି ପ୍ଲାଷ୍ଟିକ ସର୍ଜରୀର ପ୍ରବର୍ତ୍ତକ, - କେତେ ସ୍ୱପ୍ନ ଏକାଠି ଦେଖିଥିଲେ ଆମେ ! - ଚାଲି ବନ୍ଧୁ, 'ଦାନାପାଣି'ର ବନ୍ଧୁ, ଅନ୍ତା ଗଲା ଶାନ୍ତିର କପୋତ ଖୋଜି, 'ଦାନାପାଣି'ର 'ଅନନ୍ତ କୁଳକର୍ଣ୍ଣୀ ଚଉପଟ୍', କେତେ ଯୁଗରେ ଜନ୍ମ ହୁଏ ସେପରି ଜଣେ କବି ? - ଗଲା ଭବକୃଷ୍ଣ- ଗଲେ ମୋର 'କୁଇକନ୍ଧ' 'ସମୃଦ୍ଧି' ଉଦେନାଥ ପଟ୍ଟନାଏକ, ଯାହାଙ୍କ ଗ୍ରହଣଟା ହିଁ ଥିଲା। ଜନସେବା, -ନଖାପାଟି ମୋର ଚାଲିଗଲା, ପ୍ରାୟ ମୋ ବୟସର, ଅସଂଖ୍ୟ ଲୋକଙ୍କ ସ୍ନେହର ଗଣ୍ଠି ହେଇଥିଲା ସେ ଉଦାର ମନ, ଖୋଲା ହାତ, - ଆଉ ଗଲା ଚାଲି ମୋ ବାଲ୍ୟବନ୍ଧୁ କେଷ୍ଟୋ; କୃଷ୍ଣଚନ୍ଦ୍ର ଦାସଗୁପ୍ତ, ଅଠାବନ ବର୍ଷ ତଳେ ପାଟ୍‌ନାରେ ଇସ୍କୁଲ ଛାଡ଼ିଥିଲୁଁ ଯେ କିଏ କୁଆଡ଼େ ରହିଲୁଁ ଆଉ ଦେଖା ନାହିଁ, - ଦି' ବର୍ଷ ତଳେ ହଠାତ୍ ଦୁର୍ଗାପୁରରୁ ତାଠୁଁ ଚିଠି, ସେଉଠୁ ଚିଠିକୁ ଚିଠି ତା'ପରେ କେତେବେଳେ ସେ 'ଛୁ' ଆଉ ମୁଁ ଚିଠି ଲେଖିଛି କାହିଁକି ଚିଠି ଦଉନୁ ? ଲେଖି,-

ଏଇ ଗୋଟିଏ ଗୋଟିଏ ନାଁ ସହିତ ମୋ ଜୀବନର କେତେ ଅଂଶ ଜଡ଼ିତ ! ଆଉ ଲୁହ ତତଲା ଦୀର୍ଘଶ୍ୱାସ- ଆଉ ଆଖି ପୋଛା ଆଉ ମୁହଁ ଧୁଆ- ଆଉ ଅଣ୍ଟାସଳଖା ଆଉ କାଠ ମୁଖା ପିନ୍ଧା- ଆଉ ଗାଡ଼ି ନ ଥାଉ ଅଛି ଗୋଡ଼ ଆଉ ବାଡ଼ି- ଆଉ ଯୋ ଚଲ୍‌ତୀ ହୈ ୱହ ଗାଡୀ ଯେ ଇଙ୍ଗିଜି ନୁହେଁ ଯେ ଆମ ପବିତ୍ର ରାଷ୍ଟ୍ରଭାଷା, ଯେ ଯେ ତେରୀ ମେରୀ ଭାଷା ଯେ ଫିଲ୍ମୀ ଭାଷା ଯେ ଦିଲ୍ଲୀ ଭାଷା, ଯେ ଅମିତାଭଜୀ ବଚନଙ୍କ ଭାଷା, ଆହା ଫିଲ୍ମ ଜଗତର ରାଜା ରାମଚନ୍ଦ୍ରନ୍ ! ଜୀବନ୍ତେ ତାମିଲ ଦୁନିଆ ଯାହା ପାଇଁ ପାଗଳ, ମରନ୍ତେ ଭାରତରତ୍ନମ୍ ! ଉପାଧି, ଉପାଧି ! ମନେପଡ଼େ 'ପଦ୍ମଭୂଷଣ', କିନ୍ତୁ ସେସବୁ ହେଲା, ଯଦି ଇଚ୍ଛା ହେଲା ତେବେ ନିଜେ ଛାତିରେ ଝୁଲେଇ ଘରେ ଆରିଶି ଆଗରେ ଠିଆ ହୋଇ ନିଜ ଚେହେରାକୁ ଅନେଇଁ 'ମନଖୁସ' କରିବା ପାଇଁ, ତାର

କୌଣସି ସାମର୍ଥ୍ୟ ନ ଥାଏ ରାଜକୀୟ ଦପ୍ତର କି ଅନୁଷ୍ଠାନରୁ ନିମନ୍ତ୍ରଣ କାର୍ଡ଼ଟିଏ ପାଇବା ପାଇଁ, ନା ରିପବ୍ଲିକ ପ୍ୟାରେଡ୍‌କୁ ନା ଗଭର୍ଣ୍ଣର 'ଏଟ୍ ହୋମକୁ', ନା ଡାକଘରେ ଲଫାପା କିଣିଲା ବେଳେ କି ପାଣିଟିକସ ବାନ୍ଧିବାକୁ ଯାଇଥିଲାବେଳେ କ୍ୟୁରେ ଠିଆ ହୋଇ ଅପେକ୍ଷା କରିଥିଲା ବେଳେ ବସିବାକୁ ଟିକିଏ ଜାଗା ପାଇବାକୁ ବା କଟକ ଭୁବନେଶ୍ୱର ଭିତରେ ବସ୍ ଗଲାବେଳେ ଉର୍ଦ୍ଧ୍ୱବାହୁ ହୋଇ ଠିଆ ହୋଇ ବି ଝୁଲି ହଲି ହଲି ପାଞ୍ଚ କି ପଞ୍ଚସ୍ତରି ବୟସ ନିର୍ବିଶେଷରେ ପୁରୁଷ କି ସ୍ତ୍ରୀ ଲିଙ୍ଗ ନିର୍ବିଶେଷରେ ଡିସ୍କୋ ନାଚ ନାଚି ଗଲାବେଳେ- ମହାଉଲ୍ଲାସରେ (ଆହା ଆଣ୍ଠୁଟା ସମ୍ଭାଳିବେକି ଟିକିଏ, ମୋ ଅଣ୍ଟାକୁ କାଟୁଚି- ଆହା ଆପଣଙ୍କ କହୁଣିକି ଟିକିଏ ଆଉ ପନ୍ଦର ଡିଗ୍ରୀ ବଙ୍କାନ୍ତୁ ମୋ ଚଷମାକୁ ବିପଦ-) ସ୍ମରଣ କଲାବେଳେ ଯେ ଆମେ ଏକ ଆମେ ସ୍ୱାଧୀନ ଆମେ ଆମ ସ୍ୱାଧୀନ ଗଣତନ୍ତ୍ରର ଗର୍ବିତ ନାଗରିକ, ଆମେ ଅଗଣିତ ପିପ୍‌ପାଲି କାହିଁତ ଏ ଦେଶର ମାଲିକ, ପ୍ରଭୁ, ଶାସକ, ହର୍ତ୍ତାକର୍ତ୍ତା- ସେହି ସୁନ୍ଦର ପଦ୍ମଭୂଷଣ ପଦକଟି କାମ ଦିଏ ନାହିଁ ଭାତ କି ଭତ୍ତା, ଅତଏବ ଥାଉ ସେ ପେଡ଼ି ଭିତରେ ଯେମିତି ବର୍ଷ ହେଲା ରହିଛି, ବେଳେ ବେଳେ ଖେଳୁ ତାକୁ ଘେନି ଟିକି ନାତୁଣୀଟି, ଏକଚାଳିଶ ବର୍ଷ ପୂରିଲା ଆମେ ସ୍ୱାଧୀନ ହେବାର, ଦେଶର ବାପଙ୍କ ସ୍ୱପ୍ନର ଗୋଟାଏ ଅଂଶ ସାର୍ଥକ ହେବାର ହେଲା ଏ ବିଶାଳ ମହାନ୍ ଦେଶର ରାଜନୀତିକ ପରାଧୀନତାର ଅବସାନ କିନ୍ତୁ ଦେଶର ବା ଯେ ଯେଉଁ ଖସଡ଼ା ଚିଠା କରିଥିଲେ 'ହିନ୍ଦ୍ ସ୍ୱରାଜ' ବୋଲି ।

ତାଙ୍କର ଯେଉଁ 'ମୋ ସ୍ୱପ୍ନର ଭାରତ', ସେ ପୋତି ହୋଇ ରହିଲା ଛପା ପୁସ୍ତକମୟ ଗାଡ଼ି ତଳେ । ଏକଚାଳିଶ ବର୍ଷ ଭିତରେ ବହୁତ ଉପକାରୀ ବ୍ୟବସ୍ଥା ଦେଶଯାକ ହୋଇଛି, ନାନା କ୍ଷେତ୍ରରେ, କିନ୍ତୁ ତଥାପି ସମ୍ଭବ ହୋଇପାରି ନାହିଁ ପ୍ରତି ମଣିଷଙ୍କ ପାଇଁ ଅନ୍ନ ବସ୍ତ୍ର ଗୃହ ପାନୀୟ ଜଳ ଜୀବିକା ବୃତ୍ତି ଖଞ୍ଜା ହୋଇପାରି ନାହିଁ । ଅଭାବ ଅଶାନ୍ତି ଦାରିଦ୍ର୍ୟ ନୈରାଶ୍ୟ ଅନ୍ୟାୟ ଛାଡ଼ି ନାହିଁ, ପଲ ପଲ ମଣିଷ, କିନ୍ତୁ ସେମାନେ ହୃଷ୍ଟପୁଷ୍ଟ ଦିଶୁ ନାହାନ୍ତି, କାହୁଁ ବା ହୁଅନ୍ତେ ! ଅଧିକାଂଶ ଦିନ ତ ଶାକାହାରୀ ଅର୍ଦ୍ଧାହାରୀ, ଶରୀର ଉପରେ ସ୍ୱାସ୍ଥ୍ୟର ଝଲି ଫିଟିବାକୁ ଯେଉଁ ପରିମାଣରେ ଯେତେ ଯେତେ ଖାଦ୍ୟସାର ଲୋଡ଼ା, କେଉଁଠି ଅଛି । ଯାଙ୍କ ଭାଗ୍ୟରେ । ତାଙ୍କରି ଭିତରେ ଆମର ବର୍ତ୍ତମାନ ଓ ଭବିଷ୍ୟତ୍‌ରେ ଆଶା 'ଯୁବକ'ମାନେ ଯୁବକହିଁ, 'ଯୁ' (ଶକ୍ତି) ନାହିଁ 'ବକ' (ବଗ) ଯୁବକ, ଆଖି କୋରଡ଼ ଭିତରେ ପାଉଁଶ ଉହାଡ଼ରୁ ଜୁଳୁ ଜୁଳୁ, ସରୁ ଛାତି ସଟେକି ହଲପା ହାବୁକାଖିଆ ନଇ ଅତଡ଼ାର ଦଢ଼ ହାଡୁଆ ହନୁମନ୍ତ ମୁଖ । ଛାତି ଉପରେ ହାତ ବୁଲାଇଲେ ପିଞ୍ଜରା ହାଡ଼ ଗଣି ହେବ, ଜଙ୍ଘ ବତା ଫାଳିଆ ନ ହେଲେ ବି ଆହୁଲାର ପାତପରି ମୁହଁ ଠାଣିରେ ହତାଶା ବିମ୍ବର ମୁଣ୍ଡ ଗୋଳମାଳ) ହେବା ଭାବ ନୈରାଶ୍ୟ ଛନ୍ଦ, ନିମ୍ନତମ ଗ୍ରାସାଚ୍ଛାଦାନସମର୍ଥ ଧନ ଦେବତା, 'କ-ଣ-କ-ରି ବି' ଇତି ପଞ୍ଚାକ୍ଷର ମନ୍ତ୍ର, ପହରିଦିନ ସକାଳେ ଦେଖିଥିଲି ସେମାନେ ରୁଣ୍ଡିଥିଲେ, ସପ୍ଲାଇ ଇନ୍‌ସପେକ୍ଟର

ଚାକିରି ପାଇଁ ପ୍ରାର୍ଥୀ ଓ ପରୀକ୍ଷାର୍ଥୀମାନେ ପୋଷ୍ଟ ଖାଲି ଦଶଟି, ତହିଁରୁ ଛଅଟି ଆଦିବାସୀ ଓ ହରିଜନ ପ୍ରାର୍ଥୀଙ୍କ ପାଇଁ ସଂରକ୍ଷିତ, ଆଉ ମାତ୍ର ଚାରୋଟି ସ୍ଥାନ ହରଣ କରିବା ପାଇଁ ଛଅହଜାର ଆବେଦନକାରୀ ପରୀକ୍ଷା ଦେବେ । ତା' ଛଡ଼ା ସଡ଼କରେ କାଙ୍ଗାଳୀ ଭିକାରି ପଲପଲ, କାହାର ଜୀବନକ୍ରିୟା କଟେ ସଡ଼କରେ କେଉଁ ଗଛ ତଳେ, କେଉଁ ଖୋଲା ଭୂଇଁରେ, କାହାର ବା ରେଲଷ୍ଟେସନ୍‌ର ପ୍ଲାଟଫର୍ମ ଉପରେ ବଡ଼ ସହରରେ ତ ଦୁର୍ଗନ୍ଧ ନାଳିଆ କରରେ ପ୍ରକାଣ୍ଡ ପ୍ରକାଣ୍ଡ ମଇଳା ଗଦା କରରେ ଛିଣ୍ଡା ଅଖାର ଖୋପରେ କାହାର ପୋଲତଳେ, କାହା ସଂସାର କେଉଁ ପରିତ୍ୟକ୍ତ ହ୍ୟୁମ୍ ପାଇପ୍ ଭିତରେ ସେଇଠି ଚାଲେ ଆହାର ବଂଶବୃଦ୍ଧି ଝାଡ଼ା ପରିସ୍ରା ପାଇଁ ସଡ଼କର କୋଠା ପିଠିଆଡ଼, ଡ୍ରେନ୍ ଭିତରେ, ନହୁବା ଯେଉଁଠି ଯେତେ ଜାଗା ଖାଲି ପଡ଼ିଥିବ ସବୁଠି ଯାହା ମିଳୁ ଖାଅ ଯେଉଁଠି ପାର ହଗ ମୂତ ଯେତେ ଚଞ୍ଚଳ ପାର ମର । ପୃଥିବୀର ଯେ ଅଂଶରେ ଜୀବନଟାହିଁ ତ ଯନ୍ତ୍ରଣା ସେତିକି ଭୋଗିବାକୁ ସମଷ୍ଟିଙ୍କର ସ୍ୱାଧୀନ ମୌଳିକ ଅଖଣ୍ଡ ଅଖଣ୍ଡ ଚଞ୍ଚଳ ମଲେ ଦହଗଞ୍ଜରୁ ମଣିଷ ଉଦ୍ଧାର ସ୍ୱର୍ଗପ୍ରାପ୍ତି ନ ହେଉ ନିଷ୍କୃତି ତ ଅବଶ୍ୟ ।

ଯେ ଚାଳିଶ ବର୍ଷରେ ଦେଶର ଶିରୀସମ୍ପଦ ବଢ଼ାଇବା ପାଇଁ କୋଟି କୋଟି ଟଙ୍କା ଢଳା ହୋଇଛି, ଟଙ୍କା ତ ପବନରେ ଉଡୁଛି । ନୟନ୍‌ଜୋରିରେ ବୋହିଯାଉଛି । ଟଙ୍କା ହିଁ ଘାଉଡ଼ା କରିଛି ଅର୍ଥନୀତିକୁ । ବନ୍ଧୁକରୁ ବୁଲେଟ୍ ମାଡ଼ ପରି, ତେଣୁ ଭାଉ ବହୁଗୁଣ ବଢ଼ିଛି । ଋଣଭାର ବଢ଼ି ପିଠି କଟକଟ ଡାକୁଛି । ପାଟି ଶୁଖି ଯାଉଛି । ଭବିଷ୍ୟଦ୍‌ର ବଂଶଧରମାନଙ୍କ ପାଇଁ ଜମା ହୋଇ ରହୁଛି ଋଣ ପର୍ବତର ଉତ୍ତରାଧିକାର, ଖଣି ପର୍ବତ ସବୁ ଖୋଳା ହୋଇ ବୁହାହୋଇ ଯାଉଛି । ଭବିଷ୍ୟତ୍‌ର ବଂଶଧରମାନେ ଦେଖିବେ ଟାଙ୍ଗରା ବସନ୍ତମୁହାଁ ପାହାଡ଼ରେ ବଡ଼ ବଡ଼ ଗଭୀର ଗାଡ଼, ଯେମିତି ବୋମା ପଡ଼ିଥିବା କ୍ରେଟର । -ବୋହିଦେ ଦେ ବୋହିଦେ, ଗଛବୁରୁଛ ନଣ୍ଡା କରି ଭୂତଳୁ ବୋହି ଦେ ଧରତନୀ ମା ଯୁଗ ଯୁଗରୁ ସଞ୍ଚିଥିବା ରତ୍ନଭଣ୍ଡାର, ଯାଉ ସେ ଦେଶ ବିଦେଶକୁ, ସୁନା ଯାଉ, କିଛି ତମ୍ବା ଆସୁ ହେଲେ ବେପାର ତ ବଢ଼ିବ !

ଉନ୍ନୟନ ପାଇଁ ସତେଅବା ଟଙ୍କାର ଲଗାଣ ବର୍ଷା ଅସରାକୁ ଅସରା । କିନ୍ତୁ ଶୋଷିଲା ଭୂଇଁରେ କାହିଁ ସେ ଶୋଷି ହୋଇ ଚାଲିଗଲା । କେଉଁ ନାଳିଆ ବାଟେ କେଉଁ ଘଳିଆ ବାଟେ ବୋହିଗଲା କେଉଁ ଅଥାନକୁ, ଫସଲ ଉଲୁସିବା ପରିବର୍ତ୍ତେ ଛନଛନେଇ ପନପହ୍ଲେଇ ଉଠିଲା ଅଗଛା ଅରମା, ବାଇବିଛୁଆତି ବଣ, ଭାଲିଆ ବଣ, ଜାତି ଜାତି କେତେ କଲାବଣ, ନାଗଫେଣୀ, କୋଇଲିଖିଆ, ଗୋହିରା, କିଆ ଆଉ ବାରମାସିଆ ।

ହେଇ, ଦିନ ନଇଁ ଆସିଲାଣି, ବେଳ ସାଢ଼େ ଚାରି । ସଡ଼କରେ ବେଶି ଧୂଳି, ଗୋରୁ ବାହୁଡ଼ାଣି ବେଳ ଯେ, ଇସ୍କୁଲିଆ ଇସ୍କୁଲରୁ ଅଫିସିଆ ଅଫିସରୁ ବାହୁଡାଣି ବେଳ,- ସବୁ ଏକା ଶ୍ରେଣୀ, ଏକାପରି ଅଭୀଷ୍ଟ, ଏକାପରି ଆଦର୍ଶ,- ''ଶାନ୍ତ ସୁଧୀର ହୁଅ, ଯାହା ଆସୁ ସବୁ ଚଳିଯିବ,'' ଯାହା ଆସୁ, ବିଧା କି ଗୋଇଠା, ''ତୃଣଦିବ

ସୁନୀଚେନ ତସେରିବ ସହିଷ୍ଣୁତା- ''ସେହି ତ ନିରାପତ୍ତା ପାଇଁ ମାର୍ଗ, ଝନ୍‌ଝଟ୍ ନାହିଁ । ଯେ ଯାହା କହୁ, ଯେ ଯାହା ପଚାରୁ ଏକା ଉତ୍ତର, ''ହୋଇ'' ''ହଇ''-

ଯେ ଯାହା କହୁ ଶୁଣି ଯା, ହୁସିଆର, ତୁଣ୍ଡ ଖୋଲ ନାହିଁ, 'ଜ' ଅଛିଟି ! ହାଣ୍ଡିରେ ପୂରେଇ ଫାଣ୍ଡିକି ନବ, -ଶୁଣିଯା, ଚୁଉଉପ୍ ! ଚୁନିଥିବା ଯାକେ କାହାଠୁଁ ଉତ୍ପାତ ଭୟ ? ନାହିଁ ଭୟ ଅଭୟ । ସେହି ବାଟେ ଅଭୟ ମିଳିବ । ଆଗ ଅଭୟହିଁ ତ କାମ୍ୟ, ଭଗବଦ୍‌ଗୀତାଙ୍କ ଷୋଡ଼ଶ ଅଧ୍ୟାୟର ପ୍ରଥମ, ଦ୍ୱିତୀୟ, ତୃତୀୟ ଶ୍ଲୋକରେ ଶ୍ରୀ ଭଗବାନ୍ କହି ନାହାନ୍ତି କି ଯେ ଗୋଟିଏ ବ୍ୟକ୍ତିଠିଁ କି କି ଗୁଣ ଥିଲେ ତାକୁ ଆଦର୍ଶ ମଣିଷ ଓ ଶ୍ରେଷ୍ଠ ମଣିଷ ବୋଲି କୁହାଯିବ ?

ଅଭୟଂ ସତ୍ତ୍ୱସଂଶୁଦ୍ଧି ଜ୍ଞାନଯୋଗ ବ୍ୟବସ୍ଥିତିଃ
ଦାନଂ ଦମଶ୍ଚ ଯଜ୍ଞଶ୍ଚ ସ୍ୱଧ୍ୟାୟ-ସ୍ତବ ଆର୍ଜବଂ । ୧ ।

ଅହିଂସା ସତ୍ୟମ୍-ଅକ୍ରୋଧ-ସ୍ତ୍ୟାବଃ ଶାନ୍ତି ରପୈଶୁନଂ
ଦୟା ଭୂତେ-ତ୍ୱଲୋଲୁପତ୍ୱଂ ମାର୍ଦ୍ଦବଂହ୍ରୀ-ରଚପଳମ୍ । ୨ ।

ତେଜଃ କ୍ଷମା ଧୃତିଃ ଶୌଚ-ମଦ୍ରୋହୋ ନାତିମାନିତା
ଭବନ୍ତି ସମ୍ପଦଂ ଦୈବୀ-ମଭିଜାତସ୍ୟମ୍ ଭାରତ ।

ଅତି ସରଳ ସଂସ୍କୃତ । ଯେକୌଣସି ଗୀତାଭାଷ୍ୟ ଓଲଟାଇ ଦେଖିଲେ ଏହାର ଅର୍ଥ ଓ ସ୍ପଷ୍ଟ ଉଦ୍ଦେଶ୍ୟ ବୁଝିହେବ । ଗୁଣ ତାଲିକାରେ ପ୍ରଥମ ସ୍ଥାନରେ ହିଁ 'ଅଭୟ' । ତା ଅର୍ଥ ଅବଶ୍ୟ ସମ୍ପୂର୍ଣ୍ଣ ଭୟଶୂନ୍ୟତା, ମଣିଷ ଉଚିତ କଥା କହିବ, ହୃଦୟସ୍ଥ ବିବେକରୂପୀ ଭଗବାନ୍‌ଙ୍କ ବିଚାରରେ ଯେଉଁ କଥା ମନ୍ଦ ବୋଲି ଲାଗିବ ତାକୁ ମନ୍ଦ ବୋଲି କହିବ, ଯାହା ଭଲ ବୋଲି ଲାଗିବ ତାକୁ ଭଲ କହିବ, ଯାହା ଠିକ୍ ବୋଲି ଭାବିବ ତାକୁ ଠିକ୍ ବୋଲି କହିବ, ଯାହା ଭୁଲ୍ ବା ଖରାପ ବୋଲି ଭାବିବ ତାକୁ ଭୁଲ ବା ଖରାପ ବୋଲି କହିବ । ଡରିବ ନାହିଁ । କାର୍ଯ୍ୟରେ ବି ସେହିପରି କରିବ । ଡରିବ ନାହିଁ । ଅନ୍ୟାୟ ପାପ ଓ ଭୁଲ ଅନ୍ୟ ମଣିଷ ଦ୍ୱାରା ଘଟିବା ଦେଖି ଯେ ପାଟି ଫିଟାଏ ନାହିଁ, ପ୍ରତିବାଦ କରେ ନାହିଁ, ପ୍ରତିରୋଧ କରିବା ଦୂରେ ଥାଉ, ସେ ନିଜେ ସେହି ଅନ୍ୟ ଲୋକ କରିଥିବା ପାପରେ ଭାଗୀ ହୁଏ । ତେଣୁ ଡରିବ ନାହିଁ, ସେଥିପାଇଁ ଯେତେ ଯାହା କ୍ଷତି ସହିବାକୁ ପଡୁ ପଛେ । ପ୍ରହ୍ଲାଦ କ'ଣ ସେ କ୍ଷତି ନେଇ ନ ଥିଲେ ? ତାଙ୍କଠୁଁ ବଳି କିଏ କି କ୍ଷତିକୁ ମୁଣ୍ଡପାତି ନେବ ? ମଣିଷ ସେମିତି ହେବା ଦରକାର, ଗୀତାରେ ଶ୍ରୀ ଭଗବାନ୍ କହିଛନ୍ତି ।

ଶ୍ରୀ ଲିଙ୍ଗରାଜ ମନ୍ଦିର ଉପରେ ମହାଦୀପ
''ଆପଣ ଜଗନ୍ନାଥ ଅବତାର ।''
''ଆପଣ ପୁରୁଷ ବେଶରେ ସାକ୍ଷାତ୍ ଦୁର୍ଗା''
ଯଶ କୀର୍ତ୍ତନ କଲେ ହିଁ ଅଭୟ, ଆନନ୍ଦ, ସବୁ ।
ସ୍ତବ ସ୍ତୁତି ରଚନା କରିପାରିଲେ ହିଁ କବି ।

ପେଟ ପୂରା ମନବୋଧ ଭୋଜନଟିଏ କେବେ, ସ୍ୱପ୍ନଲୋକରେ ଥରେ ଭ୍ରମଣ, ମୁଣ୍ଡରେ ଶିରୀପା ଖଣ୍ଡେ,

ଆଉ କିଏ କହିପାରେ ? ହୁଏତ ବୁଢ଼ାଦିନେ କେଉଁ ପାହାଡ଼ ମୁଣ୍ଡିଆ ଉପରେ କେଉଁ ଗୋଟିଏ ଛୋଟକାଟିଆ ଇନ୍ଦ୍ର ଭୁବନରେ କେତୋଟି ବର୍ଷ ବିନା ପରିଶ୍ରମରେ ଭୋଗ ସୁଖ ପାଇବାକୁ ସୌଭାଗ୍ୟ, ରାଜ୍ୟ ନ ଥାଇ ବି ରଜାକୁ ଖଟୁଣି ପରି ସେବା ମିଳିବ, ଦାନ୍ତ ନ ଥାଇ ବେଦାନ୍ତ ବୁଝାଇବାହିଁ କାମ ହେବ,- ବୁଲୁଥା ଯୁଆଡ଼େ ଇଚ୍ଛା, ଭାଷୁଥା,- ଯାହା ଇଚ୍ଛା, କେବଳ ଜପିବାକୁ ଭୁଲୁ ନ ଥିବ ସାଫଲ୍ୟ ପାଇଁ ସେହି ମହାମନ୍ତ୍ର- ମହାମନ୍ତ୍ର ।

'ଜୟ ଗଙ୍ଗେଶ୍ୱର ଜୟ ।'

ରାତି କେତେ ହେବ ? ପାହି ଆସିଲା ପରା, - ଧୀରେ ଧୀରେ - ଆସ୍ତେ ଆସ୍ତେ - 'କଲେ କଲେ- ରାତି ଖସି ଖସି ପଡୁଛି ବିସ୍ମୃତିର ପାତାଳ ଭିତରକୁ- ସେହି ଯେଉଁଠିକି ଖସିପଡ଼ନ୍ତି ସବୁ ରାତି, ପୂର୍ବେ ବି ଖସିପଡ଼ିଥିଲେ, ରାତି ଯାଇ ଚହଟିଥିଲା ଉଷା, ତା ପରେ ତ ଉଦୀୟାନ୍ ସୂର୍ଯ୍ୟ, ଆବେଗରେ ହାତ ବଢ଼ାଉଥିଲେ କୋଣାର୍କର ଗମ୍ଭୀରା ଭିତରକୁ ।

ବାସୁକି ପୁଣି କର ଲେଉଟାଉଛନ୍ତି, ସନ୍ତର୍ପଣେ ନିଃଶବ୍ଦରେ, - ଧୀରେ ଧୀରେ- ଆସ୍ତେ ଆସ୍ତେ- କଲେ କଲେ- ଆଉ ପୃଥିବୀ ପିଠିରେ ଆସ୍ତେ ଆସ୍ତେ ସବୁ ଓଲଟପାଲଟ, ଏପଟ ସେପଟ, - ଧିମା ଧିମା ଭଙ୍ଗାରୁଜା ଶବ୍ଦ, ତା'ର ବି ଗୋଟାଏ ସଙ୍ଗୀତ ଅଛି, ବଡ଼ ସୂକ୍ଷ୍ମ- ଅନାହତ ଧ୍ୱନି ପରି, - ବ୍ରାହ୍ମମୁହୂର୍ତ୍ତରେ କାନେଇଲେ ସେ ଶୁଭେ ପରା !

ବ୍ରାହ୍ମମୁହୂର୍ତ୍ତ ! ପଛକୁ ଚାଲିଯାଇଛି ସ୍ମୃତି । ଦୂର ପରବାସରେ ବାପପୁଅ ଦି'ଜଣ । ଜଣେ ଆଉ କେହି ନ ଥିଲେ ସେ ଘରେ । ଜଣେ ଜୀବନର ଶେଷ ଉପରପାହାଚରେ,- ବ୍ରହ୍ମବିଦ୍, - ଲୟଯୋଗୀ ଆଉ ବର୍ଷ ଯୋଡ଼ିଏ ତିନୋଟି ତା' ଉପରେ ଉର୍ଦ୍ଧ୍ୱଗତି ଶୂନ୍ୟରେ ଶୂନ୍ୟ,- ପୂର୍ଣ୍ଣରେ ପୂର୍ଣ୍ଣ ହୋଇ ମିଶିଯିବେ । ଆଉ ଜଣେ ଜୀବନର ଆରମ୍ଭ ପାହାଚରେ, ବୟସ ଆଠ କି ନଅ, ବଞ୍ଚିବ ଆଉ ସତୁରି କି ବାସ୍ତରି ବର୍ଷ ।

'ଉଠରେ ପୁଅ ଉଠ, ବ୍ରାହ୍ମମୁହୂର୍ତ୍ତ ହେଲା । ମୁହଁ ଧୋ, କାନା । ଶୁଭୁଛି କିଛି ? ଶୁଭୁଛି ଅନାହତ ଧ୍ୱନି ? ସେଇଥିରେ ଲୟ ଲଗା, ତା'ପରେ ପଢ଼, ଯାହା ପଢ଼ିବୁ ସବୁ ମନେ ରହିଯିବ ।

ଝଲକି ଯାଉଛି ତା'ପରେ କଣ ହେଲା, ଶୁଣି ତା ପରେ, ଶୁଣି ତା ପରେ କେତେ ବାଟ କେତେ ଠାଆ କେତେ ମୁହଁ କେତେ ଶବ୍ଦ କେତେ ଛବି କେତେ ଭାବ କେତେ ଅର୍ଥ କେତେ ମତ କେତେ କେତେ କେତେ-

ସରି ନାହିଁ ।

ଦେଖିଛି କେତୋଟି କଥା । ନିଜ ଜୀବନରେ । ଯେ ଯାହା କହୁ ଯେଉଁ ମୂଲ୍ୟ ଦେଉ ମତେ, ଅନେକ ସମୟରେ ମୁଁ ସେହି ମୂଲ୍ୟକୁ ମୋ ମତ ବୋଲି ଗ୍ରହଣ କରିଛି ସତ, କିନ୍ତୁ ସେ ଖାଲି ମୋ ମନ ଉପରେ 'ମବ୍ ହିଷ୍ଟିରିଆ' । ସେ ମତ ତଳେ ଅଛି ମୋ ନିଜ ମତ ମୋ ନିଜ ବିଷୟରେ । ସେଠି ମନର ଆର ଫାଳଟା, ତୀର ଛାଡ଼େ, ଆଖି-ତୀର କହେ ତା ଲୁଟି ବୋହି ଆଣ, ଫୂର୍ତ୍ତି କରିବା । ଯା, ଫଟୋ କରିଆ, ସିନେମା ଫଟୋ କରିଆଣ, ଦେଖୁଥିବା, ନିରାପଦ ।

ନିରାପଦହିଁ ତ ।

ସବୁଠି ମୋର ଉଜ୍ଜ୍ୱଳ ଗୌରବ, ଆଦର୍ଶ ସଚ୍ଚରିତ୍ର, ସାଧୁତା, ନମ୍ରତା, ସୌଜନ୍ୟ ବ୍ୟବହାର, ମୁଁ ସବୁଦିନେ ସମ୍ମାନିତ । ଆଚରଣରେ କେବେ ଭଦ୍ରତା ବାହାରେ ଯାଇ ନାହିଁ ।

ଅଥଚ ମୁଁ ପୁଣି ସେ, ଯେ ଦେଖିଚି, ଆଖିବାଟେ ଖାଇଛି, ପରର ଛାଇ । ନିଜର ବାକି ସବୁ । ପ୍ରଶାନ୍ତି, ପବିତ୍ରତା, ସଂଯମ, ଜ୍ଞାନ, ବୁଦ୍ଧି, ସତ୍ୟ, ନୀତି, ଭଲପଣ, ସବୁ ।

ସେହି ଦେଖିବା ମୁହୂର୍ତ୍ତରେ- ମୁଁ ହୋଇଛି ପିଶାଚ,- ଯେତେ ଖାଇଲେ ତଥାପି ତୃପ୍ତ ହୁଏ ନାହିଁ । ଆହୁରି ଖାଇବାକୁ ଚାହେଁ, ସେ ବୁଝେ ନାହିଁ ଆଉ କାହାରି ଭଲ ମନ୍ଦ, ଅନିଷ୍ଟ କି କ୍ଷତି, ଆପଣା ସ୍ୱାର୍ଥ ପାଇଁ ଓଟାରି ଆଣେ, ଭିଣିଭିଣା କରି ଖାଏ, ଆପଣା କ୍ଷୁଧାର ଉଲ୍ଲାସରେ ମାଡ଼ି ଦଳି ଜାଳିପୋଡ଼ି ଯାଏ ଚାଲି, ସେ ନିଷ୍ଠୁର, ପଥର ନୁହେଁ ସେ ହୁତୁ ହୁତୁ ନିଆଁ, ଆହୁରି ଉପରକୁ ଉପରକୁ ବଢ଼ି ବଢ଼ି ଉଠେ ତାର ଶିଖା, ସେ ବଧିର, ଆପଣାର କଡ଼ କଡ଼ ଚଡ଼ ଚଡ଼ ସେଁ ସେଁ ସୁ ସୁ ହିଁ ତା କାନକୁ ଏକମାତ୍ର ସଙ୍ଗୀତ, ଦୁନିଆରେ ଆଉ କିଛି ନାହିଁ ।

ଦେଖିବା ହିଁ ତାର ଖାଇବା, ଖାଏ ଆଖିରେ ।

ନିର୍ଜ୍ଜନତାହିଁ ତାର ମଉକା, ସେତିକିବେଳେ ମୋ ଉପରେ ଭରାଦିଏ ପିଶାଚ ।

ପାଠପଢ଼ାରେ ଆଉ ଆପଣା କାର୍ଯ୍ୟରେ ସବୁବେଳେ ବ୍ୟସ୍ତ ମଣିଷ ମୁଁ, ମ, ନନା ଘରର ସମସ୍ତେ ଅଛନ୍ତି ଗାଁରେ, ମତେ ରଖାଇ ଦେଇଛନ୍ତି ମେସ୍‌ରେ, ମୋର ଅଲଗା ବଖୁରିଟିଏ । ଗୋଟାଏ ପାଖ ଝରକା ଖୋଲିଲେ ସେପଟେ ବଡ଼ ପୋଖରୀ, ଅର୍ଦ୍ଧଚନ୍ଦ୍ର ପରି ବେଢ଼ି ରହିଛି ବସ୍ତିର ପଛଆଡ଼, କୋଠା, ଖପଲି ଘର, ଲୁହାଛାତଘର, ଚାଳଘର, ଗଡ଼ିଆସିଛି ପୋଖରୀ କୂଳକୁ ନାନାଆଡୁ ଗଳି, ସେମାନେ ଗାଧୋଇବାକୁ ଆସନ୍ତି । ମୁଁ ଜାଣେ କେତେବେଳେ କେଉଁ ଦଳ ଆସିବେ, ପୋଖରୀରେ ଫୁଲ ଫୁଟିବ, ଆଉ ପୋଖରୀ କୂଳରେ । ତା'ପରେ, ପିଶାଚ । ଝରକା ମୁଁ ବନ୍ଦ କରେ । ମୁଁ ଭଦ୍ରଲୋକ । କିନ୍ତୁ ଝରକାରେ ଥାଏ ଗୋଟାଏ ଫରଚା କଣା, କେଉଁ ସହାୟକ କୀଟଦଳ ଆଗରୁ ମୋ ପାଇଁ ରଖି ଦେଇଛନ୍ତି ।

ଦମ୍ ଦମ୍ ଛାତି, ଖର ନିଃଶ୍ୱାସ ଫାଇଁ ଫାଇଁ, ଆଗ ଧୀର, ରହିରହିକା, ତା'ପରେ ସାଇଁ ସାଇଁ, ଆଖି ପାଗଳର, ନିଆଁ ଜଳୁଛି ସେଠି ଦେହରେ ଝାଳ ଫୁଟୁଛି, ଅଙ୍ଗପ୍ରତ୍ୟଙ୍ଗ ଛଟପଟ, କେତେବେଳେ ବସିଛି, କେତେବେଳେ ଟହଲୁଛି, କେତେବେଳେ ଅନାଉଁ ଅନାଉଁ ନିଶ୍ୱାସ ଅଟକି ଯାଉଛି, ହୃତ୍‌ପିଣ୍ଡର ଧୁକ୍‌ଧୁକି ବନ୍ଦ ହୋଇଯାଉଛି ପ୍ରତୀକ୍ଷାରେ, ତା'ପରେ ହଠାତ୍ ନୈରାଶ୍ୟ, କଣ ଦେଖିବାକୁ ଚାହିଁଥିଲି ଦେଖି ହେଲା ନାହିଁ ।

ସେଇ ନଦେଖୁଥିବା ଅବସ୍ଥାରେ କେତେବେଳେ,- ଯେତେବେଳେ ମୁଁ ନିଃସହାୟ ଅବସ୍ଥାରେ କାମନାର ଜାଳେଣି କାଠ ହୋଇ ଜଳିଯାଉଛି, - ହଠାତ୍ କେତେବେଳେ ଆପଣା ଭିତରୁ ଶୁଣେ ବିବେକର 'ଚେତ' - 'ଚେତ' ରଡ଼ି, - 'ଯେ କଣ କରୁଛୁ ତୁ କୁନା ? କେଉଁ ଅଧଃପତନରେ ବୁଡ଼ି ଯାଉଛୁ ? ମନେ ପକା, ତୁ କିଏ, ତୁ କାହିଁକି ଏଠି ରହି ପାଠ ପଢୁଛୁ, ତୋ ଜୀବନ କେମିତି ଗଢ଼ିବୁ, ତୋ ସ୍ୱାସ୍ଥ୍ୟ, ତୋ ପ୍ରଶଂସା, ତୋ ଭବିଷ୍ୟତ୍- ।

ଉଠି ଆସେ । ରାଗେ ନିଜକୁ । ଖୁସି ହୁଏଁ, ମୋଠିଁ ମନ ବଳ ଅଛି ।

କେତେଥର ଶୁଣିଲେ ବି ଗାଳେଇ ପଡ଼େ ବାଁରେଇ ଦିଏ ନିଜକୁ, କହେ ଆଉ ଏଇ ଥରକ ମଉଜ କରେଁ କାହାର ତ କିଛି ଅନିଷ୍ଟ କରୁ ନାହିଁ ।

ଅନେକଥର ଦେଖୁ ଦେଖୁ କି ଦେଖିସାରିଲା ପରେ ମୋ ଶରୀର ହଠାତ୍ ଅପବିତ୍ର ହୁଏ । ସ୍ୱପ୍ନରେ ଅପବିତ୍ର ହେଲାପରି, ଆତ୍ମଧ୍ୱଂସ କଲାବେଳେ ଅପବିତ୍ର ହେଲା ପରି କାନ୍ଧ ଘୋଳି ହୁଏ, ଛାତି ଦବିଯାଏ, ଅଣ୍ଟା ପିଠି ଦୁର୍ବଳ ଲାଗେ, ମୁଣ୍ଡ ଘୂରେଇ ଦିଏ, ମୁଁ କ୍ଳାନ୍ତ, ଅବଶ, ପରିଶ୍ରାନ୍ତ । ସେତିକିବେଳେ ଖାଇଯାଆନ୍ତି ସବୁ ଆତ୍ମଗ୍ଳାନି, ନିଜକୁ ଦୋଷୀ କରିବାକୁ ମୁଁ ଆଉ ଭାଷା ପାଏ ନାହିଁ । ଲାଗେ, ମୋର ସରିଗଲା ସବୁ, ଆଉ ରକ୍ଷା ନାହିଁ । ମୁଁ ପାପ କରିଛି । ରାବଣ ବଞ୍ଚିପାରିଲା ନାହିଁ, ଆଉ ମୁଁ ? ଆଖିବାଟେ ଭୋଗ କରିବା ଆଉ ହାତରେ ଛୁଇଁବା ତଫାତ୍ ଖାଲି ପ୍ରକାର ଭେଦରେ, ଜିନିଷ ଏକା, ମନରେ ଚିନ୍ତା କଲେବି ଯଥେଷ୍ଟ, ଜିନିଷ ଏକା, ଖାଲି ସୁଯୋଗ ସୁବିଧା ଘଟିବା ନ ଘଟିବାର ପ୍ରଭେଦ । ମୁଁ ପରା ସତ୍ୟାଶ୍ରୟୀ ବୋଲି ଗର୍ବ କରେ, କହେ ମୋର ଲୁଚେଇବାର କିଛି ନାହିଁ । ଏକଥା କହିପାରିବି ମୁଁ ସଡ଼କ ଉପରେ ? ନା । କାରଣ ମୁଁ ପ୍ରତାରକ । ଯେକୌଣସି ସାଧାରଣ ପ୍ରତାରକ ପରି ମୁଁ ବର୍ତ୍ତି ବର୍ତ୍ତି ଯାଉଛି ମୋ ଚତୁରପଣ ଦ୍ୱାରା । କିନ୍ତୁ ଈଶ୍ୱର ପରା ସବୁଠି ଅଛନ୍ତି ? ସେ କଣ ଦେଖୁ ନ ଥିବେ ? ସେ ତ ମୋ ମନ ଭିତରେ କଣ ହୋଇଛି ତା ବି ଦେଖିପାରୁଛନ୍ତି । ତେବେ ?

କେତେଥର ଲମ୍ବ ହୋଇ ପଡ଼ିଯାଇଛି ଚଟାଣରେ ଆଗରେ ଈଶ୍ୱରଙ୍କୁ କଳ୍ପନା କରି, କାନ୍ଦିଛି, କହିଛି -''ପ୍ରଭୁ, ମୁଁ ପାପ କରିଛି ଦୋଷ କରିଛି, କ୍ଷମା କର ।'' ମନ ଭିତରେ ଶୁଣିଛି କିଏ କହିଛି, ''ଆଚ୍ଛା ଏଥର କ୍ଷମା ଦିଆଗଲା, ଆଉ ଏପରି ଅନାଇବୁ ନାହିଁ, ଆଉ ଏପରି ଭାବିବୁ ନାହିଁ ।'' କେଉଁଥର ବା ଶୁଣି ନାହିଁ କିଛି ।

କିନ୍ତୁ ଥରେ ବ୍ୟାକୁଳ ହୋଇ ଦୋଷ ମାଗି ନେଇ ଦୃଢ଼ ପ୍ରତିଜ୍ଞା କଲାପରେ ବହୁତ ଦିନଯାକେ ମୁଁ ଟାଣହୋଇ ବସିଛି । ମୋ କାମ କରିଛି, କେତେଥର ଜାଣି ଝରକା ଖୋଲି ଝରକା ସାମ୍ନାରେ ବସିରହିଛି, ଝରକା ବାଟେ ଆଖି ଛାଟିବାକୁ ଦେଇ ନାହିଁ । ପୋଖରୀରେ ପାଣି ଚବର ଚବର ଶୁଣିଛି, ଝିଅପିଲାଙ୍କ ହସ ଓ ପାଟି ଶୁଣିଛି, ଅନେଇ ନାହିଁ । ଦିନା କେତେ ବହୁତ ଛଟପଟ, ବହି ଉପରେ ମୋ ଆଖି, ପୃଷ୍ଠାକୁ ପୃଷ୍ଠା ଉଠିଛି, କିନ୍ତୁ ମନ ଭିତରେ ଚାଲିଛି ଲଢ଼େଇ, 'ଯୁଝିଛେ ମନ୍ଦ ଭାଲେ' । ତା'ପରେ ମନ ହଟିଯାଇଛି, ମୁଁ ହସି ଦେଇଛି, ପଢ଼ିଛି ।

କେତେବେଳେ ମନ ଆହୁରି ଉପରକୁ ଉଠିଛି, ମୁଁ ବୀରପରି ସାହସ ସହକାରେ ନିର୍ବିକାର ଦୃଷ୍ଟିରେ ପୋଖରୀ ତୁଠକୁ ଅନାଇଛି । ଆହା, ଏମାନେ ମୋ ଭଉଣୀ କୁନି ପରି । ଏମାନେ ମୋ ଆତ୍ମୀୟଜନ, ଭାଉଜ, ଖୁଡ଼ୀ, ମା, ମାଉସୀମାନେ । କାହାର କି ଦୁଃଖ, କି ଜଞ୍ଜାଳ, କି ଶ୍ରମ । ଏମାନେ ମୋର ଭଲରେ ରହନ୍ତୁ । ବଡ଼ ହେଲେ, ମୋଠି ଶକ୍ତି ହେଲେ ମୁଁ ତ ଏମିତି କେତେ କେତେ ଲୋକଙ୍କର ସେବା କରିବାକୁ ଚାହେଁ । ଆଉ ନିକୁଟି ଅନେଇବାକୁ ପ୍ରବୃତ୍ତି ହୋଇ ନାହିଁ ଏପରି ଭାବିଲା ପରେ, ନିଜକୁ ପ୍ରଶଂସା କରିଛି, ପଢ଼ାରେ ମନ ଦେଇଛି । କିନ୍ତୁ ପୁଣି ଦିନେ କେବେ, ପନ୍ଦର ଦିନ ଯାଇ ନାହିଁ କି ମାସେ ଯାଇ ନାହିଁ ଅଜାଣତରେ କେତେବେଳେ ଆପଣା ଭୁଲା ହୋଇ ମୁଁ କାହାକୁ ଅନେଇଁ ରହିଛି, ଉତ୍ତେଜିତ ହେଲେଣି । ମନେ ପଡ଼ିଗଲା, ମୁଁ ଅନାଇଛି । କିନ୍ତୁ ପୁରୁଣା ସାଙ୍ଗ, ସେ ପିଶାଚ ଆସିଛି ଯେ । କବାଟ ବନ୍ଦ କଲି । ଦେଲି ଝରକା ବନ୍ଦ କରି । ଜଳା ବାଟେ ଚାହିଁଛି । ମନ ଆପତ୍ତି କରିଛି । ମନର ଆ...ପଟ, ସେ ପିଶାଚ, କହୁଛି– ''ଆରେ ରହ ରହ ଆଜିକ, - ଏଇ ଥରେ- କଣ ଭାସିଯିବ ? ଟିକିଏ ନିର୍ଦ୍ଦୋଷ ଫୂର୍ତ୍ତି ।'' ନିର୍ଦ୍ଦୋଷ ! ପୁଣି ଫୂର୍ତ୍ତି ନା ସର୍ବନାଶ ? କିନ୍ତୁ ଶୁଣେ କିଏ ? ତା'ପରେ ପୁଣି ସେହି ଦଶା । ପୁଣି ଅନୁତାପ, ପୁଣି ପ୍ରତିଜ୍ଞା ।

ବୋଧହୁଏ ତିନିବର୍ଷ ରହିଥିବ ଯେ ଅବସ୍ଥା । ଆଗ ଆଗ ଖୁବ୍ ବେଶି, କ୍ରମେ ମୋର ନୈତିକ ପ୍ରତିରୋଧ ପ୍ରବଳ ହୋଇଉଠିଲା, ନିଜକୁ ବାରମ୍ବାର ନିବୃତ୍ତ କଲି । ତଥାପି ତିନିବର୍ଷ ପରେ ବି କ୍ୱଚିତ୍ ହେଲେ ବି କେବେ କେବେ ଆସିଛି ସଇତାନ ପିଶାଚ, ସେହି ମେସ୍ ବସାରେ, ଯେତେଦିନ ସେଠି ଥିଲି, ଅନ୍ୟତ୍ର, କେତେବେଳେ ରେଲ୍‌ରେ କୁଆଡ଼େ ଗଲାବେଳେ, କି ଅବା ବସ୍‌ରେ, କିନ୍ତୁ କ୍ୱଚିତ୍ ନିଶ୍ଚୟ, ନ ହେଲେ ମୁଁ ନ ଥାନ୍ତି, ଯାଇଥାନ୍ତି ଧ୍ୱଂସପାଇ ।

ସେ ଘରର ଆଉ ଗୋଟିଏ ଝରକା ଥିଲା, ପଡ଼ିଶା ଘର ଅଗଣାକୁ ତା ଦୃଷ୍ଟି ପରିସର । ସାନ, ପୁରୁଣା, ଖପର୍ଲି ଘରଟିଏ, ଦିଶେ ତିନି ବଖରା ଅର୍ଥାତ୍ ଗୁମ୍ଫାର ଦୁଆର ମୁହଁ, ଟିକିଏ ପିଣ୍ଡା, ଛୋଟ ଅଗଣା, ଅଗଣାରେ ଗୋଟିଏ ମନ୍ଦାର ଗଛ । ଆଉ କଣ କଣ, ସେଉଠୁ ପାଚିରି । ଜାଗାଟା ଖାଲୁଆ, ଏପଟ ଝରକାବାଟେ ଦୃଷ୍ଟି ତେର୍ଚ୍ଛା ହୋଇ ପିଣ୍ଡା, ଦୁଆର ମୁହଁ ଓ ଅଗଣାର କିଛି ଅଂଶରେ ପଡ଼େ ।

ସେମାନେ ମୋଚି । ସେ ଘରେ ବୁଢ଼ା, ବୁଢ଼ୀ, ଭାଇ, ଭାଉଜ, ପାଞ୍ଚବର୍ଷର ପୁଅ, ତିନି ବର୍ଷର ଝିଅ, ସେ ଦୋ'ଟି ଭାଉଜର, ଆଉ,- ଗୋଟିଏ ପନ୍ଦର ଷୋଳ ବର୍ଷର ଝିଅ- ଯେରାମ୍ମା, ଡାକିଲେ ଶୁଭେ 'ଯେରାଁ' । ଘରଟି ତାଙ୍କ ନିଜର । ଆଗେ କେବେ ଭଲ ଦିନବି ଥିଲା, କ୍ରମେ ଅବସ୍ଥା ଖରାପ ହୋଇଛି, ଝରକା ବାଟେ ସେ ଦାରିଦ୍ର୍ୟ ଦିଶେ ।

ଯେରାଁ '-ମୁଁ ତାକୁ ମନେ ମନେ କହେ ଏରା, ସେ ଗୋରା ନୁହେଁ କି କଳା ନୁହେଁ, ହାଲୁକା ଗୋଧୂଳି ବର୍ଣ୍ଣର । ନାକ ତଳକୁ ସୁନ୍ଦର ନୁହେଁ ବୋଧହୁଏ, ମୋଟା ମୋଟା ଓଠ, ଓସାର ପାଟି, ଥୋଡ଼ି ହାଡୁଆ ହୋଇ ଆଗକୁ ବାହାରି ପଡ଼ିଛି, ଯେମିତି ମାଙ୍କଡ଼ର ହନୁ । କିନ୍ତୁ ଆଖି ଦୋ'ଟି ଭାରି ସୁନ୍ଦର । ଆଉ ଦେହ । କୁନ୍ଦିଲା ପରି । ସେଠି ତା'ର ଗୌରବର ତା'ର ସମ୍ପଦର ଉଦ୍ଧତ ଆସ୍ଫାଳନ ଆବରଣ ମାନେ ନାହିଁ ।

ଏରାକୁ ମୁଁ ଚାହିଁ ରହେ, ମୋ ଆଖି ଖୋଜେ, ଗଳିଯାଏ, ଲାଖିରହେ ସେ ଦୁଆରର ଅସନା ମାନେ ନାହିଁ, ଶୁଖୁଆପୋଡ଼ାର ଦୁର୍ଗନ୍ଧ ଆସେ ନାକକୁ, ମାନେ ନାହିଁ, ଆଖି ଖୋଜେ ଏରାର ଶରୀରର ନାନା ଅବସ୍ଥା, ଦେଖେ, ମନରେ ପିଶାଚ ଆସେ, ମାତେ । କାନ ଉଣ୍ଟୁଥାଏ ତାରି ପାଟି ଶୁଣିବ, କାନକୁ ସେ ସଙ୍ଗୀତ । କିନ୍ତୁ ଯେତେଥର ତା'ର ମୋର ଆଖିକି ଆଖି ମିଶିଯାଇଛି ମତେ ଚୋରପରି ଲାଗିଛି । ମୁଁ ମୁଣ୍ଡ ନୁଆଁଇ ଦେଇ ବହିରେ ମନ ଦେଇଛି, ଆଗ ଆସିଛି ଆତ୍ମରକ୍ଷା ପ୍ରବୃତ୍ତି, ତା'ପରେ ମୋ ସଂସ୍କାର, ମୋ ଚରିତ୍ର, ନୀତି ଓ ଆଦର୍ଶର ଗର୍ବ, ମୋର ଶିକ୍ଷା, ମୋର ଆଭିଜାତ୍ୟର ଗର୍ବ । ମୁଁ. ଝରକା ବନ୍ଦ କରିଛି, କିନ୍ତୁ ସମ୍ପୂର୍ଣ୍ଣ ନୁହେଁ ।

ଏରା ଜାଣିଲା ପରି ତା ବାରଣ୍ଡାରେ ସେଇ ଗୋଟିଏ ଜାଗାରେ ବସେ ଠିଆ ହୁଏ ଯେଉଁଠୁ ମୁଁ ତାକୁ ଭଲ କରି ଦେଖିପାରିବି । ସେ ଖୁବ୍ ମେଲା ଖୋଲା ହୋଇ କାରବାର ହୁଏ । ମୁଣ୍ଡ କୁଣ୍ଡାଏ, ବେଶ ହୁଏ, କେତେ କଣ କରେ, ବେଳେବେଳେ ବେକ ଟେକି ଅନାଇଁ ଦିଏ ଝରକା ଆଡ଼କୁ, କେତେବେଳେ ଚମକି ପଡ଼ିଲା ପରି ଦେହ ଉପରେ ଲୁଗା ଟାଣିଦିଏ ।

ଲାଗିଥାଏ ଏ ଖେଳ ।

କେତେଥର ସେହି ଦୂରରୁ ହସି ହସି ସେ ଏଆଡ଼େ ଚାହିଁଛି, ମୁଁ ବି ଚାହିଁରହିଛି, ହସି ନାହିଁ, ଥରିଛି ।

କ୍ରମେ ଅଭ୍ୟାସ ହୋଇଗଲା, ସେ ଝରକା ଖୋଲା ଥିଲେ ମୁଁ ଜାଣେ ମୁଁ ବଣ ଦେଖିବି । ନୀରବରେ ସେ ଘର, ସେ ଘରର ଲୋକେ, ଏରା ଏମାନେ ମୋର ଆପଣାର ହୋଇଗଲେ । ଉତ୍ତେଜନା ସବୁବେଳେ ଆସେ ନାହିଁ । ଲାଗେ ସ୍ୱାଭାବିକ ଯେ । ମନେ ମନେ ସେ ଘରର ନିତିଦିନର କାହାଣୀ ମୁଁ ଯୋଡ଼ି ଯୋଡ଼ି ଗୁନ୍ଥୁଥିଲି, ଘରର ସବୁ

ହାଲଚାଲ, ସବୁ ସୁଖଦୁଃଖ । ଯେରାମ୍ମା କାନ୍ଦିବାର ମୁଁ ଦେଖିଛି । ସେ ଘରର କଳି ମୁଁ ଶୁଣିଛି ଧ୍ୟାନ ଦେଇ । ହସି ହସି ଗଡ଼ିଯିବାର ବି ଦେଖିଛି ।

ଦି’ ମାସ ପରେ ଥରେ । ସନ୍ଧ୍ୟା ସାଢ଼େ ପାଞ୍ଚ ହେବ । ମେସରେ ମୁଁ ଏକୁଟିଆ ଥାଏଁ । କୁଆଡ଼େ ବାହାରିଥିଲି, ଅଟକିଗଲି । ଦୁଆର ମୁହଁରୁ ଖଣ୍ଡେ ଦୂରରେ ଠିଆ ହୋଇଛି ଏରା । ସେ ମୋ ମୁହଁକୁ ଚାହିଁଲା, ମୁଁ ତା ମୁହଁକୁ । ସେ ଆସ୍ତେ ଆସ୍ତେ କାନ୍ଥ କରକୁ ଆଉଜି ଗଲା, ମତେ ବି ଯେମିତି ଓଟାରୁଛି ତା ଆଖିରେ । ଆଗ ଉତ୍ତେଜନାରେ ମୋ ଦେହ ଥରିଗଲା । ନିର୍ଜନ ବାଟ ତା ଆଡ଼କୁ ଦି’ ପାହୁଣ୍ଡ ମୁଁ ଚାଲି ଯାଇଥିବି । ହଠାତ୍ ବଡ଼ ବଡ଼ ପାହୁଣ୍ଡ ପକାଇ ନିର୍ବିକାର, ଟାଣ ହୋଇ ମୁଁ ରାସ୍ତାଏ ରାସ୍ତାଏ ଚାଲିଗଲି । ପଛକୁ ବି ଅନେଇ ନାହିଁ । ମୁଁ ଖାଲି ଭାବୁଥିଲି ମୁଁ ଜିତେନ୍ଦ୍ରିୟ, ମୁଁ ଦୁର୍ବଳତା ପାଖେ ନଇଁ ନାହିଁ ଠିକ୍ ଅଛି ଆଉ ଭାବୁଥିଲି ଥରେ ଯଦି ମୁହଁ ଦେବି ତେବେ ମୁଁ ମୁହଁ ଦେଖାଇପାରିବି ନାହିଁ । ଛି ଛି ମୋ ନାଁରେ ରଟିବ ଅପବାଦ ।

ତା’ପରେ କେତେଥର ମୁଁ ଠିକ୍ ସଞ୍ଜବେଳେ ବାହାରିଲା ବେଳେ ଏରା ବି ତା’ ଘରୁ ବାହାରି ଠିଆ ହୋଇଥାଏ । ମୁଁ ଆଉ ତା’ ଆଡ଼େ ଅନାଏଁ ନାହିଁ । ସେ ମୋର ଏକଦମ୍ ଅଚିହ୍ନା । ମେସ୍‌ରେ ସାତଜଣ ଯୁବକ ଆମେ, ତା’ଛଡ଼ା ଜଣେ ପୂଝାରୀ । ବାସନ ମାଜିବାକୁ ଘର ଓଳେଇବାକୁ ଠିକାରେ ଚାକର ଦି’ଓଳି ଆସେ । ପଦାରୁ ବନ୍ଧୁମାନେ ବୁଲି ଆସନ୍ତି । ଧନେଶ୍ୱର, ଚଇତନ ଏ ଦୁହେଁ କହନ୍ତି ନାନା ରୋମାନ୍‌ସର କାହାଣୀ, ସେ ଦୁହେଁ ନାରୀ ଚର୍ଚ୍ଚା ବିଷୟରେ ଖୁବ୍ ଆଗ୍ରହୀ, ମତେ ଥଟ୍ଟା କରନ୍ତି ନିତାନ୍ତ କାଠୁଆ ବେରସିକ ଲୋକ ବୋଲି ମୁଁ । ମୁଁ ହସେ, ଗୌରବ ଅନୁଭବ କରେ, କହେ ‘ସଞ୍ଚ, ସଞ୍ଚିଲେ ମଣିଷ ହେବ, ପଛେ ଖର୍ଚ୍ଚ କରିବ, ବୀର୍ଯ୍ୟ ଧାରଣଂ ହି ବ୍ରହ୍ମଚର୍ଯ୍ୟମ୍ ।’’ କହିଲାବେଳେ ମୋ ପାଟିରେ ବାଟୁଳି ବାଜେ ନାହିଁ । ସଚ୍ଚରିତ୍ରତା, ସଦାଚାର ଓ ସୁନୀତିର ଆଦର୍ଶ ପ୍ରତିମୂର୍ତ୍ତି ମୁଁ ।

କିନ୍ତୁ ମୁଁ ଠକିବାକୁ କହେ ଏପରି ନୁହେଁ, ବିଶ୍ୱାସ କରେ ବୋଲି କହେ । ସବୁବେଳେ କାର୍ଯ୍ୟରେ କରିପାରେ ନାହିଁ ସତ, କିନ୍ତୁ କରିବାକୁ ଚାହେଁ । ଯେତେବେଳେ ନ ପାରେ, ହାରିଯାଏ, ସେତେବେଳେ ପୁଣି ଚେତି ଉଠି ଅନାଇଁ ରହେ, ସେହି ଉପରକୁ ଯେଉଁଠି ମୋ ଆଦର୍ଶ ମଶାଲ ପରି ଆଖି ଆଗରେ ଜଳୁଛି, ଉଠିବାକୁ ଚେଷ୍ଟା କରେ । ତେଣୁ ବୋଧ୍ ହୁଏ, ମୁଁ ତଳେ ପଡ଼ି ରହିଲି ନାହିଁ, ଧ୍ୱଂସ ହେଲି ନାହିଁ ।

କିନ୍ତୁ ପ୍ରକୃତରେ କ’ଣ ତାର ମୂଲ୍ୟ ? ନିଜକୁ ମୋ ଫିସାଦରେ ବିଶ୍ୱାସ କରାଇ ପାରି ନାହିଁ । ଫିସାଦି ଫିସାଦି, ସମସ୍ତେ ନିଜ ଆଗରେ ଲଙ୍ଗଳା । ନିଜକୁ ନିଜର କିଛି ଲୁଚାଇ ହେବ ନାହିଁ ।

ମନେ ମନେ ଏରା ମୋହ ସହିତ ମୋର ଗୋଟାଏ ସନ୍ଧି ଘଟିଥିଲା, ଯେ ସେ ମୋର ମନକୁ ଖୁସି କରିବାକୁ ଗୋଟାଏ ସାମୟିକ ମୋହ, ସେ ମୋ ମନର ନିଭୃତ ମମତାର ଆଧେୟ, ମୋର ମାନସୀ ପ୍ରିୟା । ସେଇ ମୋଚି ଝିଅଟି, ତା ସ୍ୱଭାବ ଚରିତ୍ର ବିଷୟରେ ଖବର ରଖି ନାହିଁ, ତା'ଠି ମୁଁ ମୋ ମନର କଳ୍ପନାରୁ ନେଇ କେତେ ରଙ୍ଗ ବୋଳିଥିଲି, କେତେ ପ୍ରକାରେ ସେ ମୋତେ ସୁଖ, ଉଷୁମ୍, କଳ୍ପନା ଓ ଭାବିବାକୁ ଧାରଣା ଯୋଗାଇଥିଲା । ଅଥଚ ସେବି ଜାଣିବ ନାହିଁ, କେହି ଜାଣିବେ ନାହିଁ, ସବୁ ଘଟିବ ମନେ ମନେ ।

କେତେଥର ଝରକା ଖୋଲା ରଖିଛି ।

ସେ ମୋ ଉପରେ ପ୍ରତିଶୋଧ ନେଇଛି ମୋ ସ୍ୱପ୍ନରେ ।

ମୁଁ ଉଠିପଡ଼ି ନିଜକୁ ଧିକ୍କାରିଛି, ଅନୁତାପ କରିଛି, ପୁଣି ଚେଷ୍ଟା କରିଛି ଆଉ ତା' କଥା ଭାବିବି ନାହିଁ ।

ଅଢ଼େଇ ବର୍ଷ ବିତିଯାଇଥିଲା । ସେହି ଝରକା ବାଟେ ମୁଁ ଦେଖିସାରିଥିଲି ସେ ଘରେ ମୋଚି ବୁଢ଼ାର ମୃତ୍ୟୁ, ବିଚରା ପେଟ ଫୁଲେଇ ବହୁତ ଦିନ ପଡ଼ିରହିଲା । ଦିନେ ସେ ଘରୁ ଯେରାମ୍ମା ବାହା ହୋଇଗଲା ।  ମନେ ନାହିଁ ରବିବାର କି ଛୁଟିଦିନ । ବେଳ ପ୍ରାୟ ତିନିଟା । ଯେରାମ୍ମା ଗୋଟିଏ ବଖୁରୀରୁ ବାହାରିଲା । କନକନ ହୋଇ ଅଗଣାର ଏପାଖ ସେପାଖ ଅନାଇଲା, କେହି କୁଆଡ଼େ ନ ଥିଲେ ବୋଧହୁଏ । ସେ ସବୁଦିନେ ଯେଉଁଠି ଠିଆହୁଏ ସେଇଠି ଠିଆହେଲା । ମୁଣ୍ଡରେ ଲୁଗା ନାହିଁ, ଜିକି ଜିକି କଳା ବାଳର ପାଲିସ୍ ଖୋଷା ଉପରେ ବହଳ ହୋଇ ଫୁଲହାର, କପାଳରେ ଗାଲରେ ଚିତା, ହାଲୁକା କମଳାଲେମ୍ବୁ ବର୍ଣ୍ଣର ପାତଳ ଓଢ଼ଣି ତଳେ ଚିପା ନାଲି ଜ୍ୟାକେଟ୍, କେତେ ଗହଣା ଝୁଲେଇଛି ।  ସିଧା ଅନେଇ ରହିଲା ।

ତା' ଚାହାଣିରେ ବୁଡ଼ିଗଲି । ସେମିତି ଅନାଇ ରହିଛି ସେ । ଆମୂଳ ହେଲି । ଲାଗିଲା ସେ ଚାହାଣି ମତେ କଣ କହୁଛି ।

ଅତି କରୁଣ ତା'ର ଭାଷା ।

ହଠାତ୍ ଯେରାମ୍ମା ବେକ ଭାଙ୍ଗିଲା, ଦି'ହାତ କପାଳରେ ଲଗାଇଲା, ବେକ ସିଧା କଲା, ଆଖି ଉପରେ କାନି ମାଡ଼ି ଦେଇଛି, ବୁଲିପଡ଼ିଲା, ଘର ଭିତରେ ପଶିଲା । ବକା ହୋଇ ମୁଁ ଅନାଇ ରହିଲି ।

ତେବେ କଣ ଏରା ମତେ ଦଣ୍ଡବତ କରି ଗଲା ।

ବସିଥାଏ, ଅଳ୍ପ ସମୟ ପରେ ଅଗଣାରେ ଗହଳି ଦିଶିଲା, ମହୁରିଟିଏ ବାଜିଲା, ଗହଳି ପଦାକୁ ବାହାରିଲା, ଯେରାମ୍ମା ବିଦା ହେଲା ।

ମୋର ବି ଯବନିକା ପଡ଼ିଲା ।

ପଡ଼ିଲାକି ? ତାର କେତେ ମାସ ପରେ ସେ ଘରୁ ଫେର୍ ବିକଳ କାନ୍ଦଣା ଶୁଣିଲି, ସମସ୍ତେ ଛାତିରେ ବାଡ଼େଇ ହେଉଛନ୍ତି, ବାଡ଼େଇ କଟାଢ଼ି ହେଉଛନ୍ତି, ଏକାଠି ହାଉ ହାଉ ହୋଇ କାନ୍ଦୁଛନ୍ତି । ମୋ ସାଙ୍ଗ ଚଇତନ ପଶିଆସି କହିଲା 'ଆହା ଶୁଣିଲେଣି ଖବର ଜୁର୍‌ଷୀ, ହେ ସେପାଖ ମୋଚି ଘରଟି ନୁହେଁ ସେ ଯେଉଁ ଝିଅଟି ସେଥର ବିଭା ହୋଇଥିଲା, ଆରେ ଆଜି ଶୁଣିଲାବେଳକୁ ବିଚରା ମରିଗଲା ।'

'ଏଁ !'

ହଁ ଭାଇ, କହୁଛନ୍ତି ପରା ତିନିମାସ ଗର୍ଭ ହୋଇଥିଲା କଣ ବିଗିଡ଼ିଲା ଡାକ୍ତରଖାନାରେ ''

କବାଟ କିଳିଲି । ତା ପାଇଁ ପ୍ରାର୍ଥନା କଲି । ସ୍ୱର୍ଗତ ଆତ୍ମା ଉଦ୍ଦେଶ୍ୟରେ ହାତ ଯୋଡ଼ି ମନେ ମନେ କ୍ଷମା ମାଗିଲି, ତୁମେ ବର୍ତ୍ତମାନ ଅନ୍ତର କଥା ମନଭିତରର କଥା ଦେଖିପାରୁଛ । ମୁଁ ଅପରାଧ କରିଛି କ୍ଷମା କର । ତୁମେ ଥିଲ ମୋଚି ମୁଁ ବ୍ରାହ୍ମଣ, କିନ୍ତୁ ମୁଁ ତୁମକୁ ଭଲ ପାଇଛି ମନେ ମନେ, ସାହସ ହୋଇ ନାହିଁ । ସ୍ୱୀକାର କରିବି ତୁମର କୌଣସି ଉପକାରରେ ଆସି ନାହିଁ ଓଲଟି ଆପଣା ସ୍ୱାର୍ଥ ପାଇଁ ଇତର ଚାହାଣିରେ ତୁମକୁ ଆଖିବାଟେ ଚରି ବୁଲିଛି ଅନେକ ଥର । ମୁଁ ଅନୁତପ୍ତ ମୁଁ ଲଜ୍ଜିତ ମୁଁ ଅପରାଧୀ ।

ଏରା ଆସିଲା ଆଉ ଗଲା । କେତେ ଥର କେତେ ମଣିଷଙ୍କର କେତେ ଏରା ! ବ୍ରାହ୍ମମୁହୂର୍ତ୍ତ- ଏରା-ଆସୁଛି ଉଷା-କାନ ଅତରା ପକାଇ ଏକାଠି ମିଶି ନାନା ଅତର୍କ୍କା ବୋବାଳି-ନାନା ସଂକୀର୍ତ୍ତନ - ଉଦ୍ଦଣ୍ଡ ନୃତ୍ୟର ସୂଚନା ଆଣେ- ମୂର୍ଚ୍ଛନା ବଢ଼ି ବଢ଼ି ଯାଉଛି- ଅତି ଦ୍ରୁତ ତା ବେଗ-ତାଳ ବେତାଳ ଯୋଡ଼ ବିଯୋଡ଼ ସବୁ ଏକାକାର ଚଅଁରାଉଁରା ସବୁ ଏକାକାର ଉଦାରା ମୁଦାରା ତାରା ଯାହାର ଯେପରି ସ୍ୱର ନାନା ଆରଣ୍ୟକ ଶବ୍ଦ- ବାହାରିଯା ସବୁ ବାହାରିଯା- ମନଗହୀରର ସବୁ ରିପ୍ରେସନ୍ ସବୁ ବିକାର-ଜଳା ଫିଟିଛି ନଳା ଫିଟିଛି ବୋହିଯାଉଛି କଳାକାରି ପଙ୍କ ଆମ୍ବିଳା ପେଜ ଆଉ କ୍ଷୀର ଆଉ ପାଣି-ତା'ପରେ ସବୁ ନିର୍ମଳ ହେବ-ଭୂଇଁ ଆକାଶ ପାଣି ପବନ ନିର୍ମଳ ହେବ ମଧୁମୟ ହେବ-କ୍ଷୀଣ ସ୍ମୃତି ଆସୁଛି ଦୂରେଇ ଯାଉଥିବା ମଶା ଘାଉଁ ଘାଉଁ ପରି ଯେ ଲାଗିଥିଲା ରାତିଯାକ ଏ କର୍କଶ ଚିତ୍କାର ଘୋ ଘା ଶକ୍ତିଶାଳୀ ମାଇକ୍ ତାକୁ ଏ ସହରଯାକ ପୋପାଡ଼ି ଲାଗିଥିଲା । ମଣିଷଙ୍କ ନିଦକୁ ତେଙ୍ଗେଇ ତଡୁଥିଲା ଛାତିଛାତିକା ସ୍ୱର ବୋବାଳି-ମୁଁ ଶୋଇପାରି ନ ଥିଲି, ଛଟପଟ ହେଉଥିଲି-ତେବେ କଣ କରୁଥିଲି ? କାନେଇଥିଲି ଆଉ କେଉଁ ହଜିଲା ଶବ୍ଦର ପ୍ରତିଧ୍ୱନିକୁ ।

# ଟିନ୍ ଇଲମ୍

ଅନ୍ଧାର ରାତି । ଆମେ ତିନିବନ୍ଧୁ ଜଇପୁର ରାସ୍ତାଏ ରାସ୍ତାଏ ଫେରୁଥାଉଁ, ମୁଁ, କାଳୀବାବୁ ଆଉ ବାଞ୍ଛାନିଧିବାବୁ । ଲୋକଗହଳି ଭିତରେ କିଏ କେତେ ଅନ୍ଧାରି ଚଲାଳି ମୁଣ୍ଡରେ ଝୁଂପା ଝୁଂପା ଫୁଲ ପିନ୍ଧି ରାସ୍ତାର ଦକ୍ଷିଣ ସୁଚା ଆଉ ଶୁଖୁଆ ଗନ୍ଧ ଉପରେ ଅତର ଛିଞ୍ଚିଛିଞ୍ଚିକା ଏ ଗଳିରୁ ବାହାରି ରାସ୍ତା ପାରି ହୋଇ ଆର ଗଳି ଭିତରକୁ ପଶିଯାଉଥାନ୍ତି । ଚାଉଳବୁହା ଲରୀର ଆଲୁଅ ଚିହ୍ନେଇ ଦେଉଥାଏ ତାଙ୍କୁ ବାଟ ମଝିରେ । କଳା ଶାଢ଼ି, ନାଲି ଶାଢ଼ି, ପାତଳା ବ୍ଲାଉଜ୍ । ଦିନବେଳେ ମଜଦୁର୍ ଏମାନେ । ଆମ୍ବ ପସରା ଧରି, ପରିବା ପସରା ଧରି, ନ ହେଲେ ଝାଡୁ ଟୋକେଇ ଧରି ଚିହ୍ନାଚିହ୍ନି ପରିଚୟ ଶେଷ କରିଦେଇ ଆସିଥାନ୍ତି । ରାତିରେ ଏମାନେ ମାୟାବିନୀ । ରାତିରେ ସବୁ ବାଡ଼ ହିଡ଼ ସମାନ, ପରିଚୟ କେବଳ ଦେହର ଅବସ୍ଥା, ବାଲ୍ୟ, ଯୌବନ, ବାର୍ଦ୍ଧକ୍ୟ ।

ରାସ୍ତାରେ ଯୌବନ ଚାଲିଛି, ଅନ୍ଧାରି ପତକା ଉଡ଼େଇ, ପିଣ୍ଡାରେ ବସି ବୃଦ୍ଧ ନାରଣମୂର୍ତ୍ତି ଗାରୁ କାଶୁଛନ୍ତି, କାଶଟା ଛିଣ୍ଡୁ ନାହିଁ, ଘର ଭିତରେ ପିଲା କାନ୍ଦୁଛି, ହେଁସରେ ମୃତୁଛି । ଆମେ ତିନିବନ୍ଧୁ ଚାଲିଛୁ, କଥା ପଡ଼ିଥାଏ-ଯେଉଁ କଥା ତିନିଜଣ ଏକାଠି ହେଲେ ପଡ଼େ, ଯେ ସାହିତ୍ୟର ସବୁଠାରୁ ବଡ଼ ଉପାଦାନ ତରୁଣ-ଯୁଗରେ । ପଡ଼ିଥାଏ ଦୁର୍ଭିକ୍ଷ କଥା, ପାଗଯୋଗର ଦୁରବସ୍ଥା କଥା । ଦେଖ ଯେ ଏଡ଼େ ବଡ଼ ପୃଥିବୀରେ ଭଲପାଇବାର ଭଣ୍ଡାର ଭର୍ତ୍ତି ହୋଇ ରହିଛି, ଅଥଚ ଘରେ ଘରେ ଦୁର୍ଭିକ୍ଷ ଆଉ ହାହାକାର ଆଉ ଦୀର୍ଘଶ୍ୱାସ । କିଏ ଖାଲି ଝରକାବାଟେ ଚାହିଁରହିଛି ତ ରହିଛି, ସେପାଖର ତରୁଣୀଟି ସକାଳେ କେତେବେଳେ ପାନ ପିକ ଟୋପେ ପିଚ୍‌କିରି ପଦାକୁ ପକେଇ ଦେଇଥିଲା, ଆଉ ମୁହଁ ଦିଶି ନାହିଁ, ସେ ଝଚକାର ରେଲିଂରେ ରକ୍ତିମ ସ୍ମୃତି ଖରାରେ ଶୁଖି ଶୁଖି କୁଆଡ଼େ ଅଦୃଶ୍ୟ ହୋଇଗଲାଣି । ସଞ୍ଜ ହେଲା, କିଏ ଖାଲି ଶୁଖିଲା ଓଠ ଦି'ଫାଳିରେ ହୃଦୟର କଥା ଦି'ପଦ ଥର ଥର କରି ଲଖେଇ ଦେଇ ଖରାଏ ତରାଏ ଧାଇଁଛି ତ ଧାଇଁଛି, ଝାଳ ନାଳ ଧୂଳି କାଦୁଅ,- ବୃଥା । କିଏ ଦଦରା କେଳେନ୍ଦରା ଖଣ୍ଡି କାନ୍ଧରେ ବୋହି ଦୁଆର ଦୁଆର ବୁଲି ବୁଲି ହଇରାଣ, ଛ ଗାଁ ଗଲେ ଯେତେ ନ ଗାଁ ଗଲେ ସେତେ । ପାଗ ଅଛି, ଯୋଗ ଅଛି, ଉପାଦାନ ଅଛି ଉପକରଣ ଅଛି, କିନ୍ତୁ ତଥାପି ଦୁର୍ଭିକ୍ଷ ଆଉ ଅଶାନ୍ତି, ଅଜାଙ୍କର ଯେପରି ଥିଲା ନାତିଙ୍କର ସେହିପରି ଅଛି, ଖାଲି ଘନ ଘନ ଦୀର୍ଘଶ୍ୱାସ, ଯେ ଖରା ଝାଞ୍ଜିକୁ ଆହୁରି ତତେଇ ଦିଏ । ଆଉ ନୀରବରେ ଲୁହ-ଶ୍ରାବଣ । କି ଘୋର ଅଭାବ !

ଜ୍ଞାନୀବାବୁ ଜଣେ ତତ୍ତ୍ୱଦର୍ଶୀ ଲୋକ, ଅଳ୍ପ ଭାଷୀ କିନ୍ତୁ ଭାବୁକ । ତହିଁ ଉତ୍ତାରୁ ମତାମତ ପାଇଁ ଆମେ ତାଙ୍କ ମୁହଁକୁ ଅନେଇଁ ରହୁଁ । ସେ ଖାଲି କହନ୍ତି ''ହୁଁ'' । କାରଣ, ସେ ଗଛ ଭିତରେ ଅନୁଭୂତି ଦେଖିଛନ୍ତି, ଦେଖିଛନ୍ତି ଫୁଲ କିପରି ବଂଶବୃଦ୍ଧି ପାଇଁ ଛାଇ ଫୁଟେଇ ଫାଳ ପାତି ଟାକି ରହେ, ପ୍ରତି ସୂକ୍ଷ୍ମ ପ୍ରକ୍ରିୟା ତାଙ୍କର ଅଣୁବୀକ୍ଷଣ ଯନ୍ତ୍ରପରି ତୀକ୍ଷ୍ଣ ଆଖିରେ ଆଗ ଧରାଦେଇ ପଛେ ଯାଏ, ତେଣୁ ଆମର ପ୍ରାଞ୍ଜଳ ଯୁକ୍ତିକୁ ତାଙ୍କର ମେଘ-ଗମ୍ଭୀର ମନ୍ତବ୍ୟ-''ହୁଁ'' ।

ଆମର ଚାଲିଥାଏ - ଯେ ଏଇ ଅତୃପ୍ତ ଆକାଙ୍କ୍ଷାରେ ଘାରି ହୋଇ ହୋଇ କିଏ ହୁଏ କବି ଚିତ୍ରକର ବୈଜ୍ଞାନିକ ଦାର୍ଶନିକ, କିଏ ହୁଏ ନିଉରୋଟିକ୍, କିଏ ଶାଡ଼ିଷ୍ଟ, କିଏ ଚାହିଁ ଚାହିଁ ସ୍ୱପ୍ନ ଦେଖେ, କିଏ ଡାକ୍ତରଙ୍କ ହାଇପୋଡର୍ମିକ୍ ସିରିଞ୍ଜ୍ ମୁନରେ ଛଟପଟ ହୁଏ । ସବୁ ହୁଏ, ଜୀବନ ସରିଆସେ, କିନ୍ତୁ ଶେଷରେ ମନକୁ ଗ୍ରାସେ ଗୋଟାଏ ତୀବ୍ର ବିଫଳତା, ଜାବ ପଡ଼ିଥିବା ମୁଠା ଭିତର ଖୋଲିଲା ବେଳକୁ ଗୁଡ଼ାଏ ପାଉଁଶ ।

ଏଇ ଯେ ପତ୍ରପତ୍ରିକାରେ ଏତେ ବିଳାପ ଏତେ ଆନ୍ଦୋଳନ, ସେ କାଳରୁ ଏକାଳ ଯାଏ ଯାର କଣ କିଛି ଉତ୍ତର ନାହିଁ ?

ପୂର୍ବକାଳର ଗୁପ୍ତ ବିଦ୍ୟା ଲୁପ୍ତ ବିଦ୍ୟା ଭିତରେ ବଶୀକରଣ ବୋଲି ଗୋଟାଏ ବିଦ୍ୟା ଥିଲା, ସେ କାଳର ଗୁରୁମାନେ ବେଶୀ ଚେଲା ରଖୁ ନ ଥିଲେ, ତେଣୁ ହଜିଗଲା । ଯଦି ସେପରି କିଛି ଉପାୟ ମିଳିପାରନ୍ତା ଲୋକେ ଯେପରି ଗୋଟାଏ ବା ବେଶୀ ବିଫଳତାର କ୍ଷତ ଲୁଚେଇ ଲୁଚେଇ ଉଦ୍‌ଭ୍ରାନ୍ତ ହୋଇ ଦିନ କାଟୁଛନ୍ତି ତା ଆଉ ହୁଅନ୍ତା ନାହିଁ, ସାଫଲ୍ୟରୁ ମେଦ ମାଂସ ବୃଦ୍ଧି ହୁଅନ୍ତା, ମନରେ ଶାନ୍ତି ରହୁଥାନ୍ତା, ସବୁ ଭଲ ହୁଅନ୍ତା ।

ବଶୀକରଣ କଥାଟା ଉଠିଲାରୁ ପିଲାଦିନର ସୋନପୁରର ସାଙ୍ଗ ନୀଳାମ୍ବର କଥା ପଡ଼ିଲା । ଏମ୍. ଏ. ପଢ଼ିଲା ବେଳେ ଖରାଦିନ ଛୁଟିରେ ଘରକୁ ଯାଇ ସେ ବଶୀକରଣ ବିଷୟରେ ଅନୁସନ୍ଧାନ କରିଥିଲା, ଅର୍ଥାତ୍ ରିସାର୍ଚ୍ଚ କରିଥିଲା, କଲେଜର କେଇଜଣ ବିଲାତ୍ ଫେରନ୍ତା ବଡ଼ ବଡ଼ ଅଧ୍ୟାପକ ଓ ସହରର ଆଲୋକପ୍ରାପ୍ତା କେତେଜଣ ମହୀୟସୀଙ୍କ ଆଗରେ ଖଣ୍ଡିଏ କାଗଜ ପଢ଼ିଥିଲା । ଟେଁଡ଼୍‌କାପଲ୍ଲୀ ଗାଁରେ ବିଶ୍‌ପକ୍‌ସେନ୍ ଜଟୁ (ପୋ: ଅ: ବିନ୍‌କା, - ଯଦି କାହାରି କାର୍ଯ୍ୟରେ ଆସିପାରେ-) ଏକପ୍ରକାର ଔଷଧ ତିଆରି କରନ୍ତି ଯେ କେବଳ ମୁଣ୍ଡରେ ଚିତା ମାରିଦେଇ ଆଗନ୍ତୁକାଙ୍କୁ ଥରେ ଚାହିଁଦେଇ ମନେ ମନେ ବିଶ୍‌ପକ୍‌ସେନ୍ ବିଶ୍‌ପକ୍‌ସେନ୍ ବୋଲି ପାଞ୍ଚଥର ଜପିବାକୁ ପଡ଼ିବ । କିନ୍ତୁ ଏ ଔଷଧ ପ୍ରୟୋଗ କରିବା ସକାଶେ ସ୍ଥାନର ଅକ୍ଷାଂଶ, ଦ୍ରାଘିମା, ଉଚ୍ଚତା ଓ ଜଳବାୟୁ ଗୋଟିଏ ବିଶିଷ୍ଟ ପ୍ରକାର ହେବା ଦରକାର, ଯାହା କେବଳ ଟେଁଡ଼ୁକାପଲ୍ଲୀ ଓ ତାର ଆଖ ପାଖ ଅଞ୍ଚଳକୁ ସାଜିପାରେ । ଆମ ଗପ ଏମିତି ଲାଗି ରହିଲା ।

# ଶେଷ ଇସ୍ତାହାର

ମୋର ଆଉ ବେଶି ଦିନ ନାହିଁ, ତୁମେ ଜାଣିନା, ମୁଁ ଜାଣେଁ । ତୁମେ ମତେବି ଚିହ୍ନି ନ ଥିବ, ନାଁ ବି ଶୁଣି ନ ଥିବ ବୋଧହୁଏ । ଜାଣନ୍ତ ବି କାହିଁକି ? ଟିକିଏ ଭାବିଲେ ଜାଣିପାରିବ, ଆଖି ପିଛୁଡ଼ାକେ ଏ ପୃଥିବୀରେ କେତେ ମଣିଷ ଜନ୍ମ ହେଉଛନ୍ତି ଆଉ କେତେ ମଣିଷ ମରୁଛନ୍ତି । ବଡ଼ ବଡ଼ ମଶାଣିରେ ଦେଖିଥିବ ନିଆଁ ଆଦୌ ନିଭେ ନାହିଁ, ଆସୁଛି ତା ପଛକୁ ତା ପଛକୁ ପଟୁଆର, ରାମ୍ ନାମ୍ ସତ୍ୟ ହାୟ, ଜଳୁଛି ଚିତା କାହାର ନାଇଁ କାହାର, କାନ୍ଦୁଛି କିଏ କାହାପାଇଁ କେଉଁଠି ଆଉ କାହାପାଇଁ କାନ୍ଦିବାକୁ ବି କେହି ନାହିଁ । ଆଉ ସାହିଏ ସାହିଏ, ଗଳିଏ ଗଳିଏ, କେଉଁଠି ତୁମ ନାକରେ ବାଜୁଥିବ ଆଉ ଏକପ୍ରକାର ଧୂଆଁର ଗନ୍ଧ, ଫୁର୍କୁଟିଆ ନୁହେଁ, ବାସ୍ନା ନୁହେଁ କେମିତି ଆଉ ଏକପ୍ରକାର । ଆଚ୍ଛା କହ, ସବୁକଥା କଣ ଭାଷାରେ ପ୍ରକାଶ କରି ହୁଏ ? ହୁଏ ନାହିଁ । ଖାଲି ଅନୁଭୂତି । ସେମିତି ସେ ଧୂଆଁର ବାସ୍ନା କି ଗନ୍ଧ । ନାକରେ ବାରି ଆସନ୍ତା ଘଟଣା ବି ଅନୁଭବ କରିହୁଏ, ଦେଖିଥିବ କେହି ରୋଗୀ ମଲା ଅବସ୍ଥା ଆସିଗଲେ ପୋଷାକୁକୁର ବିନା କାରଣରେ ହଠାତ୍ ବୋବାଳି ଛାଡ଼େ, ଅତର୍କ୍କ ବିକଟାଳ ବୋବାଳି, ଆଉ କାନରେ ଶୁଣି ବାରିବାବାଲା ବି ଅଛନ୍ତି, ସେମାନେ ସେ ବୋବାଳିକୁ ଅର୍ଥ କରନ୍ତି, ତାଙ୍କ ଛାତି ଭିତରେ ରକ୍ତ ହୋଇଯାଏ ହେମାଳ, ବରଫ । କିନ୍ତୁ ସେଗୁଡ଼ାକ ଭାଷାରେ ପ୍ରକାଶ କରିହୁଏ ନାହିଁ ।

ସେମିତି ଆଖିରେ ଦେଖିବା ରୂପଗୁଡ଼ାକ । ଆଖି ଖରାପ ହେଲେ ଅଭାବ ଅନୁଭବ କରିହୁଏ ଯେ କ'ଣ ଦିଶୁଥିଲା ଆଉ ଦିଶିଲା ନାହିଁ । କିନ୍ତୁ ଅନ୍ଧ ଆଖି ଥାଇବି ଆଉ କଣ କଣ ଦେଖିଆ ଅନୁଭୂତି ଆସେ, ଆଖି ବ୍ୟବହାର ନ କରି ବି ଆସେ, ତାକୁ ଭାଷାରେ ରୂପ ଦେଇ ହୁଏ ନାହିଁ କିନ୍ତୁ ଅବିକଳ ଦେଖିଲା ଛବିପରି ସେ ଚେତନା-ପଟରେ ଭାସେ । 'ଚେତନା-ପଟ', ନିଶ୍ଚୟ ତୁମେ ହସିବ ଏ ନାଁ ଶୁଣି । ମୁଁ ବି ଏ ନାଁଟି ବ୍ୟବହାର କରି ଯେ ସଂପୂର୍ଣ୍ଣ ନିଶ୍ଚିନ୍ତ ତା ବି ନୁହେଁ । କିନ୍ତୁ ଯାହାକୁ ମଣିଷ ଭାଷାରେ ଫୁଟାଇପାରେ ନାହିଁ ତା ପାଇଁ ଆଉ କେଉଁ ଭାଷା ବ୍ୟବହାର କରେ, ଫୁଟୁ ନ ଫୁଟୁ, କିଛି କହି ମନୋଭାବ ପ୍ରକାଶ କରିବ ତ ?

କିନ୍ତୁ ମୁଁ ଅନୁଭବ କରିଚି, ତୁମେ ବି ଅନୁଭବ କରିଥିବ ବୋଧହୁଏ, ଯେ ମଣିଷ ଆଖିବାଟେ ଟାଣ, ନିଦା, ସ୍ପଷ୍ଟ କରି ଯେତେ ଯାହା ଦେଖେ ତାଠୁଁ କେତେ ଅଧିକ

ଦେଖେ ଆଖି ସାହାଯ୍ୟରେ କି ବିନା ଆଖିରେ ଯାହାକୁ ସ୍ଥୂଳ ବର୍ଣ୍ଣନା ଅନୁଭୂତିରେ ପ୍ରକାଶ କରିବା ଅସମ୍ଭବ ଅଥଚ ଯେ ତା'ର ଚେତନା ଉପରେ ଜୀବନ ଉପରେ ଅଧିକ କାର୍ଯ୍ୟକାରୀ । ଧର ତୁମେ ଜଣେ ଯୁବକ । ନାରୀ-ରୂପ ତୁମ ଆଖିକୁ ନିଶ୍ଚୟ ଆକର୍ଷଣ କରିଥିବ । ସେ ନାରୀ-ରୂପ କଣ କେବଳ ମଣିଷଠିଁ ଅଛି ? ପିଲାଦିନୁଁ ଏଯାକେ କୀଟପତଙ୍ଗ, ପଶୁ, ପକ୍ଷୀ, ଯେଉଁମାନେ ପୁରୁଷର ଦେହ ସହିତ ଦେହ ମିଶାଇ କିଛିକ୍ଷଣ ରହିଲା ପରେ କାଳକ୍ରମେ ସନ୍ତାନ ଜନ୍ମ କରନ୍ତି, ସମସ୍ତିଙ୍କଠିଁ ନାରୀରୂପ ଦେଖିଥିବ, ଆକୃଷ୍ଟ ହୋଇଥିବ କ୍ୱଚିତ୍ । କେବେ ତରଳ ମନରେ କୁକୁର ମିଥୁନକୁ ଚାହିଁ ଦେହ ତାତିଥିବ, ତା'ପରେ ବିରକ୍ତ ହୋଇଥିବ, ତା'ପରେ ରାସ୍ତାରେ ଗଲାବେଳେ ଆଉ କେତେ ସେପରି ଦେଖିଥିବ ଟେକା ପକାଇଥିବ ନ ହେଲେ ଆଦୌ କିଛି ନ ଭାବି ଚାଲି ଯାଇଥିବ । କିନ୍ତୁ ମଣିଷ ନାରୀଠିଁ ତୁମେ କିଛି ଅଧିକ ଦେଖିଥିବ, ନ ହେଲେ ତୁମେ ତେଣେ ଆକୃଷ୍ଟ ହୋଇଥିବ କାହିଁକି ? ହୁଏତ ତୁମେ ଭଦ୍ର, ଶ୍ଳୀଳ, ସଂଯତ, ରୁଚିସଂପନ୍ନ । ହୁଏତ ନୁହେଁ, ନିଶ୍ଚୟ । କେବେ ଏ ମନୁଷ୍ୟ ଜାତି ମନୁଷ୍ୟ ନ ହୋଇ ପଶୁ ହୋଇ ନିର୍ବିକାର ଭାବରେ ପ୍ରକାଶ୍ୟରେ ସମ୍ଭୋଗ କରୁଥିଲେ ତା ଅତି ପୁରାତନ ଇତିହାସ (କିନ୍ତୁ ସେତେ ପୁରାତନ ବୋଧହୁଏ ନୁହେଁ, ଯେଉଁମାନେ 'ଆଧୁନିକ' ସହରରେ ବୁଲିଛନ୍ତି କି ଅବା ପାଶ୍ଚାତ୍ୟ ଦେଶମାନଙ୍କରେ ସେମାନଙ୍କର ଅବଶ୍ୟ ଭିନ୍ନ ଅଭିଜ୍ଞତା ଥିବ ।) କିନ୍ତୁ ତୁମେ ଆମ ସମାଜର ମଣିଷ, ଯେଉଁଠି ସମସ୍ତେ ଜାଣି ସୁଦ୍ଧା ଜାଣନ୍ତି ନାହିଁ । ତମର ନୂଆ ଚଉଠି ରାତି ମନେପକାଅ । ଆସ୍ତେ ଆସ୍ତେ କବାଟ ଆଉଜେଇଦେବାର, ଯେମିତି କେଁଟିଏ ବି ନ ଶୁଭିବ । ତା'ପରେ କିଳିଣି ବନ୍ଦ କରିବାର, ସେ ବି ଆସ୍ତେ ଆସ୍ତେ । ତା'ପରେ, - ଗୋଟାଏ ଆତ୍ମବିଶ୍ୱାସ, କେହି ଯେ ଦେଖୁ ନାହାନ୍ତି ତା ତ ନିଶ୍ଚୟ, କେହି କିଛି ଜାଣୁ ନାହାନ୍ତି (ଜାଣନ୍ତେ ବା କେମିତି, ତୁମେ ହିଁ ତ ଏ ପୃଥିବୀର ପ୍ରଥମ ଯୁବକ ଯୁବତୀ !)

ସେହି ନର-ନାରୀ ସମ୍ପର୍କ ଚର୍ଚ୍ଚା ହିଁ କରୁଥିଲି, କାରଣ ମୁଁ ଜାଣେ ମୋର ସମୟ ଅଳ୍ପ, ଅତି ଅଳ୍ପ । ଭୟଭୀତ ସଂକୁଚିତ ସ୍ଥିତି ଅବା ସୃଷ୍ଟିରେ ତଥାପି ମୋ କୋଠରିର ଝରକା ଖୋଲା ଅଛି । (କବାଟ ବୁଜିଛି, ଯଦିଚ, ମୁଁ ଜାଣେ ତୁହାଇ ତୁହାଇ ବୁଟ୍‌ପିନ୍ଧା ପାଦର ଆଠଟା ଗୋଇଠା ବି ସେ ସହିପାରିବ ନାହିଁ, ପିତଳ ଗୋବମରା ଠେଙ୍ଗିଣିର ଢିଅ ଆଗରେ କେତେବା ସେ, ବନ୍ଧୁକର ସଙ୍ଗିନ ମୁନ ଏକା କେଞ୍ଚାକେ ତାକୁ କରିଦେବ ଦି'ଫାଳ, ନରମ ତେନ୍ତେରା କାଠର କବାଟ, ପିଆଶାଳ କାହୁଁ ପାଆନ୍ତି, ସୁନା ମୂଲ) ଝରକାବାଟେ ଦୂରକୁ ଅନାଇଁ ଦେଖୁଛି, ନିଆଁ ଧୂଆଁ, ଦିଗ୍‌ବଳୟ ଅନ୍ଧାର । ନା ଠିକ୍ ହେଲା ନାହିଁ । ଟିକିଏ ଥୟ ଧର, ରୂପ ଦେବି । ଧର, କଳା କିଟି

କିଟି ଅନ୍ଧାର ତରଳ ହୋଇଛି, ଦେ୍ୟୌ ଆଉ ପୃଥିବୀ ମଝିରେ ଯେଉଁ ଅଛିଣ୍ଡା ଦୋସନ୍ଧି ସେଠି ସେହି ତରଳ ଅନ୍ଧାର, ନ ତତ୍ର ସୂର୍ଯ୍ୟୋ ଭାତି, ନ ଚନ୍ଦ୍ର ନ ଚ ତାରକମ୍ । ସେଠି ଦୃଷ୍ଟି ଭେଦେ ନାହିଁ । ଚେତନା ଭେଦି ଭେଦି ଦୂରର, ଭବିଷ୍ୟତ୍‌ର, ତୁମର ଆଉ ତୁମ ସନ୍ତାନମାନଙ୍କ ଅଛିଣ୍ଡା ପରମ୍ପରାର (ତୁମକୁ ମୋର ପ୍ରାଣଭରା ଆଶୀର୍ବାଦ ହେ ଏ ପୃଥିବୀର ଅସରନ୍ତି ଜୀବନର ସୁଅ, ଆଶୀର୍ବାଦ, ଆଶୀର୍ବାଦ, ବିଦାୟ ଆଗର ଆଶୀର୍ବାଦ, ଯାହା ମୁଁ ପାଇ ନାହିଁ ତା ତୁମେ ପାଅ, ଯେଉଁ ଆନନ୍ଦ ମୁଁ ପରିକଳ୍ପନା କରି ନାହିଁ ତା'ବି ତୁମେ ପାଅ, ଯେଉଁ ଅନ୍ତରୀକ୍ଷକୁ ମୁଁ ଭାବି ବି ପାରି ନାହିଁ ତୁମେ ସେଠି ବିଚରଣ କର ।) ସେହି ଅନ୍ଧାର ଗୋଟାଏ ବିକଟ ବିରାଟ ଲହଡ଼ି ପରି ମାଡ଼ି ମାଡ଼ି ଆସୁଛି । ତା' ଉପରେ ଯେମିତି କଳା-ପାଉଁଶିଆ ଠାଏ ଠାଏ କହରା ମୋଡ଼ି ମୋଡ଼ିକା ବିରାଟ ପ୍ରାଗୈତିହାସିକ ସାପମାନେ ଲେଉଟ ପାଉଟ ହେଉଛନ୍ତି, ପାଖକୁ ପାଖକୁ ଦିଶୁଛନ୍ତି ସେ ସାପମାନେ ବି ଶେଷ ସ୍ତର ନୁହନ୍ତି, ତାଙ୍କ ଉପରେ ନିଆଁର ଲହ ଲହ ଜିଭମାନ, ଦିଗ୍‌ବଳୟର ଏମୁଣ୍ଡୁ ସେମୁଣ୍ଡ, ଆଉ ତା' ଉପରେ ନାଲିଚା କୁହୁଡ଼ିର ପ୍ରକାଣ୍ଡ ପ୍ରକାଣ୍ଡ ଛତୁମାନ ଆକାଶରେ ବୋଇତ ପରି ଭାସୁଛନ୍ତି, ଆକାଶର ବର୍ଣ୍ଣ ତମ୍ବାବର୍ଣ୍ଣ, ସେଠି ପକ୍ଷୀଟିଏ ନାହିଁ । ସେହି ଯେଉଁ ନିଆଁ ଧୂଆଁର ପଟୁଆର ମାଡ଼ି ମାଡ଼ି ଆସୁଛି ସେ ଖାଲି ପ୍ରକୃତିର ଦୃଶ୍ୟ ବିଶେଷ ନୁହେଁ, ତାକୁ ତିଆରି କରିଛି ଅଗଣତି ମଣିଷଙ୍କ ହାତ, ବର୍ଷ ବର୍ଷ ଲାଗି ଲାଗି, କେତେ ରାତିର କେତେ ଦିନର ଅକ୍ଲାନ୍ତ ଚିନ୍ତନ ମନନରେ, ଆଚାର ବିଚାରରେ, କାର୍ଯ୍ୟରେ । ଯେ ମଣିଷ ତୁଣ୍ଡରେ ଶାନ୍ତି ଶାନ୍ତି ରଡ଼ି ରଡ଼ି ମନ ଭିତରେ ଖୋଜିଥିଲା ହିଂସା, ଅଶାନ୍ତି, ମୃତ୍ୟୁ । ତେଣୁ ସେମାନେ ତାକୁ ଗଢ଼ିଛନ୍ତି । ହେଇ ଶୁଭୁଛି ଯେତେ ପ୍ରକାର ବିକଟାଳ କଳରୋଳ, ଯେତେ ଠୋ ଠା ତୁଡ଼ା ଚଦ୍‌ଚଦ୍ ଫଟ୍‌ଫଟ୍ କଟ୍‌କଟ୍ ମଟ୍‌ମଟ୍ ଶବ୍ଦ, ଯେତେ ଗୁଡୁମ୍ ଗୁଡୁମ୍ ଦୁଡୁମ୍ ଦୁଡୁମ୍ ଡାଇ ଡାଇ ଠାଇ ଠାଇ ପେଁ ପେଁ ଝଣ ଝଣ ଶବ୍ଦ, ଆଉ ମୁଖ ରାବ ଧ୍ୱନି ଯେମିତି ରାଜ୍ୟଯାକ ମଣିଷ ପାଗଳ ହୋଇ ବୋବି ଦେଉଛନ୍ତି, କେତେ ମାରମାର ଧରଧର ରଖରଖ ମଲିମଲି ବୋବାଙ୍କ ତା ଭିତରେ ମିଶିଯାଇଛି, ତୁମେ ତା କାହୁଁ କଳ୍ପନା କରିପାରିବ ? ଆଉ ଦିଶୁଛି, ଦୂରରେ ଦୂରରେ, ହଜାର ହଜାର ମଣିଷ, ନାନା ବେଶର, ନାନା ଆୟୁଧ ଧରି, ଏକର ସେକର ଦଉଡୁଛନ୍ତି, ଭାଙ୍ଗୁଛନ୍ତି ଜାଳୁଛନ୍ତି ମାରୁଛନ୍ତି, ହୁଏତ ମରୁଛନ୍ତି, ଆଉ ଦିଶୁଛି ଯାନବାହନମାନ ପାଗଳପରି ଦୌଡୁଛନ୍ତି, ସଡ଼କ ଉପରେ, ମଣିଷ ଗହଳି ଉପରେ, ଯେଣେ ତେଣେ, କେଉଁଟା ଓଲଟୁଛି କେଉଁଟା ଟଳୁଛି କୁଦା ମାରୁଛି କେଉଁଟା ଜଳୁଛି ଆଉ ଜଳିଜଳିକା ଧାଇଁଛି, କେଉଁ ମଟରଟା ଦିଶୁଛି କଦମ୍ବ-ଫୁଲ ପରି କାରଣ ତହିଁରେ

ଜକାଜକି ହୋଇ ଠିଆ ହୋଇଛନ୍ତି ବନ୍ଧୁକଧାରୀ ସୈନ୍ୟମାନେ, କେଉଁଟା ଦିଶୁଛି ଗୋବରୀ ଚଢ଼େଇଗୁଡ଼ିଏ ବସିଥିଲା ପରି କାରଣ ତହିଁରେ ଅଛନ୍ତି ନାଲିପଗଡ଼ିଆ ପୁଲିସମାନେ, ଭାବ ନାହିଁ ସେମାନେ ଠେଙ୍ଗା ଧରନ୍ତି ବୋଲି ତାଙ୍କର ବଳ କମ୍, ବରଂ ସେମାନଙ୍କୁ ସୈନ୍ୟମାନଙ୍କ ସଙ୍ଗେ ତୁଳନା କଲେ ତୁଳନାଟା ହେବ ଚିତାବାଘ ସଙ୍ଗେ କଳିଙ୍ଗୀ ମହାବଳ ବାଘର । ଅର୍ଥାତ୍, ମହାବଳର ପରାକ୍ରମ ଅଧିକ ସତ, କିନ୍ତୁ ତା'ର ବୁଲାଚଲା ଜାଣିହୁଏ, ଆଉ ସେ ଖାଲି ତଳେ ଧାଇଁ ଡେଇଁ ଝାମ୍ପିପାରେ, କିନ୍ତୁ ଚିତାବାଘ ଗଛରେ ଚଢ଼ି ଧରିପାରେ, ପାଣିରେ ପହଁରି ଧରିପାରେ । ଆଉ କେଉଁ ଅନ୍ଧାରି ବନସ୍ତ ଭିତରେ, ଯେଉଁଠି ଜକାଜକି ପଲା ବାନ୍ଧି ଝାଟିମାଟି କାନ୍ଥ ଦେଇ ମଣିଷ ରହନ୍ତି, ଘର ଭିତରେ ଶୋଇଥିବା ପିଲାକୁ ଚିତାବାଘ କାନ୍ଥ କଣା କରି ଉଠେଇ ନେଇଯାଏ । ସେ ପତରଗଳି, ସେ ନିଶାଚର, ତାର ଗତି କ୍ଷିପ୍ର, ଅନେକ ସମୟରେ ଚୁପ୍‌ଚାପ୍ । କିନ୍ତୁ ଆଉ ଚୁପ୍‌ଚାପ୍ କିଛି ପ୍ରୟୋଜନ ଥିଲା ପରି ମନେ ହେଉ ନାହିଁ, ଏଥର ଘର ବାହାର ସମାନ, ମରାମରି ଧରାଧରି ଆଉ ଧ୍ୱଂସ । ଯେମିତି ମଲା ପୂର୍ବରୁ କହନ୍ତି ତା'ର ବୀର୍ଯ୍ୟ ଉଗାଳି ଦିଏ । ଏ ଉନ୍ମାଦ ଧ୍ୱଂସଲୀଳାରେ ସେମିତି ସମସ୍ତେ ନିଜର ଶେଷ ବଳ ଟିକିକ ବି ପୋପାଡ଼ି ଦେଇ ଟଳି ପଡ଼ିବାର ମୁଁ ଦେଖିପାରୁଛି । ଏଇ ଧରା ହୋଇଛି ଦେଖୁଛି ଗୋଟିଏ ସାନ ପିଲାକୁ, ବୟସ ଦଶରୁ ବେଶି ହେବ ନାହିଁ । ହେଇ ଦେଖୁଛି ପଡୁଛି ତା ଉପରେ ଠେଙ୍ଗା ଉପରେ ଠେଙ୍ଗା, କିନ୍ତୁ ତାର ସମୁଦାୟ ଶକ୍ତି ଦେଇ ଗୋଟାଏ ଘାତକର ବେକକୁ ଜାବୁଡ଼ି ଧରି ତା ନାକକୁ କାମୁଡ଼ି ଧରିବାର ଦୃଶ୍ୟ ବି ମୁଁ ଦେଖୁଛି, ଦେଖୁଛି ହେଇ ବେଶୀ ଦୂରରେ ନୁହେଁ, ତା'ପରେ ସେ ପିଲାଟି ମଲା, ହେଇ ତାର ଶବକୁ ଖୁରା ପରି ବୁଟ୍‌ପିନ୍ଧା ଗୋଡ଼ରେ ଲୋକ ଚକଟୁଛନ୍ତି ଦେଖିପାରୁଛି । ଆଉ ସେ ଦୃଶ୍ୟ ବର୍ଣ୍ଣନା, ବର୍ଣ୍ଣନା କରୁଥିଲେ ମୋର କହିଯିବା କଥା ମୁଁ, କହିପାରିବି ନାହିଁ । ତୁମେ ହୁଏତ ଆଶ୍ଚର୍ଯ୍ୟ ହେବ, ଏ ଦୃଶ୍ୟ ମୁଁ ସହି ପାରୁଛି ଆଉ ବଞ୍ଚିଛି କେମିତି ? ଯାହା ତୁମକୁ କହିସାରିଛି– କି କହି ନାଇଁ ବୋଧହୁଏ,-

ଯେ ମଣିଷ ପାଖ ହୁଏ ଧୀରେଧୀରେ, ପାଗ ହେଲା ପରେ ଯେଉଁ ଅବସ୍ଥାକୁ ସେ ଆସେ, ସେଠି ଠିଆ ହୋଇ ତାର ଅତୀତର ଅବସ୍ଥାକୁ ଅନେଇଲେ ଆଖି ଖୋଷି ହୋଇଯିବ । ମଣିଷ ପାଗ ହୁଏ ପାପରେ ଆଉ ପାପ ହୁଏ ପୁଣ୍ୟରେ (ମୁଁ ଯେତେଦୂର ଦେଖିପାରୁଛି ଆମର ଏ ଶତାବ୍ଦୀର ଯଜ୍ଞରେ ଆମେ ପାପ ଆଉ ପୁଣ୍ୟ ଉଭୟକୁ ତାପରେ ଢାଳିଦେଇ ଯିବୁଁ, ତେଣୁ ତୁମେ ଯେ ନୂଆ ଘରସଂସାର କରିବାକୁ ଆସିବ ତୁମେ ତୁମର ନିଜ ଅଭିଧାନ ତିଆରି କରିବ, କରିବାହିଁ ଉଚିତ, ମନେ ରଖିଥିବ, ପୁରୁଣା ଅର୍ଥଯୁକ୍ତ ପୁରୁଣା ଶବ୍ଦକୁ ନୂଆ ପରିସ୍ଥିତିରେ ବ୍ୟବହାର କଲେ ବିଡ଼ମ୍ବନା

ବଢ଼େ । ପାପ ପୁଣ୍ୟର ବିଚାର ଛାଡ଼ିଦିଅ, ହେଇ ଦେଖ ପାଗ ହେବାର ଯୋଡ଼ିଏ ନମୁନା । ଆମେ ଆମ ଯୁଗରେ ନାନା ସତ୍ୟ ଅହିଂସା ମାନବିକ ମର୍ଯ୍ୟାଦା ମୂଲ୍ୟବୋଧ ସମତା ସମାଜତନ୍ତ ଦେଉଳ ଆଉ ଶାସ୍ତ୍ରର ନାଁ ଧଇଲୁ, ନାଁ ଧରି କେତେ ଶପଥ କଲୁଁ, ଆମର ବକ୍ତୃତା ଇସ୍ତାହାର ଆଦିରେ ଜାରିକଲୁଁ ଅଛୁଁଆ ପ୍ରଥା ଦୂର ହେଉ ସେ ଆମ ସମାଜର କଳଂକ । କିନ୍ତୁ ଆମେ ବି ନିଯୁକ୍ତ କରୁଥିଲୁ ପାଇଖାନା ସଫା କରିବା, ମଇଳା କାଢ଼ିବା କାର୍ଯ୍ୟ ପାଇଁ ମେହେନ୍ତର ମେହେନ୍ତାଣୀ । ସେମାନେ ଘୁଅ ପାଖକୁ (ନିଜ ପୁଅର ଘୁଅ ନୁହେଁ) ମୁହଁକୁ ନୁଆଁଇ ଆଣି ସଫା କରନ୍ତି, ଘୁଅରେ ବାଲି ପାଉଁଶ ମିଶାଇ ତାକୁ ଏକାଠି ଫେଣ୍ଟି ତରଳ ବସ୍ତୁକୁ ଅଳ୍ପ କଠିନ କରନ୍ତି, ଘୁଅ ଟୋକେଇ ଉପରେ ପତ୍ର ଢାଙ୍କୁଣି ତଳେ 'ମାଲ' କୂର୍ମପିଠିଆ ହୋଇ ରହିଥାଏ, ଅତି ସ୍ନେହରେ ପିଲାକୁ କାଖେଇ ବାଟ ଚାଲିଲା ପରି ତାକୁ କାଖେଇ କାଖେଇ ସେମାନେ ଯା'ଆସ କରନ୍ତି, କେତେବେଳେ ମୁଣ୍ଡରେ ବୁହନ୍ତି, ଗାଡ଼ିରେ ବୁହା ହେବା ପୂର୍ବରୁ ଯେଉଁ ସ୍ଥାନରେ ସେସବୁ ତଳେ ଗଦା ହୁଏ ସେଠି ଘୁଅର ଦୁନିଆ ଉପରେ ଆଣ୍ଠୁଏ ବଳା ଗଣ୍ଡିଏ କାଦୁଅରେ ଚାଲିଲା ପରି ସେମାନେ ଚାଲବୁଲ କରୁଥାନ୍ତି । କଳ୍ପନା କରିପାରୁଛ ? ଆମେ, ଭଦ୍ରବ୍ୟକ୍ତି ଭଦ୍ରମହିଳାମାନେ, ଆମେହିଁ ସେମାନଙ୍କୁ ଘୁଅରେ ପାଗ କରିସାରିଛୁଁ । ସେମାନେ ପାଗ ହୋଇଛନ୍ତି । ସେମାନଙ୍କ ହାତ ଧୋଇବା ପାଇଁ ପାଣିର ବ୍ୟବସ୍ଥା ନ କଲେ ଚିନ୍ତା ନାହିଁ, କେଉଁ ନୟନ୍‌ଜୋରିରେ ସେ ହାତ ଧୁଅନ୍ତୁ, ଯେଉଁ ଲୁଗା କି ଶାଢ଼ି ପିନ୍ଧି ଘୁଅ କାମ କରି ଆସିଥିଲେ ତାକୁ ନ ପାଲଟି ଭାତ ଖାଇ ବସନ୍ତୁ, କୁଣ୍ଢାକୁଣ୍ଢି ହୁଅନ୍ତୁ, ଆପଣା ଆପଣା ପିଲାଙ୍କୁ କାଖେଇ ଗେଲ କରନ୍ତୁ । ଆମେ ତାଙ୍କୁ ଭୁଲିଯିବା, କାରଣ ଆମେ ଭଦ୍ର, ଆମର ଶୁଦ୍ଧ ଆଚାର,- ଆଖିରେ ଭଲ ଦେଖିବା, କାନରେ ଭଲ ଶୁଣିବା, ନାକରେ ଭଲ ଶୁଂଘିବା, ପାଟିରେ ଭଲ କହିବା ଓ ଭଲ ଖାଇବା, ଯାହା ଭଲ ନୁହେଁ ତା'ପ୍ରତି ଇନ୍ଦ୍ରିୟର ଦ୍ୱାର ରୁଦ୍ଧ କରିଦେବା । ଯେ ଏପରି କରିପାରେ ସେହି ତ ଭଦ୍ର ବୋଲି ଆମର ସଂସ୍କୃତି କହେ । ତା'ର ବପୁ ବଢ଼େ, ମୁହଁରେ ପ୍ରଶାନ୍ତି ଝଲକେ, ଦେହ ବାସେ, ଆମେ କହିବାକୁ ଅଭ୍ୟସ୍ତ ଯେ ସେ ରୁଚିମନ୍ତ ପୁଣି ଶୁଚିମନ୍ତ ପୁଣି ଋଦ୍ଧିମନ୍ତ ।

କେବେ କିଏ ଜଣେ ରାଜା ଥିଲେ ତାଙ୍କ ନାଁ ନିରୋ, ତାଙ୍କ ରାଜଧାନୀ ରୋମ୍ ଯେତେବେଳେ ଜଳୁଥିଲା ସେତେବେଳେ ସେ ବସି ବେହେଲା ବଜାଉଥିଲେ । ଆମେ ତୁଣ୍ଡରେ କଥା କଥାକେ ତାଙ୍କ ଉପଲକ୍ଷ ଦେଉଁ ସେତିକିବେଳେ ଯେତେବେଳେ କେହି ଜଣେ କୌଣସି ସମସ୍ୟା ଲାଗିଲେ ଉପସ୍ଥିତ କର୍ତ୍ତବ୍ୟକୁ ଭୁଲି ଆପଣା ଖିଆଲ କି ବିଳାସରେ ବ୍ୟସ୍ତ ରହିଥାଏ ।

କିନ୍ତୁ ଦାୟିତ୍ୱ ସଂପର୍କରେ ଆମର ଧାରଣା ଓ ପଶ୍ଚିମର ଲୋକଙ୍କ ଧାରଣା (ସେହି ଯେଉଁମାନେ ଗୋରୁ ଖାଆନ୍ତି ଇତ୍ୟାଦି ବୋଲି ଯାହାଙ୍କୁ ଆମେ ଘୃଣା ବି କରୁ) ବୋଧହୁଏ ଟିକିଏ ଭିନ୍ନେ। ସେମାନେ କାଦୁଅକୁ ଓହ୍ଲାଇ କାଦୁଅ ସଫା କରୁ କରୁ କାଦୁଅ ସରସର ହୁଅନ୍ତି, ଆମେ କାଦୁଅକୁ ଏଡ଼ି ଚାଲିଯିବାକୁ ଯଥାସାଧ୍ୟ ଚେଷ୍ଟା କରିଥାଉଁ, କାଦୁଅ ଥାଉ, ଅସନା ଥାଉ, ଆମର ଅତି ନିକଟରେ ଦେହକୁ ଲାଗି ରହିଥାଉ, ‘‘ତେଣିକି ନ ଅନେଇଲେ ତ ହେଲା,’’ ଏଇ ଆମର ସୁନୀତି, ଏପରି କଲେ ଆମେ ସୁବୋଧ ବାଳକ। ସେହି ସମାଲୋଚିତମାନଙ୍କ ଅପେକ୍ଷା ଆମର ଯେ ସହନଶୀଳତା ଅତିମାତ୍ରାରେ ବେଶି ସେକଥା ତୁମ ଭବିଷ୍ୟତ୍‌ର ବଂଶଧରମାନେ ନିଶ୍ଚୟ ସ୍ୱୀକାର କରିବେ, ‘‘ଆମ୍ଭକୁ ପ୍ରଂଶସା କରିବ କି ନିନ୍ଦିବ ସେକଥା ତୁମେ ଜାଣ, କିନ୍ତୁ ଆମର ଏ ଗୁଣ ତୁମେ ନିଶ୍ଚୟ ଚିହ୍ନିବ ବୋଲି ମୋର ବିଶ୍ୱାସ। କାରଣ ଖୋଜୁଛ ? ଆମ ପଛର ଇତିହାସକୁ ଦେଖ। (ଇତିହାସହିଁ ସୃଷ୍ଟି କରେ ଭବିଷ୍ୟତ୍ ପାଇଁ କାରଣ ସତ୍ତା ଓ ପ୍ରବଣତାର ସୁଅ !) ପାହାର ଉପରେ ପାହାର, ପଠାଣ, ମୋଗଲ, ବର୍ଗୀ, ଇଂରେଜ୍। ଖାଲି ସେତିକି ନୁହେଁ, ପରିବାର ଭିତରେ ସ୍ୱେଚ୍ଛାଚାରୀ ମୁରବିମାନେ ମୁରବିୟାଣୀମାନେ, ବାହାରେ ସମାଜପତି, ସାଆନ୍ତେ, ଜମିଦାର, ରଜା, ତା ବାହାରେ କେତେବେଳେ କେଉଁ ସାମୟିକ ସୁବିଧାବାଦୀ ରାଷ୍ଟ୍ର, କେତେବେଳେ କେଉଁ ନାମ, ସେ ଦି'ଦିନିଆ ହେଉ କି ପଚାଶବର୍ଷିଆ ହେଉ। ତୁମେ ଦେଖୁଥିବ (ଯଦି ଏଇ ଯେଉଁ କରାଳ ଧ୍ୱଂସର ପ୍ରଳୟ ଘୋଟି ଆସୁଛି ତା ଦାଉରୁ ଆମର କିଛି ଗ୍ରନ୍ଥ ଆମ 'ସମାଜ'ର କିଛି ଚିହ୍ନ ବର୍ତ୍ତ ତୁମ ବେଳକୁ ବଂଚି ରହିଥିବ ଆମ ବିଷୟରେ ତୁମକୁ କଥା କହିବା ପାଇଁ), - ହଁ, ତୁମେ ଦେଖୁଥିବ ଏଇ ଗୋଲାକାର ପୃଥିବୀରେ ଆମର ଆମେ ହୋଇ ଯେଉଁ ବିଶିଷ୍ଟତା ଓ ଆମର ଯେଉଁ ବଡ଼େଇ ସେ ଏଇଥିପାଇଁ ଯେ ଆମର ବ୍ୟକ୍ତି ସ୍ୱାଧୀନତା ରହିଛି (ମସ୍ତବଡ଼ ବାହାଦୁରି !), ପୃଥିବୀରେ ଅନ୍ୟାନ୍ୟ ରାଷ୍ଟ୍ର ତାକୁ ଲୋପ କରିଦେବାରେ ଲାଗିଛନ୍ତି କିନ୍ତୁ ଆମେ ଠିକ୍ ଅଛୁଁ, ଜଣ ଜଣକେ ନିଜ ନିଜର ସ୍ୱତନ୍ତ୍ର ରୁଚି, ଘର ଘରକେ ଅଲଗା ଅଲଗା 'ହାଣ୍ଡି', 'ପାଗ', 'ବଡ଼ବଡ୍ଡୁଆ'।

କିନ୍ତୁ କିପରି ଯାର ସ୍ୱରୂପ ? ବଡ଼ ସାଧାସିଧା ତା ଜବାବ୍- ଆମେ ଆଖି ନାକ କାନ ବୁଜି ଶିଖିଛୁ। ଭାତ ଥାଳି ପାଖେ ପଡ଼ିରହିଥାଉ ଘୁଅ, ପଡ଼ିଥାଉ ଯେତେ ଅସନା, ସାହିରେ ମାତୁଥାନ୍ତୁ ମଦୁଆ, ବିବସ୍ତ୍ର ହେଉଥାନ୍ତୁ, ଆମ ଚଲା ବାଟରେ ଯେତେ ଦ୍ରୌପଦୀ, ନିଃସହାୟ ହୋଇ ରୋଦନ କରୁଥାନ୍ତୁ, ବଡ଼ ସରଳ ତା'ର ସମାଧାନ- ଆମେ ଦେଖୁନାହୁଁ। ତେବେ ଆମ ବ୍ୟକ୍ତି ସ୍ୱାଧୀନତା ଅତୁଟ ରହେ। ତା'ପରେ ଆମେ ଯେପରି ଭାବୁଁ ଯେପରି ଚଳୁଁ ତା ନାଁ 'ସମନ୍ୱୟ'। (ତୁମେ ଏକଥା ନିଶ୍ଚୟ ସ୍ୱୀକାର କରିବ ଯେ ଶବ୍ଦ

ଭଣ୍ଡାର ଆମର ଅତୁଳନୀୟ ଓ ଆମଠିଁ ଏପରି ଶକ୍ତି ଅଛି ଯହିଁରେ ଆମେ ନୂଆ ନୂଆ ଶବ୍ଦ ଆଖି ପିଛୁଡ଼ାକେ ସୃଷ୍ଟି କରିପାରୁଁ) । ଏଇ 'ସମନ୍ୱୟ' ଭିତରେ ପାପ ଆଉ ପୁଣ୍ୟ, ମନ ଆଉ ଅରୁଆଚାଉଳ କଞ୍ଚା କଦଳୀ, ଗଣିକା ଆଉ ସତୀ, ଭ୍ରଷ୍ଟାଚାରୀ ଅନ୍ଧଶାସକ ଓ ଚଳନ୍ତି ବିଷ୍ଣୁର ଧାରଣା, ଆର୍ତ୍ତ ହାହାକାର ଓ ଅତ୍ୟାଚାରୀର ପ୍ରଶସ୍ତି ସବୁ ଆପେ ଆଉଟାଆଉଟି ହୋଇଯାଏ ।

ହଲିଲା ପାଣିକି ଗୋଡ଼ ବଢ଼ାଇ ନାହୁଁ, ଚାଲିଲା ଶଗଡ଼ରେ ହାତ ପୂରାଇ ନାହୁଁ, କାଦୁଅକୁ ଓହ୍ଲାଇ ନାହୁଁ, ଆମେ ସେହି କଳ୍ପିତ ମାଙ୍କଡ଼ମାନଙ୍କର ମୂର୍ତ୍ତି, ଜଣେ ଆଖିରେ ହାତ ଦେଇଚି, ଜଣେ କାନରେ, ଜଣେ ପାଟିରେ । ତେଣୁ ଆମର ସୁବିଧା ହୋଇଛି । ଦେଶର ଧନ, ଜୀବନ, ମର୍ଯ୍ୟାଦା ସବୁ ବିପନ୍ନ ହେଲା ବେଳେ ଆମେ ଭାବିଛୁଁ ପରକାଳର କଥା, ଯାଉ ଇହକାଳ, ଇହକାଳ ତ ମିଥ୍ୟା, ମାୟା, ପ୍ରବଞ୍ଚନା । ଆଉ ସେହି ଯେଉଁ ଗୋଲକପୁର । ଅଲେଖପାଟଣା, କେଡ଼େ ସୁଖ ସେ ! ବିଧର୍ମୀ ସେଥିରେ ହସ୍ତକ୍ଷେପ କରି ନାହିଁ । ବାହାରେ ମନ୍ଦିର ଭାଙ୍ଗୁ, ମୂର୍ତ୍ତି ଭାଙ୍ଗୁ, ଯଜ୍ଞବେଦୀରେ କେହି ହଗୁମୁତୁ, ଆମର କିଛି ଯାଏ ନାହିଁ କାରଣ ଆମେ ଆଖି ବୁଜିଛୁ । ପେଟରେ ଭୋକ ଜଳୁଛି, ମନରେ ଜଳୁଛି କାମନା, ବାହାରେ ଆମର ପ୍ରଶାନ୍ତିର ଭେକ, ପିଠି ବୁଝୁଛି ପାହାର କେମିତି କାଟେ, ପାଟି ଗାଉଛି କାହାର ଜୟଗାନ । ଆମେ ସବୁ ବିଶିଷ୍ଟ ଭଦ୍ରଲୋକ କାହାରି ଏଥିରେ ସନ୍ଦେହ କରିବାର କାରଣ ନାହିଁ ।

ଭଦ୍ର ସଭାରେ ଭଦ୍ର ହୋଇ ବସି ଫୁଲଚନ୍ଦନ ପକାଇ ଲେଉଟିଲା ପରେ ତେଣିକି କିଏ କଣ କରେ ତା ଭାବିବା ପଚାରିବାର ଅଧିକାର ଆମେ କାହାକୁ ଦେଉଁ ନାହୁଁ । କିଏ ମଦ ଖାଏ (ଏକଥା ପ୍ରକାଶ୍ୟରେ ଆମେ ତାକୁ ନିନ୍ଦା କରୁଥିଲୁଁ, ଆଉ କରୁଁ ନାହିଁ), କେହିବି ଖାଆନ୍ତି ଗୋମାଂସ (ତା ଏପର୍ଯ୍ୟନ୍ତ ପ୍ରକାଶ୍ୟରେ ନିନ୍ଦନୀୟ ଯଦିଚ କେଉଁ କେଉଁ ସିନେମା ପାଖେ କେହି କେହି ଶସ୍ତା ବୋଲି ସେହି ବଡ଼ ମାଂସଖଣ୍ଡର ଭଜା ଖାଇଥାନ୍ତି ବୋଲି କହନ୍ତି), କିଏ ତାର କାମପ୍ରବୃତ୍ତି ମେଣ୍ଟାଇବା ପାଇଁ କବାଟ କିଳି ଆଲୁଅ ନିଭାଇ କେଉଁ ସୁବିଧା ଉପାୟ ଅବଲମ୍ବନ କରେ, କିଏ କରେ ଅଗମ୍ୟଗମନ, କିଏ ଚୋର କିଏ କଳାବଜାରି କିଏ କିଏ ଲାଞ୍ଚ-ଖୋର୍ କିଏ ଜୁଆଡ଼ି । ସେସବୁ କେହି ଅନ୍ୟ କାହାରି ପଚାରି ନାହିଁ । ତାର ସହଜ ଉତ୍ତର ତୁଣ୍ଡକୁ ପଇଟେ ଯେ ଯେତେ ପରସ୍ତ ପୋଷାକ ପିନ୍ଧି ଆମେ ପରସ୍ପରଙ୍କ ଆଗରେ ଠିଆ ହୋଇଥାଉଁ ପଛେ, ସମସ୍ତେ ଜାଣନ୍ତି ସେ ପୋଷାକ ତଳେ କଣ ଅଛି ।

କେବେ କେବେ କେଉଁ ସମ୍ମାନନୀୟ ବ୍ୟକ୍ତିଙ୍କ ଆଗରେ ବିନୟ ଭଗତିରେ ଝାଉଁଳି ପଡ଼ିଲା ପରି ଠିଆ ହୋଇ ତାଙ୍କ ଆଡ଼କୁ ଅନାଇଁ ତାଙ୍କ ସମ୍ବନ୍ଧରେ ଏପରି ବି ମୁଁ

ଭାବିବାକୁ ଚେଷ୍ଟା କରିଛି, ଏଇ ଆକାର, ଏଇ ଲମ୍ବା ଚଉଡ଼ା ମଣିଷ, ପରର ବିଶ୍ୱାସ ଜନ୍ମାଇଲାଭଳି ମୁହଁର ଏ ଦୀପ୍ତି, କାହା ସଙ୍ଗେ ଏକାଠି ବସିଛନ୍ତି ବୁଲିଛନ୍ତି, ପ୍ରାର୍ଥନା କରିଛନ୍ତି, ଆସନ କରିଛନ୍ତି (ତୁମେ ବୋଧହୁଏ ଜାଣି ନାହଁ ଯେ 'ଆମ ଯୁଗରେ' ଶୀର୍ଷାସନରେ ବିଶେଷ ଆଦର ଥିଲା, ବିଶିଷ୍ଟ ଲୋକମାନେ ମୁଣ୍ଡକୁ ତଳକୁ ପୋତି ଗୋଡ଼କୁ ଉପରକୁ ଟେକି କିଛି ସମୟ ରହିପାରିଲେ ତହିଁରେ ମଗଜ ଥଣ୍ଡା ହୁଏ) ଖାଲି ସେତିକି ମନେ ପଡ଼ିଗଲେ ଜାଣିହୁଏ ତାଙ୍କ ଆସନ କେଡ଼େ ଉଚ୍ଚରେ, ତାଙ୍କ ବିଷୟରେ ଶୁଣିଥିବା କଥା ଯଦି ସତ ହୋଇଥିବ ତେବେ ସେସବୁ ପରିସ୍ଥିତିରେ ଏ ରୂପ କିପରି ଦିଶୁଥିବ । ଧର, ଏଇ ବିଶିଷ୍ଟ ବ୍ୟକ୍ତି କବାଟ କିଳି କୌଣସି କଅଁଳ ପିଲାକୁ ଆକ୍ରମଣ କରୁଛନ୍ତି । ଧର ଯେ ପାଗଳ ହେଉଛନ୍ତି । ଧର ଯେ ଅନ୍ୟ ପରିସ୍ଥିତିରେ ଭଞ୍ଜୀୟ ବର୍ଣ୍ଣନାକୁ ରୂପାୟିତ କରୁଛନ୍ତି କେବଳ ନାୟିକା ପରିବର୍ତ୍ତେ ଆଉ କିଏ । ଆଉ ଧର, ସବୁଠି ଜଗୁଆଳି, ଯେ ପରାମର୍ଶ କରୁଛନ୍ତି କେଉଁ ଅନ୍ଧାରି ପିଶାଚମାନଙ୍କ ସଙ୍ଗେ କିପରି କେଉଁ ପୈଶାଚିକତା ବ୍ୟାପିବ ତହିଁରେ ଉଭୟ ପକ୍ଷର ସୁବିଧା ହେବ । କେମିତି ଦିଶୁଥିବ ତାଙ୍କ ମୁହଁ, ଆଖି, ଦେହର ଅନ୍ୟାନ୍ୟ ଅବୟବ ।

ବସ୍ତୁତଃ ଏପରି ଉଦ୍ଭଟ ଚିନ୍ତାକୁ ରୋକି ନ ପାରିବା ମୋ ନିଜର ଗୋଟିଏ ସାଧାରଣ ଚିତ୍ତ ବିକୃତି । ଅନେକ ସମୟରେ ଆଉ କାହା ଆଗରେ ଯୋଡ଼ହସ୍ତ ହୋଇ ଠିଆ ହେଲାବେଳେ ଲାଗିଛି । (ଜୀବନଯାକ ଯୋଡ଼ହସ୍ତ ଖମ୍ବ ହୋଇ ଠିଆ ହୋଇହୋଇ ମୋର ଅଭ୍ୟାସ ହୋଇଯାଇଛି) ମୋର ଗରୁଡ଼ ନାଁ ସାର୍ଥକ ହୋଇଛି । ମୋ ବାପମା କଣ ଆଗରୁ ଜାଣିଥିଲେ ମୋ ଜୀବନର ଇତିବୃତ୍ତ ?

# ଆଲେଖ୍ୟ

ତୋଷାଳି ଖୋଳା ଚାଲିଛି । ତୋଷାଳି କି ନା ଜଣା ନାହିଁ, ସ୍ତର ସ୍ତର ହୋଇ ପୁରୁଣା ସହରମାନଙ୍କ ଅବସ୍ଥିତିର ଚିହ୍ନ ମାଟିତଳୁ ବାହାରୁଛି । ପଚିଶବର୍ଷ ହେଲା ତୋଷାଳିହିଁ ଖୋଜା ଚାଲିଥିଲା, ହୁଏତ ସନ୍ଧାନର ଶେଷ ଏହି ମାଟିତଳେ । କୁନ୍ଦ ଉପରେ ଗୋଟିକିଆ ଖଜୁରିଗଛ । ପ୍ରଧାନ ଐତିହାସିକ ଖନକ ଡକ୍ଟର କେଦାରନାଥ ଖୋଳା ହୋଇଥିବା ତଳର ପାତାଳରେ ଠିଆହୋଇ ସେହି ଖଜୁରିଗଛକୁ ଅନାଇଁ ହାଇ ମାରିଲେ । ମୁଣ୍ଡ ଉପରେ ମୁଣ୍ଡେ ଖରା, ଝାଳ ଦରଦର ବୋହୁଛି । ଖଜୁରିଗଛ ନୂଆ କିଛି ଭାବ ଦେଲାଭଳି ନୁହେଁ । କିନ୍ତୁ ତା' ଉପରେ ଖରାରେ ଧୂଆଁଳିଆ ଆକାଶ । ଭାବ ଆସେ ସେହି ମହାଶୂନ୍ୟରୁ । କେତେଦିନ ଏହି ଖୋଳାଖୋଳି ? ଯୁଗ ଯୁଗ ଲାଗି ଉଇପଲ ପରି ମଣିଷ ଉଇହୁଙ୍କା ଗଢ଼ି ଚାଲିଛି । ଖୋଳି ତାଡ଼ି ଭାଙ୍ଗି କାଟି ତାକୁ ଖିଅକୁ ଖିଅ ଧୂଳିକୁ ଧୂଳି ଯେତେ ବିଶ୍ଳେଷଣ କରି ଦେଖିଲେ କଣ ଦିଶେ ? ସେହି ପୁରୁଣା କଥା - ଜନ୍ମ ବୃଦ୍ଧି କ୍ଷୟ, ଧୂଳିର ଆତ୍ମପରିଣତି ଖୋଜିବାକୁ ଚେଷ୍ଟା, ହାବେଳିର କିଛି ଦୂର ଗତି, ତା'ପରେ ସେହି ଧୂଳିର ଗୁଣ୍ଡା ହୋଇ ଝଡ଼ିପଡ଼ିବାର କାହାଣୀ । ସେହି ପୁରୁଣା କଥା, ବ୍ୟକ୍ତିର, ରାଷ୍ଟ୍ରର ସମଷ୍ଟିଙ୍କର । ସେହି କାହାଣୀର ଶିରାଏ ଶିରାଏ କିଛି ହସ, କିଛି କାନ୍ଦ, କିଛି ଆଶାର ପ୍ରସାରଣ, କିଛି ନିରାଶାର ଆକୁଞ୍ଚନ, ତାହାରି ଘେନି ତାର ଗତି, ଭିତରର, ବାହାରର । ସବୁ ମିଶି ତାର ଜୀବନ, ତା'ପରେ ବିସ୍ମୃତି । ଏଇଥିପାଇଁ ପୃଥିବୀଯାକ ଏତେ ଖୋଳାତଡ଼ା ?

ଡକ୍ଟର କେଦାରନାଥ ପକେଟରୁ ବାହାର କଲେ ଏକ ପ୍ରକାଣ୍ଡ ପାନ ଡିବା, ଖଣ୍ଡେ ମୋଟା ପାନଖିଲ ଗୋଟିଏ ପାନଖିଲ ଧାଡ଼ିର ଭଙ୍ଗା ପାଖରୁ ଉଠେଇନେଲେ, ଏଠୁ ସେଠୁ ନୁହେଁ, ଆପଣା ବ୍ୟବହାରରେ ବି ସେ ଭଲପାଆନ୍ତି ଶୃଙ୍ଖଳା । ପାନ ଉପରେ କସରା ଓଦାକନା ବିଛେଇ ଦେଲେ, ଦମ୍ଭ କରି ପାନଡିବାଟି ବନ୍ଦ କରି ପକେଟ୍‌ରେ ପକାଇଲେ । ମୋଟା ଠେଙ୍ଗାଟି ଦମ୍ଭ କରି ଭୂଇଁରେ ମାଡ଼ି ମାଟି ଅତଡ଼ାରେ କଟା ହୋଇଥିବା ଥାକ ଉପରେ ପଛ ଭରା ଦେଇ ପୁଣି ଚାହିଁ ରହିଲେ ସେହି ଖଜୁରିଗଛ ଆଡ଼କୁ ।

ହୁଁ- ତା'ପରେ ବିସ୍ମୃତିହିଁ ଚରମ, ସେହିଆଡ଼କୁ ଯେତେ ଖୋଳା ତଡ଼ା, ଯେତେ ଧାଁ ଧପଡ଼ । ତେବେ କେଡ଼େ ସତ କେଡ଼େ ବାସ୍ତବ ଆଉ ଚିରନ୍ତନ ପରି ଲାଗେ

ବର୍ତ୍ତମାନର ମୁହୂର୍ତ୍ତଟା ? ଲାଗେ ଏ ସବୁଦିନେ ରହିବ । ଏ ଧାରଣା ନ ଥିଲେ ଇତିହାସରେ ଗତି-ବିନ୍ୟାସ ହୋଇଥାନ୍ତା ବା କିପରି ? ଏହି ମୋହହିଁ ତ ଦୁନିଆକୁ ଚଳାଏ, ନ ହେଲେ, ଐତିହାସିକ ଥାଇ ଅବା କଣ କରନ୍ତା ?

ତାଙ୍କର ନିଘା ପଡ଼ିଗଲା ଦୁଇଜଣ କୁଳି ଗୋଟାଏ ଜାଗାରୁ ତାଡ଼ି ଯେଉଁ ମାଟି ବୁହାଇ ଦେଉଛନ୍ତି ତାହାରି ଉପରେ । ଯୁବକଟି ଯୁବତୀ ମୁଣ୍ଡକୁ ଟୋକେଇ ଟେକି ଦେ ୍ଛି, କଣ ଗୋଟାଏ ଘଟିଛି, ଦୁହେଁ ପାଟିକରି ହସୁଛନ୍ତି । ଡକ୍ଟର କେଦାରନାଥ ଯୁବତୀକୁ ନିରେଖି ଚାହିଁଲେ ବିନା ଚିନ୍ତାରେ । ପରିପୂର୍ଣ୍ଣ ଯୌବନ । ଦେହ ଭିତର ଶିର୍‌ଶିରେଇ ଉଠିଲା । ଇତିହାସର କାଗଜ ଗଣ୍ଡିରା ଭିତରେ ସତେକି ଚୋରା ବସନ୍ତର ପବନ ସୁଲୁକାଏ ଫଡ଼ଫଡ଼ ହୋଇ ଚାଲିଗଲା । କହିଲେ-

''କଣ ତୋ ନାଁ ଲୋ ?''

''ଫୁଲ ।''

''ହଉ ଫୁଲ, ଥୋଇବୁଟି ଟୋକେଇଟି ଦେଖେଁ ।''

ଦେହରେ ଛନ୍ଦର ଢେଉ ଖେଳାଇ ଦି'ହାତ ମୁଣ୍ଡକୁ ଟେକି ପୁଣି ଦି'ହାତ ଲହରେଇ ଦେଇ ଫୁଲ ତାଙ୍କ ପାଦ ପାଖେ ମାଟି ଟୋକେଇଟି ଥୋଇଦେଲା ।

ସତେକି ପଥରରେ ଖୋଳା ସେକାଳର ଛବିଟିଏ, ଡକ୍ଟର କେଦାରନାଥ ହଠାତ୍ ଭାବିଲେ, - ଏ ବି ତୋଷାଳି ତ, ଧର ଯଦି ସମୟ ପଛେଇଯାଏ, ପିନ୍ଧାଲୁଗା ଛଡ଼ା ଆଉ କିଛି ଭିନ୍ନେ ହୁଅନ୍ତା ?

ଯୁବକଟି ପଛ ବୁଲେଇଦେଇ ମାଟି ଖୋଳିବାରେ ଲାଗିଲାଣି ।

ଡକ୍ଟର କେଦାରନାଥ ଟୋକେଇରୁ ମାଟି ଖେଳେଇ ଖେଳେଇ ଦେଖିଲେ ଚିତ୍କାର କଲେ,- ''ଖପରା । ଆରେ ଏ କଣ କରୁଛ ? କହିଥିଲି ପରା ଖପରାଗୁଡ଼ାକ ଫୋପାଡ଼ି ଦବ ନାହିଁ । ଅଲଗା ଗୋଟେଇ ରଖିବ ?''

ଫୁଲ ହସିଲା ।

କେଉଁଟା ବଡ଼, ଫୁଲର ଏ ହସ ନା ସେକାଳର ଖପରା ?

ଦୁହେଁ ଖାପିଗଲେ ଏକାଠି, ଗୃହସ୍ଥଳୀର ସଂକେତ ଆଉ ନାରୀର ହସ । ପ୍ରଧାନ ଖନକଂକ ଛାତି ଭିତର ଚାଉଁ କଲା । କଡ଼ା ଗୁଣ୍ଡିମିଶା ପାନରସ ଢୋକି ଖପରା ଆଡ଼କୁ ଆଖି ନୁଆଁଇ ଦେଲେ ।

କହିଲେ- ''ଫୁଲ ?''

''ଉଁ।'' ତା'ର ସ୍ୱରରେ ଚାପିଲା ହସ।

''ଏ ଖପରାଗୁଡ଼ିକ ବହୁତ ମୂଲ୍ୟବାନ୍, ନେଇ ଯା ପ୍ରଭାତବାବୁଙ୍କୁ ଦେଇ ଆସିବୁ। ଏମିତି ଯେତେ ଖପରା ବାହାରୁଥିବ ସେଗୁଡ଼ା ଫୋପାଡ଼ି ଦେଲେ ଚଳିବ ନାହିଁ, କହିଚି ତ ହଜାରେ ଥର। ଫୋପାଡ଼ିଦେଲେ ଆମେ ଖୋଳୁଚୁ କାହିଁକି ?''

ଫୁଲ ଓଠକାମୁଡ଼ି ହସ ରୋକି ଦେହ ବଂକେଇ ଦେଇ ଚାଲିଗଲା। ସେ ବାଂକ ବୁଲିଲାଯାକେ ପଛରୁ କେଦାରନାଥ ଅନାଇଁରହିଲେ।

ଏ ଏକା ନୁହେଁ, ହସନ୍ତି ସବୁ କୁଲି। କହନ୍ତି କଣ ଏ ଖପରା ଏ ଘସରା ପଇସା ଏ ପଥରରେ ଅଛି ? ସୁନା ରୁପା ନୁହେଁ ମୋତି ମାଣିକ ନୁହେଁ ଖାଲି ଏଇଗୁଡ଼ାକ। କାମ ସରିଲେ ପାଖ ଛାଉଣିରେ ଯେତେବେଳେ ହସ ମଉଜର ଝରଣା ଛୁଟେ ଏ ବିଷୟରେ ପରସ୍ପର ସହିତ ସେମାନେ ହସାହସି ହୁଅନ୍ତି।

ଫୁଲର ପିଠି ପାଖଟା ଧ୍ୟାନ କରୁ କରୁ ହଠାତ୍ ଚେତା ପଶିଗଲା, ଅବଶ୍ୟ ଫୁଲ ଅଦୃଶ୍ୟ ହେଲାର କିଛି ସମୟ ପରେ। ଡକ୍ଟର କେଦାରନାଥ ତେଣୁ ଆପଣା ବିକାର ବିରୋଧରେ ପ୍ରତିବାଦ କଲାପରି ପୁଣି ସିଧା ଉପରକୁ ମୁହଁ ଟେକିଦେଲେ। ତଡ଼ା ହେବା ଜାଗାର କାନ୍ଥ ଉପରେ କିଛି ଦୂର ଛାଡ଼ି ଗୋଲ ହୋଇ ଉଠିଛି ଗୋଟାଏ ଉଞ୍ଚ ଲଣ୍ଡା ଢିପ, ତା' ଉପରେ ଗୋଟାଏ ଡେଙ୍ଗା ଖଜୁରିଗଛ। ଆଉ କିଛି ନାହିଁ।

ଅଳସ ଅବସରର ଫାଙ୍କ ଭର୍ତି କରିବାକୁ ସେ ସେହି ଉପରକୁ ଚାହୁଁ ଚାହୁଁ ଆପଣା ମନକୁ କଳି ଦେଖିବାରେ ମନ ବଳେଇଲେ। ଭାବିଲେ,- କାହିଁକି ହଠାତ୍ ତାଙ୍କର ଏପରି ହେଲା ? କିଏ ସେ ଏ ଫୁଲ ? କଣ ଅବା ତାଠିଁ ବିଶେଷତ୍ୱ ? ହୁଏତ ଖୋଜିଲେ ବୁଝିଲେ ଜଣାଯିବ ଫୁଲ ସମଷ୍ଟିଙ୍କ ପାଇଁ ଫୁଲ, ମୁଣ୍ଡରେ ଖୋଷିବାକୁ, ଶୁଂଘିବାକୁ, ହାରକରି ଗଳାରେ ଝୁଲେଇବାକୁ, ତା'ପରେ ମଉଳିଗଲେ ମକଚିଗଲେ ଦୂରେଇ ଫୋପାଡ଼ି ଦେବାକୁ। ହଠାତ୍ କାହିଁକି ତାକୁ ଆଜି ଦେଖି ମନରେ ନୂଆ ଭାବ ଆସିଲା ?

ଜୀବନର ଅଭିଜ୍ଞତା ଆଉ କିଛି ବାକି ଥିଲା ପରି ଲାଗୁ ନାହିଁ। ବୟସ ଚାଳିଶ। ବିବାହିତ, ଯୋଡ଼ିଏ ସନ୍ତାନ। ବଡ଼ ଝିଅଟିକୁ ଚଉଦ ପୂରିଲା। ଦେଶବିଦେଶ ବୁଲି ମଣିଷଙ୍କୁ କତିକି କତି ଦେଖିବାକୁ ସୁଯୋଗ ମିଳିଛି। ଡକ୍ଟର ଉପାଧି ପାଇବା ପାଇଁ ବିଲାତରେ ଥିଲାବେଳେ କଣ ହୋଇ ନ ଥିଲା ଜୀବନ ! ମୋଟେ ପାଞ୍ଚ ବର୍ଷ ତଳେ। ଭାବୁ ଭାବୁ ମନେ ପଡ଼ିଲା 'ଡୋରା', ଘରବାଲୀର ଝିଅ। ଏତେ ମୁହଁ ଭିତରେ ଡୋରା ମୁହଁ ବେଶୀ ମନେପଡ଼େ। ଛାଡ଼, ବିଲାତରୁ ଫେରିଲା ପରେ ତ ଲାଗୁ ନ

ଥିଲା କେବେ ଯେ ଦେହର ଭୋଗ କରିବା ଆଉ କିଛି ବାକି ଅଛି ? ଯାହାହେଉ, ଛବିରପଣ ଆସୁଛି । ହଠାତ୍ ଏ ଅବେଳାରେ କ୍ଷଣକପାଇଁ ହେଉ ପଛେ କାଳୀ କୋଚଟୀ ଫୁଲର ହାଣ୍ଡିପରି ମୁହଁ କେନ୍ଦୁକାଠ ପରି ଦେହ ତାଙ୍କର ମାର୍ଜିତ ଶିକ୍ଷିତ ମନରେ ପ୍ରଭାବ ପକାଇପାରିଲା କି ପ୍ରକାରେ ? ହଁ, ଦୁର୍ବଳତାହିଁ ତ, ଆପଣାକୁ ଆପେ ଲୁଚେଇବା ପ୍ରୟୋଜନ ନାହିଁ । ପର ତ କେହି ଜାଣୁ ନାହିଁ !

କାହିଁକି ଏପରି ହେଲା ?

ଏ କଣ ପତନ ! ନୁହେଁ ତ ଆଉ କଣ ?

ଖୁରଧାର ଯୁକ୍ତିରେ ଟିକିଟିକି କରି ହାଣିଲେ ବି ମନରୁ ଯାଉ ନାହିଁ ଫୁଲ, କେତେ ଇଚ୍ଛା କେତେ ଚିତ୍ର ମନେପଡୁଛି ।

ଭ୍ରୂଲତା କୁଁଚେଇ ହୋଇ ଆସିଲା ଭାବନାର ଚାପରେ ।

ହଠାତ୍ ଯେମିତି ପ୍ରଶ୍ନର ଉତ୍ତର ଦେଲା ସେହି ଢିପ ଆଉ ସେହି ଖଜୁରିଗଛ । ଉଭୟେ ଯେପରିକି ଦୈହିକ କାମନାର ! ପ୍ରତୀକ, ନାରୀପରି ମାଟି ଢିପ, ପୁରୁଷପରି ଖଜୁରି ଗଛ । ଏହି ଦୁହିଁଙ୍କୁ ଧରି ସୃଷ୍ଟି । ମାଟି ଢିପର ଖଜୁରିଗଛ ପାଇଁ କାମନା ଆଉ ବର୍ତ୍ତମାନର ଡକ୍ଟର କେଦାରନାଥଙ୍କ ପର୍ଯ୍ୟନ୍ତ ସମସ୍ତେ ଏ ପରୀକ୍ଷା ଦେଇଛନ୍ତି, ପରୀକ୍ଷାରେ ଫେଲ୍ ହୋଇଛନ୍ତି । ପୃଥିବୀ ରହିଆସିଛି ଶସ୍ୟଶ୍ୟାମଳା, ଜନ୍ତୁ ବଂଶରକ୍ଷା କରିଛି ।

ଖଜୁରି ଗଛର ମାଟି ଢିପ ପାଇଁ କାମନା ଏ ଯେପରିକି ଅନ୍ତର୍ନିହିତ, ତେଣୁ ଯେତେଥର ଦେଖାଦେଖି ସେତେଥର ପରସ୍ପରପାଇଁ ଉଚ୍ଚାଟପଣ, ଆଉ ସେହି ଉଚ୍ଚାଟପଣକୁ ନିରୋଧି ରଖି ନଈକୁ ହୀରାକୁଦ ବନ୍ଧ ପକାଇ ସେହି ନଈଶକ୍ତିକୁ ଅନ୍ୟ କାର୍ଯ୍ୟରେ ଲଗାଇଲେ ସେଥିରେ ହୁଏ ଶସ୍ୟଶ୍ୟାମଳ କ୍ଷେତ, ବିଜୁଳିଶକ୍ତି, ବିବିଧ ଉତ୍ପାଦନ, ସବୁ । ଏହି ନିରୋଧ ଚେଷ୍ଟାହିଁ ସାଧନାର ମାର୍ଗ, କିନ୍ତୁ ସେ ତପସ୍ୟା କେବଳ ହଳଦିଆ ନୁହେଁ, ମୂଳୋହୁଁ ସେ ଧରିନିଏ ଆପଣା ଭିତରେ କାମନା ଅଛି, କାମନାର କାର୍ଯ୍ୟକାରୀ ଶକ୍ତି ଅଛି । ସନ୍ତାନ ସୃଷ୍ଟି ଛାଡ଼ି ଅନ୍ୟ କିଛି ସୃଷ୍ଟି କରିବାରେ ତାକୁ ଲଗାଇବାକୁ ପଡ଼ିବ, - କେବଳ ଏତିକି ।

ଆପଣା ଯୁକ୍ତିରେ ଆପଣାକୁ ବିସ୍ମିତ ଲାଗିଲା । ଭାବିଲେ- ମହାଦେବଙ୍କୁ ଯଦି କିଏ କହିଥାନ୍ତା ଯେଉଁ ମଦନକୁ ଆପଣ ଦହନ କଲେ ସେହି ମଦନପ୍ରବଣତାହିଁ ଆପଣଙ୍କ ସାଧନାର ପୁଞ୍ଜି ତେବେ କଣ କ୍ରୋଧରେ ତାଙ୍କ ତୃତୀୟ ଆଖିରୁ ନିଆଁ ବାହାରିଥାନ୍ତା ? ଅଓରଂଜେବଙ୍କୁ ଯଦି କିଏ କହିଥାନ୍ତା- କୈଶୋରରେ ଆମ୍ବଗଛ ତଳେ ଯେଉଁ ଝିଅଟିକି ଦେଖି ଆପଣ ପ୍ରେମରେ ପଡ଼ିଥିଲେ ତା'ର ଅକାଳ ମୃତ୍ୟୁ ପରେ

ତାର ସ୍ମୃତିହିଁ ଆପଣଙ୍କ ଜିନ୍ଦାପୀରପଣର ଏକମାତ୍ର ଉଚ୍ଛ୍ୱାସ ତାହେଲେ ସେ କଣ ତାକୁ ସାହ୍ ଦାରାଙ୍କ ଦଶା ଦେଇଥାନ୍ତେ ?

ହୁଏତ ।

କିନ୍ତୁ ସେ ନିଜେ ଐତିହାସିକ ଖନକ, ଅତଏବ ସତ୍ୟରହିଁ ଉପାସକ । ଇତିହାସ କେବଳ କାରଣ ଆଉ ଫଳ ନୁହେଁ, ପ୍ରଧାନ ସେଥିରେ ଆକସ୍ମିକତା । ଧର ଯଦି ଫୁଲ ହିଁ ହୋଇଥାନ୍ତା ତାଙ୍କ ସ୍ତ୍ରୀ ? ଯଦି ପରିସ୍ଥିତି ବଦଳିଯାଆନ୍ତା, ଫୁଲ ସଂଗେ ତାଙ୍କର ଏହିପରି ଭେଟାଭେଟି ହୋଇଥାନ୍ତା ଆଦିମ ପ୍ରସ୍ତର ଯୁଗରେ କେଉଁ ଜଙ୍ଗଲତଳେ, ଯେଉଁଠି କାମନାହିଁ ଦିଗ ବତାଏ ଅନ୍ୟ କିଛି ନୁହେଁ ତେବେ ଫୁଲ ସଙ୍ଗେ ମିଶି ହୋଇଥାନ୍ତା ତ, ପଛେ ବରଂ ପଡୁ ପ୍ରୟୋଜନ ଏହି ନଇଁପଡ଼ି ମାଟି ଖୋଳୁଥିବା ଯୁବକଟି ସହିତ ପ୍ରସ୍ତର ଆୟୁଧ ଧରି ଛେଚାଛେଚି, କଟାକଟି । ଫୁଲର ବେକରେ ହାରରେ ଗୁନ୍ଥି ପିନ୍ଧାଇଥାନ୍ତେ ସେ ଏହି ଯୁବକଟିର କଟାମୁଣ୍ଡ, ଫୁଲର ମୂଲ ବଢ଼ନ୍ତା ।

ଏହି, ଫୁଲ ଫେରିଆସୁଛି ।

ଯୁବକଟି ଚଞ୍ଚଳ ହେଲାଣି, କାମ କରୁ ନାହିଁ ।

''କିରେ ଅଳସୁଆ'', ଖାଲି ମାଣ୍ଡୋଉଚୁ । କିଛି କାମ କରୁନୋଉଁ ଯେ ! ସେତେବେଳୁ କି କାମ କରିଚୁ ? କେତେ ମାଟି ତାଡ଼ିଲୁଣି ? ଠାପୁଆ କାହିଁକା ।''

ଗର୍ଜନ କରି ଉଠିଲେ ଡକ୍ଟର କେଦାରନାଥ । ଆପଣାର କର୍କଶ ପାଟି ଆପଣା କାନକୁ କିପରି ଯେମିତି ବେସୁରା ଶୁଭିଲା । ଖରାପ ଲାଗିଲା ।

କୁଲିଟି ଡରି ଡରି ଚାହିଁଛି । ସେପାଖୁ ଫୁଲ ଆସୁଛି ।

ମୁଣ୍ଡ ଥଣ୍ଡା କରି ଆପଣା ମନକୁ ଖୋଳିବାକୁ ଚେଷ୍ଟା କରି ସେ ନିଷ୍ପତ୍ତି କଲେ,- ''ଏହି ପ୍ରମାଣ ଯେ ମୋ ଭିତରେ ବି ଆଦିମ ପ୍ରସ୍ତର ଯୁଗର ଅସଭ୍ୟ ମନୁଷ୍ୟ ରହିଛି, ଆପଣା ତୁଣ୍ଡରେ ମୁଁ ଖାଲି ଶୁଣୁଛି ତା ସ୍ୱରର ପ୍ରତିଧ୍ୱନି । ତେବେ, ମୋର ମାର୍ଜିତ ଚେତନ ମନ ତ ଅସଭ୍ୟ ନୁହେଁ, ନିଜଠିଁ କାମନାର ସତ୍ତା ସ୍ୱୀକାର କଲେ ବି କାମନାକୁ ବାନ୍ଧି ସଂଯତ କରିବାକୁ ପଡ଼ିବ । ହୁଏତ ଖାଲି ସେତିକି ତଫାତ୍ ମୋ ଭିତରେ ଓ ଏ କୁଲି ଭିତରେ-''

ଫୁଲ ପହଞ୍ଚିଗଲା, କହିଲା ''ଦେ, ମାଟି ବୋଝେଇ କର ।''

କୁଲିର ଜବାବ୍ ନିଜେ ଦେଇ ଡକ୍ଟର କେଦାରନାଥ କହିଲେ ''କାହିଁ ? ମାଟି କାହିଁ ? ତୁ ତ ଚାଲିଗଲୁ, ସେ ଆଉ କାମ କରିପାରିଲା ନାହିଁ । ତା ହାତ ଅଟକିଗଲା । ଏଥର ତୁ ଆସିଗଲୁ । ହେଇ ଦେଖ୍, ତା ହାତ ଚାଲିଲାଣି, ଠିଆ ହେଇଥା ଆଖି ପିଛୁଡ଼ାକେ ତୋ ଟୋକେଇ ଭର୍ତ୍ତି କରିଦେବ । ହାଁ ଭେଣ୍ଡିଆ, ମାର୍ ଜୋର୍‌ରେ-''

ଡକ୍ଟର କେଦାରନାଥ, ସାଧାରଣ ତଳକୁ ଆସି ରହସ୍ୟ ଲଗାଇ ହସିଦେଲେ। ଭାବିଥିଲେ କୁଲି ମନମାଫି କଥା ଶୁଣି କୃତକୃତ୍ୟ ହେବ, ସେ ବି ହସିବ। ସେ ହସିଲା ନାହିଁ। ଫୁଲ ହସିଲା, କହିଲା "ହଁ ସେଇଥିପେଇଁ ହାତ ବନ୍ଦ କରିଥିଲା ନା ? ତା ମନକଥା ତମୁକୁ କହିଥିଲା ?"

କୁଲି ଓଠକାମୁଡ଼ି ମୁଣ୍ଡ ହଲେଇ ଫୁଲକୁ ବାରଣ କଲା, ସେ କହିବାକୁ ଚାହେଁ ଯେ ମୂଲ ଦିଏ କାମରେ ଲଗାଏ ସେ ଟିକିଏ ଉର୍ଦ୍ଧ୍ୱରେ, ତା ସଂଗେ ଏପରି ସମାନ ହୋଇ କଥା କହିବା ଠିକ୍ ନୁହେଁ।

ଡକ୍ଟର କେଦାରନାଥ ଫୁଲର କଥା ପ୍ରୁରୁଷ କୁଲିକୁ ଠେଲିଦେଇ କହିଲେ - "ଶୁଣିଲୁ ତ, ନହିଲେ କାହିଁକି ହାତ ବନ୍ଦ ଥିଲା ?"

ଫୁଲ ମୁରୁକି ମୁରୁକି ହସୁଛି।

କୁଲି ଗମ୍ଭୀର ହୋଇ କହିଲା "ଖୋଳୁଥିଲି ଯେ କଣ ଗୋଟାଏ ଠଣ୍‌କିନା ବାଜିଲା। ଯୁଆଡୁ ଖୋଳିଲି ସିଆଡ଼େ ଠଣ୍, କଣ ଗୋଟାଏ ପୋତା ନୋତା ଜିନିଷ।

"ଏଁ ! କଣ କହିଲୁ !" ଉଭେଇଗଲା ସବୁ ରଙ୍ଗ ରସ, ଏଥର ସେ ପୂରା ଆବିଷ୍କାରକ, ପ୍ରଧାନ ଖନକ ଡକ୍ଟର କେଦାରନାଥ, ମନରେ ଆବିଷ୍କାରକର ଆଶା ଓ ଉତ୍‌ପ୍ରେକ୍ଷା, ଅନେଷ୍ଣା କୁତୂହଳ। "ହଇରେ ଠଣ୍‌କିନା ଚାରିଆଡୁ ବାଜିଲା ? ତେବେ କହିଲୁ ନାଇଁ କାହିଁକି ?"

ତେଣେ ଅନେଇଲାବେଳକୁ ଫୁଲର ଆଖି ଦି'ଟା ପ୍ରୁରୁଷ କୁଲିକୁ ଅନାଇ ଯେପରିକି ରାଗରେ ଜଳୁଛି। ମୁହଁରେ କଠିନ ଭାବ।

ଫୁଲ ବୋଧହୁଏ କହିବାକୁ ଚାହେଁ "କାହିଁକି ତୁ କହିଦେଲୁ ? ଓଲୁଟା। କଥାଟା ଲୁଚେଇ ରଖିପାରିଲୁ ନାହିଁ ? ପଛେ ଆମେ ପୋତା ଧନ ତାଡ଼ି ନେଇଥାନ୍ତେ। ସବୁ ମାଟି କଲୁ ନିର୍ବୁଧିଆପଣରେ ?"। ନୂଆ ନୁହେଁ, ଏପରି ବି ହୋଇଥାଏ, ଅନେକେ ହାତସଫେଇ କରିଦିଅନ୍ତି।

ସରଳ ପ୍ରୁରୁଷ ସଫା ସଫା କହିଯାଉଛି- "କରେଇ କରେଇ ଟିକିଏ ଗହୀରକରି ହାଣିଲି। ଚାରିକଣିଆଁ ଜିନିଷଟାଏ। ଯେମିତିକି ଗୋଟାଏ ଲୁହା ସିନ୍ଦୁକ। ହେଇ ଦେଖନ୍ତୁ।"

ଅଳ୍ପ ମାଟି ଆଡ଼େଇଦେଲା।

ତାର ବିବରଣ ଠିକ୍।

କ୍ୱଚିତ୍ ମିଳେ ଏ ସମ୍ପଦ୍। ହୁଏତ ଏହାରି ଭିତରୁ କୌଣସି ନୂଆ ଐତିହାସିକ ସତ୍ୟର ଉଦ୍‌ଘାଟନ ହେବ। ମନଭିତରେ ଡାକିଲା- ତୋଷାଳିର ଗୁପ୍ତ କଥା କଣ

ଏହାରି ଭିତରେ ଅଛି ? ଉତ୍ତେଜନାରେ ଅଧୀର ହୋଇ ପ୍ରଧାନ ଖନକ ଚିତ୍କାର କଲେ, - ''ଆରେ ଆଉ କୁଲି ଡାକରେ । ଦି'ଜଣ ଆଣ ।''

କୁଲି ଲୋକ ଡାକି ଗଲା ।

ଫୁଲ ଏକୁଟିଆ ଠିଆ ହୋଇରହିଲା । ତା'ର ଶୁଖିଲା ମୁହଁ ଆଖି । ତା'ରି ଆଗରେ ଏ ଜିନିଷଟା ଖୋଲା ହେବ । ପୋତା ଧନ ବାହାରିବ, ନେବେ ବାବୁ । ସେଥିରୁ ସେ ଭାଗ ପାଇବେ ନାହିଁ । ମ୍ଳାନ ମୁହଁରେ ସେହି ଗୋଟିଏ ଆଡ଼କୁ ଚାହିଁରହିଛି । କଥା ନାହିଁ କି ହସ ନାହିଁ ।

ଡକ୍ଟର କେଦାରନାଥ ବି ସେହିଆଡ଼କୁ ଚାହିଁରହିଛନ୍ତି । ଦୃଷ୍ଟିରେ ଗବେଷକର ଅପାର୍ଥିବ ଉତ୍ସାହ ଓ କୁତୂହଳ । ଅତି ତରତର ହୋଇ ଭାବିଯାଉଛନ୍ତି ।

ଚୁପ୍‌ଚାପ୍ ହୋଇ କିଛି ସମୟ ବିତିଲା । ତା'ପରେ ମନେ ପଡ଼ିଲା- ହେଇ ତ ସାମ୍ନାରେ ଫୁଲ ଠିଆ ହୋଇଛି । କିଛି ସମୟତଳର ଆପଣା ମନର ବିକାର ମନେପଡ଼ିଲା, ପୁଣି ମନେପଡ଼ିଲା ସେ ଶିକ୍ଷିତ, ସଭ୍ୟ, ପ୍ରତିଷ୍ଠାବାନ୍ । ହସ ମାଡ଼ିଲା,- ସେ ଡକ୍ଟର କେଦାରନାଥ, ଆଉ ମଜୁରିଆଣୀ ଫୁଲ । ମଝିରେ ଖାଲି କଳ୍ପନା । କିନ୍ତୁ ଫୁଲକୁ ଚାହିଁ ଦେଇ ଆହୁରି ଆଶ୍ଚର୍ଯ୍ୟ ଲାଗିଲା । ଏ ଯେପରିକି ଅନ୍ୟ ଏକ ମୂର୍ତ୍ତି । ଆଗେ ଦେଖିଲାବେଳେ ସେ ଥିଲା ମାୟାର ପ୍ରତୀକ, ଯେପରିକି ଆକର୍ଷଣୀ ରଶ୍ମି ତାହାରିଠୁଁ ଚାରିଆଡ଼କୁ ଛିଞ୍ଚାଡ଼ି ମାରୁଥିଲା, ତାହାରି ତେଜରେ ସେ ହୋଇଥିଲା ଚିରକାଳର ଯୁବତୀ । ବର୍ତ୍ତମାନ ଯେପରିକି ସେ ନିଷ୍ପ୍ରଭ ଜଡ଼ମୂର୍ତ୍ତି, ଧାରଣା ଆଣେ ସଂସାରୀ କ୍ଷତ ଓ କ୍ଷତିର, ଦେଖିଲେ ଦୟା ହୁଏ ।

ଗୋଟାଏ ଦେହରେ ଦୁଇ ଭିନ୍ନ ବ୍ୟକ୍ତିତ୍ୱ, ଅଥଚ ଉଭୟଙ୍କ ନାଁ ଫୁଲ ।

ଫୁଲ-ଭାବନାକୁ ବଳି ପଡ଼ିଥିଲା ଐତିହାସିକ କୁତୂହଳ, କୁଲି ପହଞ୍ଚିଗଲେ, ସଂଗେ ସଂଗେ ତରୁଣ ସହକାରୀ ଗବେଷକ ପ୍ରଭାତବାବୁ । ଫୁଲ ଆଡ଼େଇ ହୋଇ ରହିଲା । ପ୍ରଭାତବାବୁଙ୍କ ଦୁଇହାତ ଧରି ଆନନ୍ଦରେ ଝାଙ୍କିଦେଇ ଡକ୍ଟର କେଦାରନାଥ କହିଲେ ''ବଡ଼ ବିସ୍ମୟକର ପ୍ରଭାତବାବୁ ! ସେକାଳର ଏକ ଲୁହା ସିନ୍ଦୁକ ବୋଧହୁଏ, ଭିତରେ କଣ ଅଛି କେଜାଣି ?''

ପ୍ରଭାତବାବୁ ହସି ଦେଇ କହିଲେ ''ଅନ୍ତତଃ ଇଜିପ୍ଟ୍‌ର ପଦ୍ମ ମଞ୍ଜି ନୁହେଁ ଯେ ଛ' ହଜାର ବର୍ଷ ପରେ ବି ଗଛ ହେବ ।''

କେଦାରନାଥ କହିଲେ, ''କିଏ କହିପାରିବ ? ହୁଏତ ଏହାରି ଭିତରୁହିଁ ସନ୍ଧାନ ମିଳିବ ତୋଷାଳି ସହରର । ଠାସୁକୁମାରି ଏଇ ସ୍ଥାନରେ ହିଁ ଖୋଳାକାର୍ଯ୍ୟ ଆରମ୍ଭ କରେଇଥିଲି ପ୍ରଭାତବାବୁ । ଯେତେ ପ୍ରମାଣ ଦେଲେ ବି ଆଜିକାଲିକା ଅବିଶ୍ୱାସୀ

ଦୁନିଆର ପଣ୍ଡିତମାନେ ଗ୍ରହଣ କରିବାକୁ ରାଜି ହେଉ ନାହାନ୍ତି, ଯେ ଏ ହିଁ ପ୍ରକୃତ ତୋଷାଳି । କୁଢ଼ କୁଢ଼ ଖପରାର କାହାଣୀ, ଅଳଂକାରର ପ୍ରମାଣ, ମୁଦ୍ରାର ପ୍ରମାଣ, ସବୁ ଗଜା ହୋଇ ରହୁଛି ପର୍ବତ ପରି, ଲୋକେ ତଥାପି ପଚାରୁଛନ୍ତି, - ସେ ସବୁତ ହେଲା, କିନ୍ତୁ ଠିକ୍ ଏଇ ଜାଗା ଯେ ତୋଷାଳି ତାର ପ୍ରମାଣ କଣ ? ମତେ କାହିଁକି ଲାଗୁଛି ଏହି ଲୁହା ସିନ୍ଦୁକରେହିଁ ଅଛି ସେ ନାସ୍ତିକମାନଙ୍କ ପାଇଁ ଜବାବ୍ ।''

''କିଏ କହିପାରେ ? ନ ବାହାରିଲେ ହେଲା ଅତୀତ ଯୁଗର କେଉଁ ମୁର୍ଦ୍ଦାରର ହାଡ଼ କି କେଉଁ ବଣିଆର ସୁନା, ଉଭୟେ ଆମ ପାଇଁ ନିରର୍ଥକ ।''

ଡକ୍ଟର୍ କେଦାରନାଥ ଖୁସି ହେଲେ ନାହିଁ, କଟମଟ କରି ସହକାରୀଙ୍କୁ ଅନାଇଁ ରହିଲେ । ଡେଙ୍ଗା ଗୋରା ପାତଳ ନହକା ଚେହେରା, ବୟସ ତିରିଶ ତଳେ, ମୁଣ୍ଡରେ ସାମ୍ନା ପାଖ ଚନ୍ଦା, ଆଖିରେ କାଚର ଅବନ୍ଧା ଚଷମା । ନୂଆ ଫେରିଛନ୍ତି ବିଲାତରୁ, ହାବଭାବରେ ତଥାପି ବିଦେଶର ପାଣି । ଗୋଟାଏ ଅତି ଆଧୁନିକ ଅବିଶ୍ୱାସ ଓ ଅବଜ୍ଞାର ଭାବ ।

ଗମ୍ଭୀର ହୋଇ ଧର୍ମଯାଜକ ପରି ଡକ୍ଟର୍ କେଦାରନାଥ ଭାଷଣ ଦେଲେ,-

''ଆପଣ ଆଧୁନିକମାନଙ୍କର ଏହି ଅବିଶ୍ୱାସମୂଳକ ଧାରଣାହିଁ ମତେ ବଡ଼ ଦୁଃଖ ଦିଏ ପ୍ରଭାତବାବୁ, କ୍ଷମା କରିବେ । ଉତ୍ସାହ ନାହିଁ, ଉଚ୍ଛ୍ୱାସ ନାହିଁ, କେବଳ ଅବିଶ୍ୱାସ । ଅନାସ୍ଥା ତର୍କରେ ବି ଧ୍ୱଂସ, ଧାରଣାରେ ବି ଧ୍ୱଂସପନ୍ଥୀ । ଆପଣଙ୍କଠି ଶିଶୁର ଆନନ୍ଦ ଓ ଚପଳତାହିଁ ମୁଁ ପ୍ରତ୍ୟାଶା କରେଁ, କିନ୍ତୁ ଦେଖେଁ ନିରାଶ ବାର୍ଦ୍ଧକ୍ୟ । ଏଥିରେ ସୃଷ୍ଟି କେତେ ବାଟ ଉନ୍ନତି କରିବ ମୁଁ ଭାବି ଥଳକୂଳ ପାଏ ନାହିଁ । ଜ୍ଞାନ ଥାଇ କଣ ହେବ ଯଦି ନାହିଁ ଉତ୍ସାହ ଓ ଆଶା ?''

ପ୍ରଭାତବାବୁଙ୍କ ବଙ୍କା ହସ ନିଭିଲା ନାହିଁ ଆହୁରି ତେଜି ଉଠିଲା, ଉପରିକଙ୍କୁ ସମ୍ଭ୍ରମ ଜଣାଇଁ ତଥାପି ସ୍ୱାଧୀନ ମତ ବ୍ୟକ୍ତ କରି ସେ କହିଲେ,-

''ଆରଦିଗଟା ଭାବି ଦେଖନ୍ତୁ ସାର୍, ଆମ ପୂର୍ବପୁରୁଷମାନେ ଆଶା ଉପରେ ନିର୍ଭର ନ କରିଥିଲେ ଆମ ପାଇଁ ଏ ନିରାଶା ରହି ନ ଥାନ୍ତା । ଆଶା ଆଉ ଉତ୍ସାହରେ ସେମାନେ ବାରମ୍ବାର ଭ୍ରାନ୍ତିର ସମାଜଶାସ୍ତ୍ର ଗଢ଼ିଗଲେ, ଆଶା ଉତ୍ସାହର ଚୂଡ଼ାନ୍ତ ଘଟିଗଲା ଗୋଟାକ ପରେ ଗୋଟାଏ ମହାଯୁଦ୍ଧରେ, ଆଟମ୍ ବମ୍‌ରେ, ହାଇଡ୍ରୋଜେନ୍ ବମ୍‌ରେ । ଅଭାବ ଅନଟନରେ । ତେଣୁ ଏ ଯୁଗର ମଣିଷ ଅବିଶ୍ୱାସୀ, ସନ୍ଦେହୀ, ହୁଏତ ଏହି ମାର୍ଗ ଧରି ସେ ପ୍ରକୃତ ସତ୍ୟର ସନ୍ଧାନ ପାଇବ ।''

ଡକ୍ଟର କେଦାରନାଥ ଖୁବ୍ ଜୋର୍‌ରେ ମୁଣ୍ଡ ହଲେଇଲେ, କହିଲେ ''ଅସମ୍ଭବ, ଅସମ୍ଭବ । ସତ୍ୟ ସବୁଦିନେ କୁହୁଡ଼ି ଭିତରେ । ସନ୍ଦେହ ଭୟ ଆଉ ଅବିଶ୍ୱାସରେ ତା'ର ପାଖ ପହଞ୍ଚିବା ଅସମ୍ଭବ । ଆଚ୍ଛା ଦେଖାଯାଉ ଯା ଭିତରେ କଣ ଅଛି ।''

"ଦେଖାଯାଉ।" ପ୍ରଭାତବାବୁ କହିଲେ।

ଚଉଖୁଣ୍ଟ ହୋଇ ଲୁହା ବାକ୍ସ। ମୁରୁଚା ଖାଇଯାଇଛି, କିନ୍ତୁ ତା'ର ପାଗ ଏପରି ଯେ ତଥାପି ସେ ମଜବୁତ୍ ଅଛି। ବହୁ କଷ୍ଟରେ ବହୁ ସନ୍ତର୍ପଣରେ ଖୋଲା ହେଲା। ଭିତରୁ ଏକପ୍ରକାର ଅଚିହ୍ନା ବାସ୍ନା ବାହାରୁଛି। ଯେପରି କିଛି ରାସାୟନିକ ଦ୍ରବ୍ୟ, ତା'ର ପରିଚୟ ଜଣା ନାହିଁ। ଭିତରେ କାରୁକାର୍ଯ୍ୟମୟ ଗୋଟିଏ ଗଜଦନ୍ତର ପେଟି। ଆହୁରି ବିସ୍ମୟକର। ଯନ୍ତ୍ର ଲଗାଇ ଖୋଲାଗଲା। ଏଥର ଢାକୁଣି ଉଠିବ। ସମସ୍ତିଙ୍କ ଦୃଷ୍ଟି ସେଇଠି ବିନ୍ଧିଛି। ଢାକୁଣି ଖୋଲା ହେଲା।

ଭିତରେ କେବଳ ତାଳପତ୍ରର ପୋଥିବିଡ଼ାଟିଏ। କଣ ଯେପରିକି ହାଲୁକା ସୁନେଲି ରଙ୍ଗ ବୋଳା ହୋଇଛି ପୃଷ୍ଠାଏ ପୃଷ୍ଠାଏ। ତହିଁରୁ ଏକ ଉତ୍କଟ ସୁବାସ।

ପୋଥି ଅକ୍ଷତ ଅଛି।

ସେଥିରେ ଅତି ପ୍ରାଚୀନ ହରପ୍‌ର ଆଦି ଓଡ଼ିଆ ଅକ୍ଷର।

ପେଟି ବନ୍ଦ କରି ପିଲାପରି କୁଦା ମାରି ଡକ୍ଟର କେଦାରନାଥ ହସିଉଠିଲେ, କହିଲେ "ଦେଖିଲେ ପ୍ରଭାତବାବୁ, ଯାହା ମୁଁ କହୁଥିଲି। ମୁଁ ଗୁଣିଆଁ ନୁହେଁ, ଗଣକ ନୁହେଁ, ତଥାପି ମୋର ଅନ୍ତର ଭିତରୁ ଯେଉଁ ବିଶ୍ୱାସ ବାହାରୁଥିଲା ତାହାହିଁ ଦେଖିଲେ ସମସ୍ତେ ଆଖି ଆଗରେ।"

"କିଏ ଜାଣିଚି କଣ ଅଛି ଏ ପୋଥିରେ ?"

"ଥିବ, ନିଶ୍ଚୟ ଥିବ, ଇତିହାସ ରାଜ୍ୟରେ ଏ ବିପ୍ଳବ ଆଣିଦେବ।"

ଡକ୍ଟର କେଦାରନାଥ ପେଟିଟି ଧରି ସିଧା ଚାଲିଲେ ଗବେଷଣାଗାରକୁ।

॥ ଦୁଇ ॥

ଓଡ଼ିଆ ଗଦ୍ୟରେ ଲେଖା।

କେତେ ପୁରୁଣା ?

କହି ହେଉ ନାହିଁ। ଅତି ବିଚିତ୍ର ଏ ପଦାର୍ଥ। ଏହା ତୁଳନାରେ ଚୋଡ଼ଗଙ୍ଗ ଦେବଙ୍କ ମାଦଳାପାଞ୍ଜି ଲାଗୁଛି ଅତି ଆଧୁନିକ, ଯେପରିକି ପଣଅଜାଙ୍କ ପାଖରେ ପଣନାତି। ଭାଷା ଆଡୁ ଦେଖିଲେ ପ୍ରାକୃତ ଓଡ଼ିଆକୁ ପାଣିପାଟିବା ବେଳର କିଛି ପରେ ଏ ଲେଖା, ପାଲୀକୁ ପାଖ, ମୈଥିଳୀଠୁ ଦୂର, ଅଥଚ କଞ୍ଚା ଓଡ଼ିଆର ସବୁ ନିଦାନ ମଞ୍ଜ ଏଥିରେ ଅଛି। ଫୋନ୍ ମାର୍ଗରେ ଡକ୍ଟର୍ କେଦାରନାଥ ଦେଶର ବିରାଟ ଭାଷାତତ୍ତ୍ୱବିଦ୍ ଅତିବୃଦ୍ଧ ଡକ୍ଟର ରମାବଲ୍ଲଭ ଓ ବୃଦ୍ଧ ଡକ୍ଟର୍ କୃପାକର ଏ ମହାପଣ୍ଡିତ ଦୁହିଁଙ୍କୁ ସ୍ମରଣ କଲେ।

ରେଳପଥରେ ଦୁଇ ଘଣ୍ଟାର ରାସ୍ତା, ଅଥଚ ଡକ୍ଟର ରମାବଲ୍ଲଭ ଅଗାଧୁଆ ଉଠି ଆସିଲେ ପୁରୁଣା ଧଡ଼ ଧଡ଼ ପକ୍ଷିରାଜଘୋଡ଼ା ଫୋଡ୍ ଗାଡ଼ି ଚଢ଼ି । ଉଦ୍‌ବିଗ୍ନ ହୋଇ କେଦାରନାଥ ପଦାଏ ପଦାଏ ଟହଲୁଥାନ୍ତି, ବଡ଼ ଚିନ୍ତିତ, ଅକ୍ଷର ଚିହ୍ନା ଚିହ୍ନା ଲାଗୁଛି, ଅଥଚ ଭିତରକୁ ପଶି ହେଉ ନାହିଁ କାହିଁକି ? ଏ କି ମାୟା ? ଫୋଡ୍‌ଗାଡ଼ି ଘଡ଼ ଘଡ଼ ହୋଇ ନିଃଶବ୍ଦ ହେଲା, ଯେପରିକି ଗୋଟିଏ କ୍ଳିଷ୍ଟ ପ୍ରାଣ ମୁକ୍ତି ପାଇଲା ।

ସାମ୍ନାରେ ଗୁରୁମାନଙ୍କ ଗୁରୁ ଡକ୍ଟର ରମାବଲ୍ଲଭ, ଜରାଜୀର୍ଣ୍ଣ, ଚିରଦିନ ସେ ଶୂଳରୋଗୀ, ତେଣୁ ଯାତନାର ମୁଖବିକୃତି ମୁଖମଣ୍ଡଳର ସାଧାରଣ ଭାବ ହିଁ ହୋଇ ରହିଛି । କ୍ଷୀଣ ଦୁର୍ବଳ ଦୀର୍ଘ ଦେହ ଧରି ତଥାପି ସେ ମହାଯୋଦ୍ଧା । ରୋଗ ବିରୋଧରେ ଅନାସ୍ଥା ବିରୋଧରେ କ୍ଷୁଦ୍ରମନର ସାଂସାରିକ ଚକ୍ରାନ୍ତ ବିରୋଧରେ ଆଜୀବନ ଯୁଦ୍ଧ କରି ଅସମ୍ଭବ ଅଧ୍ୟବସାୟ ପ୍ରୟୋଗ କରି ସାହିତ୍ୟକୁ ବିସ୍ମୃତିର ଅନ୍ଧକାରରୁ ଉଦ୍ଧାର କରି ପାରିଛନ୍ତି । ଡକ୍ଟର କେଦାରନାଥ ଭାଙ୍ଗିପଡ଼ି ଓଳଗି ହେଲେ । ଡକ୍ଟର ରମାବଲ୍ଲଭ ତାଙ୍କୁ କୁଣ୍ଢେଇଧରି କାନ୍ଦି ପକାଇ କହିଲେ ।

''ବାପ, ବାପରେ, ଏଇଥିପାଇଁ ଦଇବ ମତେ ଏତେ ଯାତନା ଦେଇ ଏ ଅଶୀ ବରଷଯାକେ ବଞ୍ଚେଇ ରଖିଥିଲାକିରେ, ପ୍ରାଚୀନତମ ଓଡ଼ିଆ ଗଦ୍ୟପୋଥି ଆଖିରେ ଦେଖିବି ବୋଲି । ଆହା, ଆଉ ଆୟୁଷ ଥାଆନ୍ତାକି, ବଳ ଥାଆନ୍ତାକି, ତା' ଉପରେ ବସି ଗବେଷଣା କରନ୍ତି । ସୁଯୋଗ୍ୟ ଛାତ୍ର ମୋର, ଆଜି ତତେ ଦେଖି ମତେ ବୈକୁଣ୍ଠରେ ବସିଲା ପରି ଲାଗୁଛି । ତୋନି ହାତରେ ଛାଡ଼ିଗଲିରେ ବାପ ଏ ଜାତିର ସାହିତ୍ୟର ଇଜ୍ଜତ୍ । ତୁ ଖୋଳିବୁ, ତୁ ତାଡ଼ିବୁ, ତୁ ମୃଣି ପ୍ରକାଶ କରିବୁ । କାହାରିକି ଅପେକ୍ଷା ରଖିବୁ ନାଇଁରେ ବାପ, ଖଣ୍ଡିଆକୁ ବିଶ୍ୱାସ ନାଇଁ, ବଂଶନାଶ ବେଳେ ଖାଲି ଘୋଡ଼ାମୁହାଁ ପୁଅ ଜନ୍ମ ହୁଅନ୍ତି ।''

ଅତି ଗଦ୍‌ଗଦ ଅତିବୃଦ୍ଧ ରମାବଲ୍ଲଭଙ୍କ ସଙ୍ଗେ କୁଣ୍ଢାକୁଣ୍ଢି ହେବା ଅବସ୍ଥାରେ ଉଭୟେ ଗବେଷଣାଗୃହ ଭିତରକୁ ପଶିଗଲେ । ଉଜ୍ଜ୍ୱଳ ବିଜୁଳି ଆଲୁଅ ତଳେ ପୋଥିଖଣ୍ଡିକ ଟେବୁଲ୍ ମେଜିଆ ଉପରେ ଥୁଆ ହୋଇଛି । ଅକ୍ଷରର ରୂପ ଅତି ସ୍ପଷ୍ଟ କରି ଭାବ ଉଦ୍ଧାର କରିବାକୁ ସାହାଯ୍ୟ କରିବା ସକାଶେ ନାନା ଯନ୍ତ୍ରପାତି ସଜା ହୋଇ ଥୁଆହୋଇଛି । ଡକ୍ଟର ରମାବଲ୍ଲଭଙ୍କ ଆଖି ଅସ୍ୱାଭାବିକ ଭାବେ ଜଳିଉଠିଲା, ସତେ ଯେପରିକି ଶିକାରକୁ ଦେଖି ଶିକାରୀର ଆଖି । କାନ୍ଥଯାକ ଆବିଷ୍କାର ସମ୍ପର୍କୀୟ ଚିତ୍ରରେ ସଜା ହୋଇଛି । କ୍ଷୀଣ ଦୃଷ୍ଟିକୁ ସୁନେଲି ପୁଟ ବୋଳା କ୍ଷୀଣ ଅକ୍ଷର ଉପରେ ଝୁଲାଇ ରଖି ମୁହଁକୁ ଏପାଖ ସେପାଖ ବୁଲାଇଲା ବେଳେ ଡକ୍ଟର୍ କେଦାରନାଥ କହିଲେ ''କଷ୍ଟ କରିବା ପ୍ରୟୋଜନ ନାହିଁ ସାର୍, ଯନ୍ତ୍ର ସାହାଯ୍ୟରେ ଏ ସୁନେଲି ପୁଟ

ଭେଦ କରି ଅକ୍ଷରକୁ ପୃଷ୍ଠ ଶରୀରରେ ଅତି ସହଜରେ ଦେଖିହେବ, ଠିକ୍ ଠିକ୍ ଚିହ୍ନିବାର ଭାର ଆପଣଙ୍କ ଉପରେ ।'' ସ୍ୱିଚ୍ ଟିପିଲେ, ଗୋଟିଏ ଛୋଟିଆ ଯନ୍ତ୍ର ଭିତରେ ଉଜ୍ଜ୍ୱଳ ନେଳି ଆଲୁଅ ଜଳିଉଠିଲା । ପୋଥିର ଗୋଟିଏ ପତ୍ର ଟେବୁଲ୍‌ରେ ପାରିଦେଇ ତାହା ଉପରେ ବୁନ୍ଦାଏ ରାସାୟନିକ ଦ୍ରବ୍ୟ ପକାଇ ଗୋଟିଏ କନାରେ ପୋଛିଦେଲେ, ତାହା ଉପରେ ଢାଳିଲେ ନେଳି ଆଲୁଅ, ଆଉ ଗୋଟିଏ ଯନ୍ତ୍ର ରମାବଲ୍ଲଭଙ୍କ ଆଖି ଆଗରେ ଧରି କହିଲେ, ''ସାର୍, ଏହି ନାଡ଼ରୁ ଧରି ଏହାରି ଭିତରୁ ଅନାଇ ପଢ଼ନ୍ତୁ ।''

ଡକ୍ଟର ରମାବଲ୍ଲଭ ମୁହୂର୍ତ୍ତେ ଅନାଇଁ ଦେଇ ବିକଳ ହୋଇ ମୁହଁ ବୁଲାଇ ଚିତ୍କାର କଲେ- ''ବାପ, ଏ କି ଯନ୍ତ୍ର ଦେଖାଇଲୁରେ, ଅକ୍ଷରସବୁ କିଏ ଯେପରି ତୂଳି ବୁଲାଇ ବଡ଼ ବଡ଼ କରି ଆଙ୍କି ଥୋଇଚି । ଏପରି ଯନ୍ତ୍ର ବି ଥିଲା ଏ ପୃଥିବୀରେ ! ଆଉ ମୋ ଜୀବନଯାକ ବିତିଲା ଖାଲି - ଆଖିରେ ପୁରୁଣା ପୋଥି ପଢ଼ି ପଢ଼ି ଖିଚିଖିଚି ହେଇ ! ଖାଲି କଣ ଲେଖାହେଇଚି ପଢ଼ିବାକୁ କେତେ କଷ୍ଟ । କେତେ କସରତ୍ ! କେତେବେଳ ମୋର ନଷ୍ଟ ହେଇଚି ଖାଲି ପୋଥି ପଢ଼ାରେ । ଆଉ ଥାଆନ୍ତା ଯଦି ମୋଠିଁ ଏମିତି ଗୋଟେ ଯନ୍ତ୍ର ! ଆଃ ଆହୁରି କେତେ କାମ ମୁଁ ନ କରି ଥାଆନ୍ତିରେ ।'' କାନ୍ଦୁଣିମାନ୍ଦୁଣି ହୋଇ କହିଲେ, ''ଯାହା କରିବି ସବୁ ଆପଣା ହାତରେ, ଆପେ ପଢ଼ିବି, ଆପେ ବୁଣିବି, ଆପେ ବେଉଷଣ, ଆପେ ଅମଳ । ଫେର୍ ଆପେ କୁଟାକୁଟି କରି ଆପଣା ହାତରେ ରୋଷେଇ କରିକି ପରଷିବିରେ ବାପ, କାହାରି ସାହାଯ୍ୟ ନାଇଁ । ସେ ରନ୍ଧାବି ଏ ଓଡ଼ିଶା ଦେଶରେ ଲୋକଙ୍କ ମନକୁ ଆସିବ ନାହିଁ, ତାଙ୍କର ସବୁ ଆଜିକାଲିକା ଚୁଟୁଚୁଟିକିଆ ଚପ କଟଲେଟଖିଆ ପାଟି । ଆପେ ଅକ୍ଷର ମିଳେଇ ମିଳେଇ ପଢ଼ିବି, ଆପେ ତାକୁ ଉତାରିବି । ପଣ୍ଡିତ ଲଗେଇଲେ ବି ନିଜେ ଟିକିନିଖି କରି ନ ଦେଖିଲେ କିଛି ହବ ନାଇଁ । ଆଉ ଯୋଉ ପଣ୍ଡିତ ତ, ଖାଲି ଭୁଷ୍‌ପଣ୍ଡିତ, ସତେକି ସମସ୍ତେ ସିଦ୍ଧ ଭୁଷୁଣ୍ଡୁ, ମୂଳ ପୋଥିରେ ଯାହା ଆପଣା କୁଣ୍ଢକୁ ନ ପାଇଲା କାଟିକି ପ୍ରାଣ ଉଡ଼େଇଲେ ତାର ଶୁଦ୍ଧ କରୁଚନ୍ତି ବୋଲି ଭାବି ସାରଳା ପୋଥିକିବି ମାଙ୍କଡ଼ କରି ଥୋଇଦେଲେ । ଯାହା କଳିତ କଲି, ତାକୁ ଛପେଇଦିଅ ବୋଲି ନେହୁରା ହେବାକୁ ଯା ଘର ତା ଘର ଦଉଡ଼ି ଦଉଡ଼ି ହଳକା ହଳ ଚଟି ଛିଣ୍ଡିଗଲା ।''

ପୁଣି ବିସ୍ମୟରେ ଚାହିଁ ରହିଲେ ସେ ଯନ୍ତ୍ରଆଡ଼କୁ ।

ଡକ୍ଟର କେଦାରନାଥ ସ୍ମରଣ ପକାଇଲେ, ଦିନେ ଏହିପରି ଭାବ ମନରେ ଆସିଥିଲା ମହାତ୍ମା ସାମନ୍ତ ଚନ୍ଦ୍ରଶେଖରଙ୍କର, ଯେତେବେଳେ ସେ ଟେଲିସ୍କୋପ୍ ଯନ୍ତ୍ରକୁ ଦେଖି ଭାବୁଥିଲେ ବାଉଁଶନଳରେ ତାରାର ସ୍ଥାନ ନିର୍ଣ୍ଣୟ କରିଥିବା ଆପଣା

କଠୋର ସାଧନାର କଥା । ସେ ବି ଭାବିଥିଲେ- ''ପାଇଥାନ୍ତି ଭଲା ଏପରି ଗୋଟିଏ ଯନ୍ତ୍ରର ସାହାଯ୍ୟ ! କେତେ କାମ ମୋର ନ ହୋଇଥାନ୍ତାଟି !''

କହିଲେ- ''ଖାଲି ଏ ଯନ୍ତ୍ର ନୁହେଁ ସାର୍, ଆହୁରି ଅନେକ ଅଛି । ହେଇ ଦେଖନ୍ତୁ ଡିକ୍ଟାଫୋନ୍ ସଜାହୋଇ ରହିଛି । ଇଚ୍ଛା କଲେ ଚଳେଇ ଦେଇ ହେବ । ଆପଣ କହିଲା ମାତ୍ରେ ତା ମନକୁ ରେକର୍ଡ ହୋଇଯିବ । ଆଉ ଯଦି ସଂଗେ ସଂଗେ ଛପାଇନେବାକୁ ଚାହାନ୍ତି ତେବେ ଏଇ ଯନ୍ତ୍ର ଅଛି, ଅବଶ୍ୟ ଇଂରାଜୀରେ ଗାଇଗଲେ ସେ ସାଙ୍ଗେ ସାଙ୍ଗେ ଛାପିଦେବ । ମଝିରେ ଆଉ ଉତାରିବା ଲୋକ ପ୍ରୟୋଜନ ନାହିଁ, ଭୁଲ୍ ପାଇଁ ଏଥିରେ ସ୍ଥାନ ନାହିଁ, ନିର୍ଭୁଲ୍ ।''

ଡକ୍ଟର୍ ରମାବଲ୍ଲଭ ଦୁଇହାତରେ ମୁଣ୍ଡକୁ ଜାପିଧରି ମୁହଁ ନୁଆଁଇ ତୁନି ହୋଇ ବସି ରହିଲେ । ଖସିପଡ଼ିଲା ପରି ତାଙ୍କ ତୁଣ୍ଡରୁ ଭାଷା ଶୁଭୁଥାଏ, ''ବୃଥା, ବୃଥା, ବୃଥା, ଜୀବନଟା ବୃଥା ଗଲା, ଖାଲି ଗଧ ଖଟଣି । ନା ନା, ମୋକ୍ଷ ଚାହେଁ ନାହିଁ ଭଗବାନ୍, ଚାହେଁ ଶୀଘ୍ର ମରି ପୁଣି ଆଉଥରେ ଏ ଓଡ଼ିଶା ଦେଶରେ ଜନ୍ମ ହେବାକୁ ।

ସେତେବେଳେ ଏହିସବୁ ବୈଜ୍ଞାନିକ ଯନ୍ତ୍ରର ସାହାଯ୍ୟ ନେଇ ପୁଣି ଲାଗିଯିବି ଏଇ ମୋର ଓଡ଼ିଆ ଭାଷାର ଚର୍ଚ୍ଚା କରିବାରେ, କାଳେ କିଛି କରିପାରିବି, କାଳେ କିଛି ହେବ !''

ଡକ୍ଟର୍ କେଦାରନାଥ ଜ୍ଞାନର ପାହାଡ଼ ସେହି ଡକ୍ଟର ରମାବଲ୍ଲଭଙ୍କ ଭାବବିହ୍ୱଳ ଅବସ୍ଥାକୁ ଦେଖି ତାଟଙ୍କା ହେଲେ । ଚତୁର୍ଥାବସ୍ଥା ନୁହେଁ, ତା'ପରେ ଆହୁରି ଯଦି କିଛି ଥାଏ, ପଞ୍ଚମ ଅବସ୍ଥା, ବାର୍ଦ୍ଧକ୍ୟରେ ଶିଶୁପଣ, ଅଥଚ କି ଜ୍ଞାନୀ !

କହିଲେ ''ସାର୍, ଆପଣ ମହାନ୍, ଆପଣ ଜ୍ଞାନର ସମୁଦ୍ର । ଯାହା ସ୍କିଟ୍ସ୍ ନ କରିପାରିଥିଲେ ଇଂରେଜୀ ସାହିତ୍ୟରେ, ଯାହା ମ୍ୟାକ୍ସମୁଲର୍ ନ କରିଥିଲେ, ତାଠୁ ଆପଣ ବେଶୀ କଲେ ଓଡ଼ିଆ ଭାଷା ପାଇଁ । କାହାର ଜୀବନ ଧନ୍ୟ ଏପରି ?''

''ନା ନା,'' ଦୃଢ଼ ଭାବେ ଡକ୍ଟର ରମାବଲ୍ଲଭ କହିଲେ, ''ମୁଁ କିଛି କରି ନାହିଁରେ ବାପ, କିଛି କରି ନାହିଁ । କରିବାକୁ ସୁଯୋଗ ପାଇଲି କୋଉଠି ? ସୁବିଧା ଦେଲା କିଏ ? ଜୀବନ ଅସ୍ତ ହେଲା, ଜୀବନ ବୃଥା ଗଲା, କିଛି କଲି ନାଇଁ । କାଠି କୁଟା ଏକାଠି ଗୋଟେଇଥିଲି, ବସାବାନ୍ଧି ପାରିଲି ନାହିଁ । ପଛେ ତୁ ବି ମତେ ଗାଳିଦବୁ, କହିବୁ କିଛି କଲା ନାଇଁ ବୁଢ଼ାଟା । ତୁ ମତେ ଗାଳି ଦେ, ସେଇ ଭଲ, ପ୍ରଶଂସା କରନା, ମୁଁଟା ଥାର୍ଡ କ୍ଲାସ୍ ଲାଷ୍ଟ, ଏକାଡିମିରିର ବଜାରି ପିଲା ଥିଲି, ଅଣ୍ଡା ଭିଡ଼ିଲି ପଛେ ଯେ କିଛି ହେଲା ନାଇଁ !''

ମହାପୁରୁଷଙ୍କ ନଗଣ୍ୟଭାବ ଦେଖି ଡକ୍ଟର କେଦାରନାଥ ନିଜକୁ ମଣୁଥିଲେ ପତଙ୍ଗଠୁ ଆହୁରି ନିଃସହାୟ । ଘରଯାକ ଏକର ସେକର ହୋଇ ବୁଲୁଥିଲେ । କଣ କରିବେ କଣ କହିବେ କିଛି ଠିକ୍ କରିପାରୁ ନ ଥିଲେ । ଘର କବାଟ ଖୋଲା ଥିଲା । ହଠାତ୍ ପଦାକୁ ଅନାଇ ‹ଦେଲାବେଳକୁ ଦେଖିଲେ ଜଣେ ସ୍ତ୍ରୀଲୋକ ଠିଆ ହୋଇଛି ।

ସେ ଫୁଲ ।

ଲୋଭ ଓ ନିରାଶାରେ ଝାଉଁଳି ପଡ଼ି ସେନ୍ତେରା ହୋଇଯାଇଥିବା ପେଟ ଚିନ୍ତା-ସର୍ବସ୍ୱ ମଜୁରିଆଣୀ ଫୁଲ ନୁହେଁ ।

ସେହି ସେ, ଶିକାରୀ ନାରୀ, ବିଜୟିନୀ ଯୁବତୀ, ଆଜି ଦୁର୍ବଳ ମୁହୂର୍ତ୍ତରେ ଯେ ତାଙ୍କ ମନକୁ ଆଚ୍ଛନ୍ନ କରି ରଖିଥିଲା ଅନ୍ତତଃ ଦଶମିନିଟ୍ ।

କାମନାର ସେହି ରଙ୍ଗ ସେହି ତେଜ, ଯେ ମନକନ୍ଦରାରେ ବୁହାଏ ଯୌବନର ଜୁଆର ।

ଚିରଯୁବତୀ ଯେପରିକି ଚିରପୁରୁଷକୁ ଅକୁହା ମନ୍ତ୍ରରେ ଉଦ୍‌ବୋଧନ କରି ଠିଆ କରାଏ, କେଳା ସାପ ଖେଳାଇଲା ପରି, ଅବଲୀଳାରେ ମୁଦ୍ରା ଦେଖାଇ କହେ 'ଦଂଶନ କର' ।

ଡକ୍ଟର୍ କେଦାରନାଥ ପଦାକୁ ଚାହିଁ ହସିଦେଲେ ।

ଫୁଲବି ହସିଲା ।

ଘର ଭିତରର ଆଚ୍ଛନ୍ନ ଅବସ୍ଥାରୁ ହଠାତ୍ ଯେପରି କେଦାରନାଥ ମୁ‍ ପାଇ ସ୍ପର୍ଶ ପାଇଲେ ସଜ ପବନର, ଚିନ୍ତା ସହଜ ହେଲା । ଭାବିଲେ, ପୋଥି ଭିତରେ ଆଉ ଯାହା ଥାଉ ଅନ୍ତତଃ ଏ ଫୁଲ ନ ଥିବ, ନ ଥିବ ସଂସାରୀ ପଶୁଲୀଳା ।

ଏ ପ୍ରତିବାଦ-ପ୍ରକାଶରେ ବିଚାର ଶକ୍ତି ଫେରିଆସିଲା । ଦେଖିଲେ ଡକ୍ଟର୍ ରମାବଲ୍ଲଭ ସେହିପରି ମୁଣ୍ଡରେ ହାତ ଦେଇ ସ୍ୱପ୍ନ ଦେଖୁଛନ୍ତି । ସବୁ ଯେପରି ଲାଗିଲା ଏକ ପ୍ରକାଣ୍ଡ ଥଟ୍ଟା ପରି, ଲାଗିଲା ଏହିପରି ଥଟ୍ଟା କରି ହସ ଉପୁଜାଇବାକୁ ବିଧାତା ସଂସାରରେ ରଖିଛି ଏ ଖଞ୍ଜାଖଞ୍ଜି, ଯେ ବାହାରେ ଫୁଲ, ଭିତରେ ପ୍ରାଚୀନ ପୋଥି, କରକେ ଆପଣା ଜୀବନ ଚିନ୍ତାରେ ନିମଜ୍ଜିତ ଡକ୍ଟର ରମାବଲ୍ଲଭ, ମଝିରେ ସେ ନିଜେ, ନିଜଠିଁ ଏତେ ରାଗିଣୀରେ ଏତେ ବାଦ୍ୟର ସମାବେଶ ।

ଅଗାଧୁଆ ବସିଲାଠୁଁ ଉଠି ଧାଇଁ ଆସିଛନ୍ତି ଡକ୍ଟର ରମାବଲ୍ଲଭ । ଆସିଥିଲେ ଗବେଷକର ଅନ୍ତର୍ନିହିତ ପ୍ରେରଣା ତାଡ଼ନାରେ ପୋଥି ପଢ଼ିବେ ବୋଲି । ପଢୁଛନ୍ତି ବସି ନିଜକୁ । ପଢ଼ାବି ନୁହେଁ, ଖାଲି ଭାବନାରେ ଭାସିବା । ଉଦ୍ଦେଶ୍ୟ ମନେ ନାହିଁ, କେବଳ

ଭାସିଯିବା । ମନୁଷ୍ୟ ଏହିପରି ଖାଲି ଭାସେ, ତାର ସ୍ମୃତିର ଦ୍ୱୀପ ବି ଭାସେ, ଆପେ ଭାସି ଭାସି ଗୋଟାଏ ଦ୍ୱୀପରୁ ଆଉ ଗୋଟାଏ ଦ୍ୱୀପକୁ ଆଉଜୁ ଆଉଜୁ ସବୁ ଭାସି ଚାଲିଯାଏ, ତାର ଦ୍ୱୀପ, ସେ ନିଜେ, ସବୁ । ଏହି ଡକ୍ଟର ରମାବଲ୍ଲଭ ଜ୍ଞାନର ହିମାଳୟ । କିନ୍ତୁ ଯାହା ସେ ଗଢ଼ିଛନ୍ତି ସବୁ ଏହିପରି ଭାସି ଭାସି । ଲୁହାଗୁଣ୍ଡା ତଳେ ଅଲକ୍ଷ୍ୟରେ କେଉଁଠି ରହିଛି ଅଦୃଶ୍ୟ ଚୁମ୍ବକ । ଲୁହାଗୁଣ୍ଡା ଏକର ସେକର ହୋଇ ଆଉଜି ଯିବହିଁ । ପାଖରୁ ଦେଖିଲେ ସବୁ ଗୋଳମାଳିଆ, ଅଡୁଆ ତଡୁଆ । ଦୂରରୁ ଦେଖିଲେ ସବୁଠିଁ ସବୁ ଲୁହାଗୁଣ୍ଡା ଏକାଠି ଖଞ୍ଜା ହୋଇ ରହିଛି । ଗୋଟାଏ ବିଶିଷ୍ଟ ଖଞ୍ଜାରେ । ଦେଖୁଛି କିଏ ? ପ୍ୟାଟର୍ଣ୍ଣରୁ କିଛି ଦେଖୁଛନ୍ତି ସାଧକ । ତାହାରି ନାଁ ହୁଏତ ବିଶ୍ୱରୂପ ଦର୍ଶନ । ସେହି ଚୁମ୍ବକ ହିଁ ଦୈବ, ଈଶ୍ୱର, ଯାହା କୁହ । ତାହାରି ଉପରେ ଇତିହାସର ସୂଅ, ସେଠି ମହାପ୍ରତାପୀ ରାଜା ମଧ୍ୟ ଗୋଟାଏ ନାଁ, ତିନିଶ ବର୍ଷର ଗୋଟାଏ ବଂଶର ରାଜୁତି କେବଳ ଗୋଟାଏ ପରିଚ୍ଛେଦ । ଅଥଚ ଅଣୁ ଗର୍ବ କରେ, ମୁଁ ବଡ଼ । ଗର୍ବ ବି ଅର୍ବାଚୀନ ନୁହେଁ, ବଡ଼ହିଁତ, ନୁହେଁ କାହିଁକି କିନ୍ତୁ ସବୁ ସେ ଅଦେଖା ଚୁମ୍ବକର ଇଚ୍ଛା । କାହିଁକି ସେ ଏପରି ଇଚ୍ଛା ନ କରି ସେପରି ଇଚ୍ଛା କରେ କେହି କହିପାରିବ ନାହିଁ । ବୈଜ୍ଞାନିକର ବ୍ୟାଖ୍ୟା କେବଳ ଅର୍ଥ ବୁଝେଇବାରେ ଶେଷ ହୁଏ, ଭାବାର୍ଥ ଦେଖି ଭ୍ରମ ହୁଏ ହେତୁ-ବ୍ୟାଖ୍ୟାନ ବୋଲି । ବ୍ୟାଖ୍ୟା ବି ଗୋଟାଏ ଦିଗରୁ ଗୋଟାଏ ଭାଷ୍ୟ, ଅନ୍ୟ ଦିଗରୁ ଅନ୍ୟ ଭାଷ୍ୟ ବି ସମ୍ଭବ । ଜ୍ଞାନ ମାର୍ଗରେ ଯେତେ ଉପରକୁ ଉଡ଼ିଲେ ବି ସେ କ୍ରିୟା କେବଳ ଜୀବନ ବଞ୍ଚିବା କ୍ରିୟା, ଜୀବନକୁ ବୁଝେଇବା କ୍ରିୟା ନୁହେଁ । ଜୀବନ ବୋଧହୁଏ ବଞ୍ଚିବା ପାଇଁ, ବୁଝାଇବା ପାଇଁ ନୁହେଁ । ଯେ ଯେପରି ବଞ୍ଚିପାରେ, କିଏ ମାଟି ଖୋଳି କିଏ ଅବା ଭାଷାତତ୍ତ୍ୱ ଲେଖି । ବଡ଼ ସାନ ନାହିଁ । ଅତଏବ ଫୁଲ ଓ ସେ - ।

ଚିନ୍ତା ମଝିରେ ଝାଙ୍କି ହୋଇ ପୁଣି ସେ ଅନାଇଲେ ଡକ୍ଟର ରମାବଲ୍ଲଭଙ୍କୁ । ଆଶଂକା ହେଲା । ଅତି ବୁଢ଼ା ହେଲେଣି । ହୁଏତ ଦିନେ ଅନୁଭୂତିରେ ଭାସୁ ଭାସୁ ଆଉ ଫେରିବେ ନାହିଁ । ଏମିତି ଢୁଲୋଉ ଢୁଲୋଉ ତ ଅତି ପାକଳ ବୁଢ଼ା ବୁଢ଼ୀ ଢଳି ପଡ଼ନ୍ତି !

ଡାକିଲେ - "ସାର୍ !"

ଡକ୍ଟର ରମାବଲ୍ଲଭ ରକ୍ତହୀନ ବିବର୍ଣ୍ଣ ମୁହଁ ଉଠାଇ ଦେଖାଇଲେ, ମୁହଁ ନୁହେଁ ସତେକି, ଗୋଟାଏ ମୁଖା । ପାଟି ଅଳ୍ପ ଆଁ ହୋଇ ଝୁଲି ପଡ଼ିଛି । ପାଟି କଣରୁ ରକ୍ତ ଧାର ପରି ଧୀରେ ଧୀରେ ନିଗିଡ଼ୁଛି ପାନଛେପ ମିଶା ଲାଳ । ଥୋମଣୀ ତଳକୁ ବୋହିଯାଉଛି । ଆଖି ବୁଜିହେଲା ପରି ଢାଙ୍କି ରହିଛି । ଖର ନିଶ୍ୱାସ ।

ଦୁଃଖ ହେଲା, ଆଜୀବନ ଏକାଗ୍ର ସାଧନାରେ ତପୋକ୍ଲିଷ୍ଟ ଏହି ଦେହ, ଅଥଚ ତାଙ୍କର ଅଭିଯୋଗ ଠିକ୍, କ୍ଷୋଭ ଯଥାର୍ଥ, କେହି ସାହାଯ୍ୟ କରି ନାହିଁ ।

ସେହି ସହାନୁଭୂତିକୁ ତଳକୁ ମାଡ଼ି ଦେଇ ଚିନ୍ତା ଆସିଲା- ''କାହିଁକି ଅବା କିଏ ସାହାଯ୍ୟ କରିବ ? ସମସ୍ତେ ନିଜ ଜୀବନ ନିଜ ଭାଗ୍ୟ ଓ ନିଜ ଇଚ୍ଛାରେ ଭୋଗ କରିବାରେ ହକ୍‌ଦାର୍, କାହା ଜୀବନ ଗଢ଼ିବ କିଏ କାହିଁକି ? ଭାଷାତତ୍ତ୍ୱ ଲେଖିବା କି ସାହିତ୍ୟ ଗଢ଼ିବା ଯଦି ହୁଏ ଜୀବନ ବଞ୍ଚିବାର ଗୋଟାଏ ପ୍ରକାର, ଜ୍ଞାନ ପଢ଼ି ଆଗରେ କେବଳ ଆପଣା ଜୀବନ ଆପେ ବଞ୍ଚିବାକୁ ଏକପ୍ରକାର ମାର୍ଗ ତେବେ କେଉଁ ନ୍ୟାୟରେ ପଣ୍ଡିତ ଅନ୍ୟ କାହାଠୁଁ ସାହାଯ୍ୟ ପାଇବାକୁ ଦାବି କରେ ? ଯାହା ଶିଙ୍ଗରେ ଯେତେ ବଳ ଖୋଳୁ ସେ ସେତେ ମାଟି, ଯାହା ପକ୍ଷୀରେ ଯେତେ ବଳ ଉଡୁ ତା ମନଇଚ୍ଛା ସେ ସେତିକି ବାଟ, ଆଉ କାହାର କି ଯାଏ ? ଚଷା କାହାଠୁ କି ସାହାଯ୍ୟ ଦାବି କରେ ବା ପାଏ ? ମଜୁରିଆ କାହାଠୁ କି ସାହାଯ୍ୟ ପାଏ ? ତଥାପି ଚଷା ନିଜ ଉପାୟରେ ଧାନଗଣ୍ଡିକ ଭିଆଏ ଆଉ ଲୋକେ ସେଥିରୁ ବି ଆସି ଭାଗ ନିଅନ୍ତି । ଚଷା ଅଭିମାନ କରେ ନାହିଁ, କ୍ଷୋଭ କରେ ନାହିଁ, କାମ କରି କରି ତା'ର ବେଳ ଆସିଲେ ମାଟିରେ ଢୁଳେଇ ପଡ଼େ । ତେବେ ପଣ୍ଡିତ ଅଭିମାନ କରିବ କାହିଁକି ? ସେ କେବଳ ଭିନ୍ନ ପ୍ରକାର, ବଡ଼ ସାନର କଥା ତ ନାହିଁ । ସମସ୍ତେ ନିଜ ନିଜ ସ୍ୱଭାବ ଅନୁସାରେ କାମ କରିଯିବେ, ଏଇତ ନିୟମ ? ମେଘ ପାଣି ନ ବରଷି ରହି ପାରିବ ନାହିଁ ତେଣୁ କାହାରି ସାହାଯ୍ୟ ବିନା ସେ ବରଷିବ, ଲେଖକ ନ ଲେଖି ରହିପାରିବ ନାହିଁ, ତେଣୁ ସେ ଲେଖିବ । ଆପଣା ସ୍ୱଭାବ ଲାଗି ସମାଜଠୁ ଅର୍ଥଯଶସମ୍ମାନରେ କିଳାପୋତେଇ ଦାବି କରିବା କେଉଁ ସାମାଜିକ ଆଇନ୍‌ରେ ସିଦ୍ଧ ହେବ ? ଧର ଆଜି ଯଦି ସବୁ ସାହିତ୍ୟିକ ଅଡ଼ି ବସି ନ ଲେଖିବେ ସବୁ ଭାଷାତତ୍ତ୍ୱବିତ୍ ସବୁ ଐତିହାସିକ ମରିଯିବେ ତାହେଲେ ବି ଏହି ଦୁନିଆ ଏହିପରି ଚାଲିଥିବ । ଯଦି କାଳିଦାସ କାବ୍ୟ ଲେଖି ନ ଥାନ୍ତେ ତେବେ ବି ମାନବଜାତି ମରି ନ ଥାନ୍ତା । ଆଉ ଯେଉଁମାନେ ବା ଲେଖିଗଲେ ଏତେ ବ୍ୟାକରଣ, ଏତେ ସାହିତ୍ୟ, ଏତେ ଦର୍ଶନ ସେମାନଙ୍କ କାର୍ଯ୍ୟ କଣ ରୋଗଜରା ମୃତ୍ୟୁକୁ ଅପସାରି ପାରିଛି ନା ବନ୍ଦ କରିପାରିଛୁ ସେକାଳର ଯେତେ ଅନ୍ୟାୟ ଅତ୍ୟାଚାର ଶୋଷଣ ପୀଡ଼ନ ବେଠି ବେଗାରିକୁ ? ମୁଁ ବି ନଗଣ୍ୟ ତୁମେ ବି ନଗଣ୍ୟ, ମୁଁ ତୁମଠୁଁ ମାନତା ଚାହେଁ ନାହିଁ ତୁମେ ବି ଖୋଜ ନାହିଁ ମୋଠୁଁ । ଜନ୍ତୁ ସ୍ୱଭାବରେ ଜନ୍ମ ହୁଏ । ସ୍ୱଭାବଘେନି କାମ କରେ, ସ୍ୱଭାବ ଘେନି ମରେ ଆଉ ସବୁବେଳେ ତା ଉପରେ ସେହି ଅଦେଖା ଚୁମ୍ବକର ଟଣାଟଣି, ତେଣୁ ବୃଥା ଏ ବଡ଼ପଣିଆର କ୍ଷୋଭ, ମଲେବି କେହି କିଛି ଦେବେ ନାହିଁ, ଦେବା ପ୍ରୟୋଜନ ବି ନାହିଁ ।

କଠୋର ହୋଇ ଭାବିଲେ- ବୃଥା ସମୟ ଯାଉଛି ।

ଡାକିଲେ ''ସାର୍, ପୋଥି ପଢ଼ିବେ ନାହିଁ ?''

ଛାତ୍ରହୋଇ କ୍ଲାସ୍‌ରେ ଢୁଳୋଉଥିଲାବେଳେ ଅଧ୍ୟାପକଙ୍କ ଡାକରେ ଲଜ୍ଜିତ ହୋଇ ଉଠିପଡ଼ିଲା ପରି ଡକ୍ଟର ରମାବଲ୍ଲଭ ଚମକିପଡ଼ି ହସି ଦେଇ ଯନ୍ତ୍ରକୁ ଧରିଲେ। କହିଲେ ''ବୁଝିଲୁ ବାପ କେଦାରନାଥ, ବୁଢ଼ା ହୋଇଗଲି, କଣ କରିବାକୁ ଆସିଚି କଣ ମୁଁ କରୁଚି ଦେଖ୍।''

ବୁଢ଼ାଲୋକ, ପୁଣି ଗପି ବସି ନ ହେଲେ ଢୁନି ହୋଇ ଭାବନାରେ ଭାସି ଜୀବନକ୍ରିୟା କରିଯିବେ ପରା, ଆହୁରି ସମୟ ମାଟି ହେବ। ଘଟନାକୁ ମୋଡ଼ି ଦେଇ କେଦାରନାଥ କହିଲେ ''ରହନ୍ତୁ, କଳ ମୋଡ଼ି ଦିଏ, ଆହୁରି ପରିଷ୍କାର ଦିଶିବ ଅକ୍ଷର। ହଁ, ଏଥର ପଢ଼ନ୍ତୁ ତ ସାର୍, ଏଇ ତ ପ୍ରଥମ ଧାଡ଼ି। ଅକ୍ଷରଗୁଡ଼ାକ ବିଷୟରେ ମୋର କେମିତି ସନ୍ଦେହ ହେଲା।

''ଦେଖ୍, ଓଡ଼ିଆ ଆଦି ଅକ୍ଷର ବିଷୟରେ ମୁଁ ଯାହା ଜାଣେ ତତେ କହୁଚି ଶୁଣ୍-''

''ଏଇ ପ୍ରଥମ ଅକ୍ଷରଟା ଦେଖନ୍ତୁ ସାର୍, 'ଶ୍ରୀ' ତ, ମୁଁ ତ ଭାବିଚି ଶ୍ରୀ ବୋଲି, ନହେଲେ ହ୍ରୀ ବି ହୋଇପାରେ, ଆପଣ ଥରେ ପଢ଼ିଯାଆନ୍ତୁ। ନା ଆଗ ଟିକିଏ ବିଶ୍ରାମ ଆଦି ଶେଷ କରିନେବେ ?''

''ଆରେ, କେଦାରନାଥ, ବାୟା ହେଲୁ ? ଓଡ଼ିଶାର ପ୍ରାଚୀନତମ ଗଦ୍ୟ ପୋଥି ମୋ ହାତରେ, ଆଉ କି ବିଶ୍ରାମରେ । ଆଃ, ଚମତ୍କାର ! ଚମତ୍କାର ! ଠିକ୍ ମୁଁ ଭାବିଥିଲି। ମାଦଳାପାଞ୍ଜି ପୂର୍ବରୁ ବି ଓଡ଼ିଆ ଗଦ୍ୟ ଥିଲା ସରସ, ବଳିଷ୍ଠ, ଏଇ ଶୁଣ୍ ମୁଁ ପଢ଼ିଗଲି, ଅକ୍ଷର ତତ୍ତ୍ୱ ପରେ ବୁଝାଇବି-''

ଏଥର ଡକ୍ଟର ରମାବଲ୍ଲଭ ନିଜ ରାଜ୍ୟରେ।

ତାଙ୍କର ପ୍ରାଣପ୍ରାଚୁର୍ଯ୍ୟରେ ଯେପରିକି ଆଶ୍ରା ନାହିଁ।

ଡକ୍ଟର କେଦାରନାଥ ତନ୍ମୟ ହୋଇ ଶୁଣିଲେ।

ଅତୀତ କଥା କହୁଛି।

''ନିଃସନ୍ଦେହରେ କହିପାରେଁ ଏ ଷଷ୍ଠ ଶତାବ୍ଦୀର ଓଡ଼ିଆ ଗଦ୍ୟ। ବୌଦ୍ଧଗାନ ଓ ଦୋହାର ଗୀତି କଥା ହୋଇଛି ଲୋକେ କହିଥିବା ଭାଷାରେ, ଯେ ଯେପରିକି ସେକାଳର ଶୁଦ୍ଧଭାଷା, ରାଜକୀୟ ଭାଷା।'' ଡକ୍ଟର ରମାବଲ୍ଲଭ ପଢ଼ି ବୁଝାଉଛନ୍ତି, ତାଙ୍କର ଯେପରିକି ଅବତାର ଘଟିଛି। ଡକ୍ଟର କେଦାରନାଥ କାନ ଡେରି ଶୁଣୁଛନ୍ତି ଆଉ ପ୍ରତି ମୁହୂର୍ତ୍ତରେ ଭାବୁଛନ୍ତି। ଏଇ କଣ ତୋଷାଳି କଥା ପଢ଼ିଲାକି ? ନା ସେକାଳର ଇତିହାସ କିଛି ? କାହିଁ ଗବେଷଣାର ତଥ୍ୟ ଯେଉଁଥିରେ ଇତିହାସ ରାଜ୍ୟରେ ସେ ବିପ୍ଳବ ଉପୁଜାଇବେ ? ହୁଏତ ଆର ପୃଷ୍ଠାରେ ଅଛି, ଏଇ ଆସିଲା

ବୋଧହୁଏ- ତୋଷାଳିର ଅବସ୍ଥାନ, ସେକାଳର ରାଜା ଓ ରାଜପୁରୁଷ ନାଁ ଓ ବଂଶପରିଚୟ, ସେକାଳର ଐତିହାସିକ ଘଟନା, ସାମାଜିକ ଅବସ୍ଥା ବିଷୟରେ ତଥ୍ୟ, ଜ୍ଞାନର ପରିସୀମା, ବାଣିଜ୍ୟ, ଧର୍ମ-

ହୁଏତ ଅତି ଚମକପ୍ରଦ ଅତି ନୂଆ କିଛି ବାହାରିବ ସେହି ପୋଥିରୁ, ଏତେ ଯତ୍ନରେ ହାତୀଦାନ୍ତର ପେଡ଼ିରେ ପଶି ଲୁହା ସିନ୍ଦୁକରେ ରତ୍ନଠୁଁ ଅଧିକ ଯତ୍ନରେ ଯେ ସାଇତା ହୋଇ ରହିଥିଲା। ପ୍ରଭାତବାବୁ ହସିଥିଲେ ପରା, ପରିହାସରେ କହିଥିଲେ ଇଜିପ୍ଟ ଦେଶର ପଦ୍ମଁମଞ୍ଜି। ହଁ, ପଦ୍ମଁମଞ୍ଜିହିଁ ନିଶ୍ଚୟ, ତେର ଶତାବ୍ଦୀ ପରେ ପୁଣି ସେ ପଦ୍ମଁ ଫୁଟିବ, ସେ ଜ୍ଞାନର ପଦ୍ମଁ।

ଏହି ନିଶ୍ଚୟ ତାଙ୍କ ଜୀବନରେ ସବୁଠୁ ଅଧିକ ଗୌରବୋଜ୍ଜ୍ୱଳ ସମୟ। ପୋଥି କଥା କହିବ।

ଡକ୍ଟର୍ କେଦାରନାଥ ବି ଝୁଙ୍କି ପଡ଼ିଲେ ପୋଥି ଉପରେ।

ଫୁଲ ଅନେଇଁ ଅନେଇଁ ବିରକ୍ତ ହୋଇ ଚାଲିଗଲା। ଭାବିଲା- କଣ ଏ ଆଚାର ? କେଉଁ କାଳର ପୁରୁଣା ପୋଥି ଖଣ୍ଡକରୁ କଣ ଏମାନେ ପାଆନ୍ତି ଯେଉଁଥିରେ ପାଗଳ ହୁଅନ୍ତି ? ନା ଏମାନେ ଏହିପରି, ମୂଳରୁ ମୁଣ୍ଡର ପେଚ ଢିଲା ଅଛି ? ହୋଇଥାନ୍ତା ଅବା କିଛି ଧନଦରବ, ପ୍ରକୃତରେ କିଛି ପୋତା ଧନ, ତେବେ ସେମାନଙ୍କର ଆନନ୍ଦ ବିହ୍ୱଳପଣ ଯଥାର୍ଥତା ସେ ବୁଝିଥାନ୍ତା। ଯେତେଦିନୁଁ ହେତୁ ପାଇଲାଣି ସେ ଦେଖିଛି ମଣିଷ ଲାଭ ପାଇଁ ହିଁ ପାଗଳ ହୁଏ। ଆମ୍ବ ଦିନେ ତୋଫାନରେ ଯେତେବେଳେ ତୋଟାରେ ଆମ୍ବ ଗଦାହୁଏ ସେତେବେଳେ ଆମ୍ବ ଗୋଟେଇବାକୁ ଲାଗେ ବାଡ଼ିଆବାଡ଼ି, ଆମ୍ବ ଛାଡ଼ିଦେଇ ଲୋକେ ପାଗଳପରି ପିଟାପିଟି ହୁଅନ୍ତି। ସେମିତି ଖରାଦିନେ ଜୋର ପୋଖରୀ ଶୁଖିଲାବେଳେ, ଯେତେବେଳେ କାଦୁଅ ଚିପି ଚିପି ଚେଙ୍ଗ ଗଡ଼ିଶା ବମି ତୋରି ମାଛ ଧରି ଘରକୁ ନେବାକୁ କାଦୁଅ ପଂକରେ ଲୋକଙ୍କର ଲାଗେ ଝଙ୍କାପଟା ଗଡ଼ାଗଡ଼ି, ଉପରୁ ଚିଲ ଝାମ୍ପ ମାରନ୍ତି। ସେତେବେଳେ ଦେଖେ ପିନ୍ଧାଲୁଗା ପ୍ରତି ବି କାହାରି ହୋସ୍ ନାହିଁ, ମୁଣ୍ଡବାଳ ବିଞ୍ଚି ହୋଇ ମୁହଁ ଉପରେ ଚଢ଼ିଥାଏ, ଆଖିରେ ନାଲି ଟହ ଟହ ତମ ଚଢ଼ିଥାଏ, ଖୋଲା ପିଠି ଉପରେ ଖରା ପୋଡୁଛି କି ବରଷା ଛେଚୁଛି ଆଦୌ ଲୟ ନାହିଁ ନିଘା ନାହିଁ, ମଣିଷ ସତେ ପାଗଳ ହୁଅନ୍ତି।

କିନ୍ତୁ ଏ ପଣ୍ଡିତ ପାଗଳ ତା'ର ଧାରଣାର ଅଗୋଚର।

ଏମାନେ ସତେ ପାଗଳ... ... ... ... ... ... ... !

ସେହି ପାଗଳଜଣକର ଆଖିରେ ଦେଖିଥିଲା ସେ ଚିହ୍ନା ମୋହ, ମନ ଉଲୁସିଥିଲା, ଦେହ ଗର୍ବରେ ଫୁଲିଥିଲା। ଆପେ ଆପେ ମନରେ ଭାସିଥିଲା ସୁଖର କଳ୍ପନା, ଆଉ

ଲାଭରେ । ଅନା ହୁଡି ମୁହଁ ସାମ୍ନାରେ ନୂଆବାଟ ଫିଟିଯାଇଥିଲା, ଫୁଲ ଭାବେ ଦାଉ ଛାଡ଼ିବା ମୂର୍ଖପଣ । ଅତି ପିଲାଦିନୁ ସେହି ଦୀକ୍ଷା ସେ ପାଇଛି, ବାପା କହେ, ବୋଉ କହେ, ସାହିର ସଭିଏଁ କହନ୍ତି ସୁବିଧା ଛାଡ଼ିଲେ ଓଲୁ ହୋଇ ପସ୍ତେଇବାକୁ ପଡ଼େ । ''ଓଲମି ଅଲକ୍ଷଣୀଟା, ସେଇ ବାଟେ ଆଇଲୁ ତାଙ୍କ ବାଡ଼ମୁହଁ ମେଲା ଥିଲା, ବାଇଗଣ ଦି'ପୁଞ୍ଜା ତୋଳି ଆଣିଥିଲେ କିଏ ଦେଖିଥାନ୍ତା ନା ଦେଖିଥିଲେ ତତେ ଖାଇଦେଇଥାନ୍ତା ?'' ବୋଉର ସଦୁପଦେଶ । ଆଉ ସେହି ଉପାୟରେ ତ ତାର ଜୀବନ ଗଢ଼ା । କଠିନ ଜୀବନ ସଂଗ୍ରାମ, ଯାଚି କରି କେହି ଦେବେ ନାହିଁ, ଦୟା, ସୋଗ, ଉଦାରତା ସେ ଖାଲି ମୁହଁର କଥା । କାମରେ ନୁହେଁ । ଦେହ ମେହେନତ୍ ନ କଲେ ଖାଇବାକୁ ମିଳେ ନାହିଁ । କିନ୍ତୁ ଝାଳନାଳ ହୋଇ ଦେହ ମେହେନତ୍ ଯେତେ କଲେ ସୁଦ୍ଧା ଅର୍ଜନ ଖାଲି କଷ୍ଟେ ମଷ୍ଟେ ଚଳିବା ଭଳି । ସେତିକିରେ କଣ ମନ ମାନେ ? ସବୁଦିନେ ମୋଟା ସୋଟା ମିଠା ସିଠା ଖାଉଥିଲେ କଣ ଭଲ ଲାଗୁଥିବ ? ଜିଭ ଅରୁଚା ହେବ ନାହିଁ ? ତା ଛଡ଼ା ଆପଣାର ସାନସାନ ସଉକ ଅଛି, ଜୀବନଟା ଖାଲି ପେଟପାଟଣା ନୁହେଁ । ଏତେ ପ୍ରକାର ଭେଟାଇଲା ବେଳକୁ ଖାଲି ଝାଳ କମାନେରେ ଚଳେ ନାହିଁ । ଏପାଖ ସେପାଖ ହାତ ବୁଲେଇବାକୁ ହିଁ ପଡ଼େ, ସେଥିପାଇଁ ଯେ ଯାହା କହୁ । ପେଟ ପୋଷ, ନାହିଁ ଦୋଷ । ଯେଉଁମାନେ ଗାଳି ଦିଅନ୍ତି ସେମାନେ ବେଶ୍ ଶୁଖିଲାରେ ଆରାମ୍‌ରେ ଥାଆନ୍ତି ବୋଲି । ଖତକୁଡ଼ରେ ବୁଲା କୁକୁରର ପଲେ ଛୁଆ ପରି ସେମାନେ ବି ଯଦି ଜକାଜକି ସନ୍ତସନ୍ତିଆ ଅଭାବ କାନ୍ଦଣା କଲିଗୋଳ ପଲାଘରେ ଜନ୍ମ ହେଉଥାନ୍ତେ, ଦେଖୁଥାନ୍ତେ ଚଉଦିଗ ଅନ୍ଧାର, ତେବେ ସେମାନେ କି ଆପଣା ଜୀବନରେ ଦିନେ ଦିନେ ମାଛ ଭାତ ଖାଇବାକୁ ମନକରି ସେହି ଅନ୍ଧାରୁଆ ଦେଖିଲାକାମ କରି ଦିଅନ୍ତେ । ପଛେ କେହି କହିଲେ ଟିକିଏ ତୁଳସୀପତ୍ର ପାଣି ଛିଞ୍ଚିହୁଅନ୍ତେ । ସଦୁପଦେଶ । ଥୁଃ । ସଦୁପଦେଶ ଆଉ ପୂଜାପ୍ରାର୍ଥନାରେ ଧନୀଘରର ପୋଲାଖିଆ ଘିଅଭାତ ଗରିବଗୁରୁବାଙ୍କ ପତରରେ ଆସି ପହଞ୍ଚିବ ନାଇଁ, କଥା ଶୁଣି ମୁଣ୍ଡ ଟୁଙ୍ଗାରି ହୋଇ ହୋଇ କରି ଲୋକେ ଘରକୁ ଚାଲିଯାଆନ୍ତି । କାମ ବେଳେ ଯେଉଁ କଥାକୁ ସେହି କଥା । ରଖିଦିଅ ଓଳିଆରେ ବାନ୍ଧି ଦୁନିଆର ଯେତେ ସଦୁପଦେଶ ବାବା, ସେଥିରେ ଭୋକବେଳେ ମୁଠାଏ ଭାତ ମିଳିବ ନାଇଁ, ଶୀତବେଳେ ପିଠିକି ମିଳିବ ନାଇଁ ଖଣ୍ଡେ ଘୋରିହେଲା, ପଲାବାଟେ ଦରଦର ବରଷା ଗଳୁଥିଲାବେଳେ ମୁଣ୍ଡ ଉପରେ କେହି ପଖିଆ ଘୋଡ଼େଇବ ନାହିଁ । ଏହି ଯେ ଏତେଗୁଡ଼ାଏ ଲୋକଙ୍କୁ ଏକାଠି ଲଗାଇ ମାଟି ତଡ଼ୋଉଛନ୍ତି ସେଥିରେ ଉପକାର ଏତିକି ଯେ ଲୋକେ ମୂଲ ପାଉଛନ୍ତି । ନ ହେଲେ ତାଡ଼ି ତାଡ଼ି କଣ ବାହାରୁଚି ? ଭଙ୍ଗା ଖପରା, ମୁଗୁଚାରଆ ପଇସା, କଣ୍ଠିମାଳ, ଖଣ୍ଡ ଖଣ୍ଡ ପଥର ଏତେତ କୁଢ଼ ହେଲାଣି, ଆଉ ସଜାହୋଇ

ଥୁଆହେଲାଣି ଏତେ ଏତେ ବହି ଏତେ ଗାଡ଼ି ଗାଡ଼ି କାଗଜ ସେଥିରେ ସତେ କଣ ଲୋକଙ୍କ ଅଭାବ ଯିବ ? ଖାଇବାକୁ ମିଳିବ ? ପିନ୍ଧିବାକୁ ମିଳିବ ? ପଚାରିଲେ କହନ୍ତି ସେଥିରୁ ନୂଆ ବୁଦ୍ଧି, ନୂଆ ପାଠ ବାହାରିବ । କି ବୁଦ୍ଧି ? କି ପାଠ ସେ ? ସେ ନୁହେଁ ଭୋକଲଡ୍ଡୁ ଶୋଷ ଲଡ୍ଡୁ ଯେ ସେଥିରେ ଲୋକଙ୍କର ଭୋକଶୋଷ ମରିବ, ସେ ନୁହେଁ ସୁନାକାଠି ରୁପାକାଠି ଯେ ଛୁଇଁଦେଲେ ମନୋବାଂଛା ପୂର୍ଣ୍ଣ ହେବ, କଳ୍ପବଟ ନୁହେଁ, ମନପବନ ଘୋଡ଼ା ନୁହେଁ, ସେ ନୁହେଁ ବାନ୍ଧ୍ ବାନ୍ଧ୍ ଦଉଡ଼ି ମାର୍ ମାର୍ ଠେଙ୍ଗା । ଆଉ ତେବେ କି ବୁଦ୍ଧି ସେ ଯେଉଁଥିରେ ଦୁନିଆର ଯାବତ ଅଭାବ ଦୂର ହେବ, ଲୋକଙ୍କର ଆଉ ଏ କଷଣ ନ ରହିବ । ବଞ୍ଚିବାପାଇଁ ଯେତିକି ବୁଦ୍ଧି ଦରକାର ତା ସମସ୍ତିଙ୍କର ଅଛି, ବୁଦ୍ଧି ଖେଳାଇବାକୁ ସୁବିଧା ନାହିଁ ।

ଫୁଲ ଭାବେ ଏହିପରି ।

ମଜୁରି ଲାଗି ପଦେ ପଦେକେ ଆପଣା ଜୀବନରେ ବାଧ୍ୟରେ ତ୍ୟାଗ ଦେଇ ସେ ଭାବନାରେ ଧରେ ଭୋଗର ମାର୍ଗ, ସୁବିଧା ପାଇଲେ ମାଡ଼ିଯାଏ । ଭୋଗର ଉପାୟ ଏହି ଦେହବାଟେ, ଭଲ ଖାଇଲେ ପାଟିକି ସୁଖ ଲାଗେ, ମୁଣ୍ଡକୁ ତେଲ ଟିକିଏ ହେଲେ କେଡ଼େ ପରିଷ୍କାର ଲାଗେ, ଭଲ ନାଇଲେ ଭଲ ପିନ୍ଧିଲେ ଦେହଟା ହସିଉଠେ । ସବୁ ଭୋଗଠୁ ଶ୍ରେଷ୍ଠ ଭୋଗ ଅଛି ଗୋଟାଏ, ଯୌବନର ପହିଲି ପରଶରେ ତାକୁ ସେ ଅଙ୍ଗେ ନିଭେଇଥିଲା । ସେଦିନୁଁ ରହି ଯାଇଛି, ବେଶୀଦିନର କଥା ନୁହେଁତ, ମନେ ପଡ଼ିଗଲେ ଦେହଟା ଗରମ ହୋଇଯାଏ, କଟାଶ ପରି ଆଖି କରି ସେ ଡୋଳା ବୁଲେଇ ବୁଲେଇ ଚାରିଆଡ଼କୁ ଚାହେଁ । ଛାତି ଦମଦମ ପଡ଼େ । ସେତେବେଳେ ଲାଗେ ସେ ଏଇଥିପାଇଁ ବଞ୍ଚିଛି, ଏଇଥିପାଇଁ ମଲେ ସୁଖ ଆପଣା ଛାଆଁକୁ ଛାଏଁ ଏ ଦେହଟା ବଢ଼ିଉଠୁଛି, ଗୋଲ ଗୋଲ ବାହା, ବଳିଲା ପରି ଦେହ, ସବୁ ପୂରି ରହିଛି । ଆଉ ମୁହଁର ଠାଣିରେ କି ମାୟା ! ପାଣିକି ଅନେଇଲେ ନିଜକୁ ଦେଖୁ ଦେଖୁ ଆଖି ଲାଖିଯାଏ, ଏଇ ସେ ନିଜେ !

ହଜମରେ ଅସୁବିଧା ନାହିଁ, ନିଦରେ ନାହିଁ ବାଧା, ବାଟ ଚାଲିଲେ ସ୍ୱାସ୍ଥ୍ୟ ଛଳ ଛଳେଇ ଉଠେ ।

ଆଉ ପ୍ରତି ମାସରେ ଥରେ ଯେତେବେଳେ ସେ ଅଲଗାହୋଇ ଅଟକିରହେ ସେହି ଯେପରିକି ଆପଣା ଗର୍ବରେ ମତଗଜ ପରି ତାର ଝୁଲିବା ଦିନ, ଲାଗେ ଆଜି ଅଛି ଏଇ ଦେହ, କାଲିକି କିଏ ପଚାରେ ?

ପଦାକୁ ବାହାରିଲେ ଆଖି ଛାଟିମାରିଲେ ପଲ ପଲ ହୋଇ ପଛରେ ଗୋଡ଼ାନ୍ତି । କାହାକୁ କଥାରେ ହାଣେ, କାହାକୁ ଭ୍ରୂକୁଟିରେ ହୁରୁଡାଏ, କାହାକୁ ଗୋଡ଼ରେ ମଳେ । କାହାକୁ କାନି ପଘା କରି ଖଣ୍ଡେ ଦୂର ଘୋଷାରି ଫୋପାଡ଼ି ଦିଏ । ସେମାନେ ମିନତି

କରନ୍ତି- ଫୁଲ, ଏଡ଼ିକି ନିର୍ଦୟା ଲୋ ତୁ ? ଦେଖ୍ ମୋ ଛାତି ଫାଟିଯାଉଚି, ଅନା, ଥରେ ନୁଝ ମୋ କଲବଲ । ମୋ ଦେହ ହାଡ଼ କଣ୍ଟା ହେଲାଣି । ମୋ ଆଖି ଫୁଟିଯାଉଚି କାନ୍ଦି କାନ୍ଦିଲୋ । ମୋ ମୁଣ୍ଡବାଳ ଉପୁଡୁଚି ମେଞ୍ଚା ମେଞ୍ଚା ହୋଇ ଖାସ୍ ଭାବିଭାବିକା । ମୋ ମୁଣ୍ଡ ପାଗଳା ହେଲାଣି କଥା ବାଉଳା ଚାଉଳା ହଉଚି । ମୁଁ ମରିଯିବି ଲୋ ଫୁଲ, ତୁ ଦୟା ନ କଲେ ମୁଁ ନିଶ୍ଚେ ଁ ଶୁଖିଶୁଖିକା ମରିବି । ହଉ, ତୁ ଏଡ଼େ ନିର୍ଦୟା ଲୋ, ତୋରି ନାଁରେ ମୁଁ ଦଉଡ଼ି ଦେବି । ତତେ ଦୋଷ ଲାଗିବ, ପାତକ ଲାଗିବ ।

ଫୁଲ ହୋ ହୋ ହସେ ।

ସେତେବେଳେ ଲାଗେ ଏ ଦେହ ଖାଲି ସଂପତ୍ତି ନୁହେଁ, କ୍ଷମତା ବି ।

ସେ ସଂପତ୍ତି ଭୋଗ କରେ, କ୍ଷମତା ଜାରି କରେ ।

ଆଉ ସେହି କୁଲି ଦଳରେ ଯଦି କେହି ବାହାରେ ହୁର୍ଦୁଙ୍ଗା, ହୁଙ୍କାପିଟା, ଯେ ସ୍ତୁତି କରେ ନାହିଁ । କନ୍ଦା ବୋବା କରେ ନାହିଁ । ଗୋଡ଼ାଏ ତ ଧରିବାକୁ, ଧରେ ତ ଚୋବେଇବାକୁ, ଚୋବାଏ ତ ଗିଳିପକେଇବାକୁ ସେତେବେଳେ ଫୁଲ ତାର ଅସୁରବଳ ଲଗେଇ ଲଢ଼େ, ଲଢୁ ଲଢୁ ସେ ସୁଖ ପାଏ, ଆଉ ସେହି ସୁଖରେ ତାର ଦେହ ଆଉଜି ପଡ଼େ, ଆଖି ଢୁଲେଇ ହୋଇ ପଡ଼େ, ମୁହଁ ଉପରେ ବିଞ୍ଚି ହୋଇ ପଡ଼େ ସ୍ୱପ୍ନର ଛାଇ ।

କିନ୍ତୁ ସେ ଜଣକୁ କାହାକୁ ଆତ୍ମସମର୍ପଣ କରିବାକୁ ସୁଖ ପାଏ ନାହିଁ । ରଙ୍ଗ ପାଇଁ ତା'ର ଆଖି ଅଛି, ତାର ମନ ଅଛି ନୂଆ ନୂଆ ଭୋଜ୍ୟସାମଗ୍ରୀ ପାଇଁ । ପଚାରିଲେ କହେ କେହି ମୋ ମୁଣ୍ଡଟା କିଣିଚି କି ? ମୋର ହାତ ଅଛି ଗୋଡ଼ ଅଛି ସବୁ ଚଳୁଚି, ମୁଁ କାହାରି ଚାକର ନୁହେଁ । ଆଉ ବିଚିତ୍ରତା ସେ ଆପେ ପାଏ, ଗୋଟାଏ ହୁର୍ଦୁଙ୍ଗାକୁ ମାରିପିଟି ସାଧ୍ୟ କରିବାକୁ ଆଉ ଗୋଟାଏ ନିଶ୍ଚେ ଥିବ ।

ଫୁଲ, ତୁ ବାହା ହବୁ ନାଇଁ ?''

ବାଁରେଇ ହେଇ ସେମାନେ ପଚାରନ୍ତି ।

''ଫୁଲର ପୁଣି ବାହା କିଗୋ ?'' ରସିକତା କରି ଫୁଲ କହେ, ''ଫୁଲ ଖାଲି ଫୁଟେ ଆଉ ଝଡ଼େ ।''

''ଏମିତି ଅଭିଆଡ଼ୀ ରହିଥିବୁ ?''

''କିଏ କହିଲା ?'', ଫୁଲ ବୁଝାଇଦିଏ, ''ମଣିଷ ଯାହା ହୁଏ ସାହା ପାଇଁ, ଆର ଜଣକ ପୋଷିବ, ପାଳିବ, ସବୁ କରିବ । ମୋର ତ ହାତଗୋଡ଼ ଚଳୁଚି, ମୁଁ ନିଜେ ରୋଜଗାରିଆ, ମୋର ସାହା କି ହବ ? ଯେତେବେଳେ ତା ଦରକାର ହବ ସେତେବେଳେ ମୁଁ ବାହାହେବି । ସେ ତ କେବେ ହବ, ଅଇସା ସେକଥା ଭାବିବି କାହିଁକି ?''

ଥୋକେ ଡରନ୍ତି, ଫୁଲ ଖାଲି ଚିରିଗୁଣୀ ଆଳୁଅ, ଓଟାରିନେଇ ଘାଇରେ ପଂକରେ ମାଡ଼ିଦବ, ଫୁଲ ସବୁ କଳିଆର ସବୁ ଅତୁଆର ମୂଳ, ତା କତିରେ ଦେହଘଷା ହୋଇ ପଶିଲେ ନିଶ୍ଚୟ ଆଉ କିଏ ସେ କେଞ୍ଚାଏ ମାରିବ, ନ ହେଲେ ଅନ୍ଧାରୁଆ ଗୋଟାକେତେ, ଫୁଲପାଇଁ ଆଣ୍ଠୁଗଣ୍ଠି ଶୁଣ୍ଢେଇ ମଲ୍ଲଯୁଦ୍ଧରେ ଗଡ଼ାଗଡ଼ି ହେଉଁ ହେଉଁ ଫୁଲ ଡିଆଁ ମାରିଦେଇ ଆଉ କାହା ସାଙ୍ଗରେ ଯାଇ କୋଉଠୁ ବୁଲି ଆସିଲାଣି । ହନ୍ତସନ୍ତ ହେବା କଥା, ହଟହଟା ହେବା କଥା, ଦୂରେଇ ରହିବାହିଁ ଭଲ । ଲୋକେ କହନ୍ତି । ତଥାପି କେହି କୁଆଡ଼େ ନ ଥିଲେ ଆପଣା ଭାଗ୍ୟ ପରୀକ୍ଷା କରିବାପାଇଁ ଫୁଲ ଚାରିପାଖେ ଘୁରେଇ ତୁରେଇ ହୁଅନ୍ତି, ବାର ନାଲିଛାଲିରେ କଥା କହନ୍ତି । ଫୁଲ ଅବସ୍ଥା ଦେଖି ବ୍ୟବସ୍ଥା କରେ, ଭେଟି ଗ୍ରହଣ କରି ଆପ୍ୟାୟିତ ସମ୍ମାନିତ କରେ, ଆଉ କାହାକୁ ଦିଏ ବଙ୍କା ଚାହାଣି ମିନିଟିଏ କାହାକୁ ଶରଧାରେ ଗୋଟିଏ ବିଧା ଦିଏ, କାହା ଗାଲରେ ଠୋ କିନା ଗୋଟେ ଚଟକଣା, କାହା ପିଚାରେ ଗୋଟାଏ ଠିଆ ଗୋଇଠା, କାହା ହାତ ପାପୁଲିକି ଚିପିଦିଏ, କାହା ମୁହଁ ପାଖେ ଛାଡ଼େ ଗୋଟାଏ ଦୀର୍ଘଶ୍ୱାସ, ଆଉ କେତେଙ୍କୁ- ଅନ୍ୟମନସ୍କ ହେଲାପରି ଆଉ ଆଡ଼େ ଚାହିଁରହିଲାଭଳି ବାଁରେଇ ହୋଇ ସେ ଦେହର ଆବରଣ ଜାଣିଲାପରି ଏଠୁ ସେଠୁ ଖସାଇ ପକାଏ, ଚାହିଁବାକୁ ଦିଏ, ତା ପରେ ଚମକି ପଡ଼ି ମଠେଇ ହୋଇ ହୋଇ ଆପଣାବାଟେ ଚାଲିଯାଏ । ତାର ବନ୍ଧୁ ବହୁତ, ପରସ୍ପରର ତଣ୍ଟି କଟାକଟି ପାଇଁ ସୁବିଧା ଉଣ୍ଡୁଥିଲେ ସୁଦ୍ଧା ତା ଆଡ଼କୁ ଅନାଇଲାବେଳେ ସମସ୍ତିଙ୍କର ସେହି ଏକପ୍ରକାର ମୁହଁର ଠାଣି, ସେହି ମୁଗ୍ଧ ଦୃଷ୍ଟି, ସେହି ନୀରବ ଜଣାଣ, ସବୁ ଏକାପରି ।

ଆଉ ସେହିପରି ମୁହଁର ଛାଇ ସେ ହଠାତ୍ ଦେଇପାରିଥିଲା ଡକ୍ଟର କେଦାରନାଥଙ୍କ ମୁହଁରେ, ଦେଇଥିଲା ହୃଦୟରେ ପଶିବାକୁ ସେହି ଚିହ୍ନା ମଡ଼ାବାଟ ଆଉ ତା ସାମ୍ନାରେ ମେଲା ଅରଗଳ, ତେଣୁ ସେ ଘୂରିବୁଲିଲା ।

ମନରେ ଆଚାରରେ ସେ ଯେପରିକି ସେହି ପୁରୁଣାଯୁଗର ଗୋଟିଏ ଅସୁରୁଣୀ, ଲଳିତ କଳା ମିଶି ମେନକା ନୁହେଁ, ଦେହ ତାଡ଼ନାରେ ତାଡ଼କା, କି ସୂର୍ପଣଖା । ତାର ବ୍ୟକ୍ତିତ୍ୱରେ ମାଟିର ଅନ୍ଧାର ତଳେ ତଳେ କାମନାର ନେଳି ଗନ୍ଧକ ନିଆଁ ଦିକି ଦିକି ହୋଇ ଜଳୁଥାଏ । ଆଉ ତାର ଚାରିପାଖେ ସତେକି ଅନ୍ଧାରି ଜଙ୍ଗଲ, ସେଠି ଆଦିମ ଜନ୍ତୁ ଆଦିମ ମାନବ ଆତଯାତ ହୁଅନ୍ତି, ସେ ପ୍ରତୀକ ଯେପରିକି ପ୍ରକୃତିର ଉଦ୍ଦାମ ବଳିଷ୍ଠ ଆଦିମତାର ।

ଡକ୍ଟର କେଦାରନାଥ କବାଟ କିଳିଦେଲେ ।

ତାଡ଼କା ଫେରିଗଲା ।

---



'ଅମୃତର ସନ୍ତାନ' ଓ 'ମାଟି ମଟାଳ' ଉପନ୍ୟାସ ପାଇଁ ଯଥାକ୍ରମେ ପ୍ରଥମ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର (୧୯୫୫) ଓ ଓଡ଼ିଆ ସାହିତ୍ୟରେ ପ୍ରଥମ ଜ୍ଞାନପୀଠ ପୁରସ୍କାର ବିଜେତା (୧୯୭୩) ଆଦିବାସୀ ଓ ଅବହେଳିତ ସମାଜ- ଜୀବନକୁ ନେଇ ଓଡ଼ିଆ ସାହିତ୍ୟରେ ବିପୁଳ କଥା ସାହିତ୍ୟ ସ୍ରଷ୍ଟା- ଯୁଦ୍ଧ ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ଅବିସମ୍ବାଦିତ ଶ୍ରେଷ୍ଠ କଥାକାର - ବାସ୍ତବବାଦୀ, ସ୍ଥିତିବାଦୀ ଓ ଅତି ବାସ୍ତବବାଦୀ କଥାଶିଳ୍ପୀ, ଗଦ୍ୟମହାକାବ୍ୟ ସ୍ରଷ୍ଟା ଓଡ଼ିଆ ସାହିତ୍ୟର ଚିରନ୍ତନ କିମ୍ବଦନ୍ତୀପୁରୁଷ-

## ଗୋପୀନାଥ ମହାନ୍ତି

ଜନ୍ମ: ୨୦ ଏପ୍ରିଲ ୧୯୧୪ ମୃତ୍ୟୁ: ୨୦ ଅଗଷ୍ଟ ୧୯୯୧



ISBN 81-7411-602-4

ବିଦ୍ୟାପୁରୀ

ବାଲୁବଜାର, କଟକ ୭୫୩୦୦୨

www.vidyapuri.com